

# ବସନ୍ତ ଶତପଥୀଙ୍କ
# ରମ୍ୟରଚନା

ସମ୍ପାଦନା
ଡକ୍ଟର ମନ୍ମଥ କୁମାର ପ୍ରଧାନ

# ବସନ୍ତ ଶତପଥୀଙ୍କ
# ରମ୍ୟରଚନା

ସମ୍ପାଦନା

ଡକ୍ଟର ମନ୍ମଥ କୁମାର ପ୍ରଧାନ



କଟକ - ୨

ବସନ୍ତ ଶତପଥିଙ୍କ ରମ୍ୟ ରଚନା ।। ସଂପାଦନା : ଡକ୍ଟର ମନ୍ମଥ କୁମାର ପ୍ରଧାନ।। ପ୍ରକାଶକ: ମିତା ବୁକ୍ସ, ବାଙ୍କାବଜାର, କଟକ-୭୫୩୦୦୨ ।। ପ୍ରଥମ ପ୍ରକାଶ : ୨୦୦୭(ଛାପାସଂଖ୍ୟା-୫୦୦)।। ପ୍ରଚ୍ଛଦ : ଶଶିକାନ୍ତ ରାଉତ ।। କଂପୁଟର ସହାୟତା : ଏମ୍‌ସ ପ୍ରିଣ୍ଟର୍ସ, କଟକ ।। ମୁଦ୍ରଣ : ପଂଚସଖା ଅଫ୍‌ସେଟ୍, କଟକ ।।
ମୂଲ୍ୟ : ଟ. ୯୦/-

**Basanta Satpathinka Ramya Rachana** || Ed.by : **Dr. Manmath Kr. Pradhan** || Published by : **Mita Books**, Bankabazar, Cuttack-753002 || First Edition : **2007** || Computer Support by : **AIM Printers**, Cuttack ||
Price : Rs. **90/-**

# ବସନ୍ତବାବୁ ଓ ତାଙ୍କ ରମ୍ୟରଚନା

ଯଶସ୍ୱୀ କଥାଶିଳ୍ପୀ ବସନ୍ତକୁମାର ଶତପଥୀଙ୍କ ଦେହାନ୍ତର ପ୍ରାୟ ବାର ବର୍ଷ ହୋଇଗଲା । ୧୯୬୩ ମସିହାରେ ବାଲେଶ୍ୱର ଫକୀରମୋହନ କଲେଜକୁ ସେ ବଦଳି ହୋଇ ଆସିବାଠାରୁ ମୃତ୍ୟୁଅବଧି ତାଙ୍କ ସହ ମୋର ସମ୍ପର୍କ ଥିଲା ଖୁବ୍ ଆତ୍ମିକ ଓ ଅନ୍ତରଂଗ । ସେତେବେଳେ ପ୍ରଖ୍ୟାତ କବି ଓ ସମାଲୋଚକ ଅଧ୍ୟାପକ ଚିନ୍ତାମଣି ବେହେରା ମଧ ଫକୀରମୋହନ କଲେଜରେ ଅବସ୍ଥାପିତ ଥା'ନ୍ତି । ଏ ଦୁଇ ସାରସ୍ୱତ ସାଧକଙ୍କ ସମେତ ଏଠାରେ ଥିବା ବହୁ ସାହିତ୍ୟିକଙ୍କ ଗହଣରେ ଆମର ସମୟ ଆନନ୍ଦରେ ବିତିଯାଉଥିଲା । ମୋର ଛୋଟ ମୁଦ୍ରଣାଳୟଟି ଥିଲା ଏହାର ପ୍ରଧାନ କେନ୍ଦ୍ରବିନ୍ଦୁ । ବସନ୍ତବାବୁଙ୍କର ପ୍ରକୃତ ସ୍ରଷ୍ଟାର ଜୀବନ ଏହି ୧୯୬୩ ମସିହାରୁ ଆରମ୍ଭ ହୋଇଥିଲା – ଆମ୍ଭମାନଙ୍କ ପ୍ରେରଣା ପାଇଁ । ଅବଶ୍ୟ ତା' ପୂର୍ବରୁ ତାଙ୍କ ଭିତରେ ଏକ ରସୋଚ୍ଛଳ ଲେଖକୀୟ ସତ୍ତା ଲୁଚି ରହିଥିଲା । କେବେ କେମିତି ସେ ଏହା ପୂର୍ବରୁ ଗୋଟାଏ ଯୋଡ଼ାଏ ଲେଖା ଲେଖୁଥିଲେ । ମାତ୍ର ବିଧିବଦ୍ଧ ଭାବରେ ସେ ନିୟମିତ ଲେଖୁଥିଲେ ତିରିଶବର୍ଷ ଧରି । ଏଥିରୁ ସେ ପାଉଥିଲେ ପରମ ଆନନ୍ଦ । ଦୁଃଖକୁ ଭୁଲିବା ପାଇଁ ସାହିତ୍ୟସାଧନା ହିଁ ଥିଲା ତାଙ୍କର ପ୍ରଧାନ ଅବଲମ୍ବନ ।

୧୯୬୩ ମସିହାରେ ବାଲେଶ୍ୱରରେ ରଚିତ ତାଙ୍କର ପ୍ରଥମଗଳ୍ପ– 'କାଣିଚିଆଁ' 'ଝଙ୍କାର'ରେ ପ୍ରକାଶ ପାଇବାପରେ ତାଙ୍କ ଲେଖନୀ ଆଗେଇ ଚାଲିଲା ଅଦମ୍ୟ ଗତିରେ । ସେ ବହୁ ରମ୍ୟରଚନା ଲେଖିଛନ୍ତି ଯାହାର ସଂଖ୍ୟା ପ୍ରାୟ ଚାଳିଶରୁ ଊର୍ଦ୍ଧ୍ୱ ହେବ । ସେଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇ ପାଠକମାନଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଛି । କିନ୍ତୁ ଦୁଃଖର କଥା ବସନ୍ତବାବୁଙ୍କ ମୃତ୍ୟୁ ପରେ ବାରବର୍ଷ ବିତି ଯାଇଥିଲେ ହେଁ ଏହି ରମ୍ୟରଚନା ଗୁଡ଼ିକ ସଂକଳିତ ହୋଇପାରିନାହିଁ । ଅବଶ୍ୟ ତାଙ୍କ ରମ୍ୟରଚନା ଉପରେ ଗବେଷଣା କରି ଜଣେ ଅଧ୍ୟାପକ ଇତି ମଧ୍ୟରେ ଉପାଧିପ୍ରାପ୍ତ ହୋଇସାରିଛନ୍ତି । ଏବେ ଯୁବ ଗବେଷକ ତଥା ପ୍ରାବନ୍ଧିକ ଡକ୍ଟର ମନ୍ମଥ କୁମାର ପ୍ରଧାନ ବହୁଚେଷ୍ଟା କରି ସେଗୁଡ଼ିକୁ ସଂଗ୍ରହ କରି ସଂକଳନର ରୂପ ଦେଉଛନ୍ତି । ତାଙ୍କର ଏହି ପ୍ରଚେଷ୍ଟା ସ୍ୱାଗତଯୋଗ୍ୟ ଅଟେ ।

ବସନ୍ତବାବୁ ଥିଲେ ଜଣେ ରସିକ ଲୋକ । ଅଧ୍ୟାପନା, ଭାଷଣ, ସାଧାରଣ କଥାବାର୍ତ୍ତା, ଚାଲିଚଳଣ – ପ୍ରତି କ୍ଷେତ୍ରରେ ତାଙ୍କର ଏହି ରସିକତା ସ୍ୱତଃ ବାରି ହୋଇପଡୁଥିଲା । ବୟସ, ପଦପଦବୀ, ଗୁରୁ- ଲଘୁ, ନାରୀ-ପୁରୁଷ ଓ ସ୍ଥାନ-କାଳ-ପାତ୍ର ନିର୍ବିଶେଷରେ ସେ ନିର୍ବିକାର

ଭାବରେ ହିଁ ରସ ପରିବେଷଣ କରି ରସିକପଣିଆର ପରିଚୟ ଦେଇଛନ୍ତି । 'ରମ୍ୟତା' ତାଙ୍କ କଥାଶିଳ୍ପର ପ୍ରଧାନ ଗୁଣ । ସେହି 'ରମ୍ୟତା' ତାଙ୍କ ରମ୍ୟରଚନାଗୁଡ଼ିକୁ ମଧ୍ୟ ରମ୍ୟ ଓ ରସବନ୍ତ କରିଛି । ଲଘୁ ପରିବେଷଣ ମାଧ୍ୟମରେ ଗୁରୁ କଥାଟିକୁ ସେ ଏଭଳି ସୁନ୍ଦର ଭାବରେ ଥୋଇଦିଅନ୍ତି ଯେ, ପାଠକ ସେଥିରେ ଚମତ୍କୃତ ହୋଇଥାଏ । ଫକୀରମୋହନ ଥିଲେ ତାଙ୍କ ସାହିତ୍ୟ ସୃଷ୍ଟିର ଆଦର୍ଶ । ସେଥିପାଇଁ ଫକୀରମୋହନୀୟ ଶିଳ୍ପରୀତିର ଏକ ପ୍ରଚ୍ଛନ୍ନ ପ୍ରଭାବ ତାଙ୍କ ଗଳ୍ପ ଓ ରମ୍ୟରଚନା ମାନଙ୍କରେ ପଡ଼ିଥିବାର ଲକ୍ଷ୍ୟ କରାଯାଏ । ଫକୀରମୋହନଙ୍କୁ ଯଦି ଓଡ଼ିଆ ରମ୍ୟରଚନାର ଜନକ କୁହାଯାଏ, ତେବେ ବସନ୍ତ ଶତପଥୀ ହେଉଛନ୍ତି ତାଙ୍କର ଜଣେ ସଫଳ ଓ ସାର୍ଥକ ଉତ୍ତରଦାୟାଦ ।

ରମ୍ୟରଚନା ଗଳ୍ପ ନୁହେଁ କି, ପ୍ରବନ୍ଧ ନୁହେଁ ବରଂ ଏ ଦୁଇର ଏକ ମିଳିତ ଫଳଶ୍ରୁତି । ଏହାର ଭାବସମ୍ପଦ ଓ ପରିବେଷଣ ଶୈଳୀ ଗୁରୁ ନୁହେଁ କି ଲଘୁ ନୁହେଁ – ବରଂ ଗୁରୁ – ଲଘୁର ଏକ ସମ୍ମିଳିତ ଅର୍କେଷ୍ଟ୍ରା । ଯାହା ପାଠକର ବୋଧ ଓ ବୋଧି ଉଭୟଙ୍କୁ ସ୍ପର୍ଶ କରେ, ହୃଦୟ ଓ ମଗଜକୁ ଆନ୍ଦୋଳିତ କରିବାକୁ ସମର୍ଥ ହୁଏ । ବହୁ ଲେଖକ ଏହି ଶିଳ୍ପରୀତିକୁ ଗ୍ରହଣ କରିଥିଲେ ହେଁ ସେପରି ସଫଳ ହୋଇନାହାନ୍ତି । ଲେଖକର ବହିର୍ଦୃଷ୍ଟି ସହିତ ଅନ୍ତର୍ଦୃଷ୍ଟି, ରମ୍ୟରସବୋଧ, ବହୁ ପାଠିକା ଓ ପରିବେଷଣରେ ଦକ୍ଷତା ନଥିଲେ ରମ୍ୟରଚନା ଉତ୍ତୀର୍ଣ୍ଣ ହେବା ଅସମ୍ଭବ । ବସନ୍ତବାବୁ ଜଣେ ସଫଳ ରମ୍ୟରଚୟିତା ଭାବରେ ପରିଚିତ । ତାଙ୍କ ଗଳ୍ପ ମାନଙ୍କରେ ରମ୍ୟରଚନାର ଏବଂ ରମ୍ୟରଚନାମାନଙ୍କରେ ଗଳ୍ପ କଥନର ଶୈଳୀ ମିଶିଯାଇ ଏକାକାର । 'ବୁଢ଼ାବାବୁ' ଏହାର ଏକ ସଫଳ ଉଦାହରଣ । ସେ ଇଂରାଜୀ ସାହିତ୍ୟରେ ଜଣେ ପ୍ରବୀଣ ଅଧ୍ୟାପକ ହୋଇଥିବାରୁ ବହୁ ଇଂରାଜୀ ଲେଖକଙ୍କ ରମ୍ୟରଚନାକୁ ଅତି ସୁନ୍ଦର ଭାବରେ ଆତ୍ମସ୍ଥ କରି ନିଜ ଶୈଳୀରେ ଆମ ପାଣି–ପବନ ସହିତ ମିଶାଇ ନୂଆ ରୂପ ଦେଇଛନ୍ତି କଥା କହିବା ଛଳରେ ସେ ପାଠକଙ୍କୁ ମଜେଇ ମତେଇ ମୂଳ ବକ୍ତବ୍ୟ ଆଡ଼କୁ ଧୀରେ ଧୀରେ ଆଗେଇ ନେଇଥାଆନ୍ତି ଯାହା ସେହି ରମ୍ୟରଚନାର କେନ୍ଦ୍ରବିନ୍ଦୁ । ତାଙ୍କର ବିଷୟ ବିନ୍ୟାସ, ଭାବବିନ୍ୟାସ ଓ ଶୈଳୀବିନ୍ୟାସ ଖୁବ୍ ଚମତ୍କାର ଓ ମନମତାଣିଆ । ତାଙ୍କର ରମ୍ୟରଚନାଗୁଡ଼ିକ ରସୋତ୍ତୀର୍ଣ୍ଣ ।

ସଂକଳକ ଡକ୍ଟର ପ୍ରଧାନଙ୍କୁ ଅଜସ୍ର ଧନ୍ୟବାଦ ଯେ ସେ ରମ୍ୟରଚନା ଗୁଡ଼ିକୁ ଏକ ପୁସ୍ତକ ଆକାରରେ ପ୍ରକାଶ କରାଇଛନ୍ତି । ଏଗୁଡ଼ିକୁ ଗ୍ରନ୍ଥାୟନ କରି ନଥିଲେ କାଳକ୍ରମେ ଏସବୁ ଅନ୍ଧକାର ଗର୍ଭକୁ ଚାଲି ଯାଇଥାନ୍ତା । ଅବଶିଷ୍ଟ ରମ୍ୟରଚନା ଗୁଡ଼ିକୁ ସେ ସଂଗ୍ରହ କରି ପରବର୍ତ୍ତୀ ସଂସ୍କରଣରେ ଯୋଗ କରି ପାରିଲେ ଏକ ମହତ୍ ଜାତୀୟ କାର୍ଯ୍ୟ ହୋଇପାରନ୍ତା । ଏଥିପାଇଁ ଡଃ ପ୍ରଧାନଙ୍କୁ ଓ ପ୍ରକାଶକଙ୍କୁ ଅଶେଷ ସାଧୁବାଦ ।

ଶ୍ରୀ ବ୍ରଜନାଥ ରଥ
ସୁନହଟ, ବାଲେଶ୍ୱର –୨

# ରମ୍ୟରଚନା ସଂକଳନ ସମ୍ପର୍କରେ କିଛିକଥା

ଅଧ୍ୟାପକ ଶ୍ରୀଯୁକ୍ତ ବିମଳ କୁମାର ମହାନ୍ତି ୨୦୦୨ ମସିହାରେ ମୋ ତତ୍ତ୍ୱାବଧାନରେ ଶ୍ରୀଯୁକ୍ତ ବସନ୍ତ ଶତପଥୀଙ୍କ ରମ୍ୟରଚନା ଶୀର୍ଷକ ନିବନ୍ଧ ଉପରେ ଗବେଷଣା କରି ଉତ୍କଳବିଶ୍ୱବିଦ୍ୟାଳୟରୁ Ph.D. ଡିଗ୍ରୀ ଲାଭ କରିଥିଲେ । ବହୁ ଶ୍ରମ ସ୍ୱୀକାର କରି ସେ ରମ୍ୟରଚନାଗୁଡ଼ିକୁ ସଂଗ୍ରହ କରିଥିଲେ । ଏ ଦିଗରେ ଶ୍ରୀଯୁକ୍ତ ଶତପଥୀଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀଯୁକ୍ତ ଶାନ୍ତନୁ କୁମାର ଶତପଥୀ, ସମ୍ମାନସ୍ପଦ କବି ଶ୍ରୀଯୁକ୍ତ ବ୍ରଜନାଥ ରଥ ଯଥେଷ୍ଟ ସହଯୋଗ କରିଛନ୍ତି । ଏହି ରମ୍ୟରଚନାଗୁଡ଼ିକୁ ଏକ ପୁସ୍ତକ ଆକାରରେ ପ୍ରକାଶ କରିବାର ଉଦ୍ୟମ ଥିଲେ ହେଁ, ତାହା ଫଳପ୍ରଦ ହୋଇନଥିଲା । ସମୟକ୍ରମେ ଶ୍ରୀଯୁକ୍ତ ବ୍ରଜନାଥ ରଥ ବସନ୍ତ ଶତପଥୀଙ୍କ ଜ୍ୟେଷ୍ଠପୁତ୍ର ଶାନ୍ତନୁ କୁମାର ଶତପଥୀ, ଅନ୍ୟତମ ପୁତ୍ର ତଥା ଇଂରାଜୀ ବିଭାଗର ପ୍ରାଧ୍ୟାପକ ଶ୍ରୀଯୁକ୍ତ ସୁମନ୍ୟୁକୁମାର ଶତପଥୀଙ୍କ ଠାରୁ ଏହି ପୁସ୍ତକଟିକୁ ପ୍ରକାଶ କରିବା ପାଇଁ ସହମତି ଆଣି ଦେଇଥିବାରୁ ମୁଁ ସମସ୍ତଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଶ୍ରୀଯୁକ୍ତ ଶତପଥୀଙ୍କ ଏହା ହେଉଛି ପ୍ରଥମ ରମ୍ୟରଚନା ସଂକଳନ । ପୁସ୍ତକଟିର ଶେଷରେ ରମ୍ୟରଚନାର ସମୟ ଓ ପ୍ରକାଶ ପାଇଥିବାର ପତ୍ରିକା ଗୁଡ଼ିକର ନାମ ତଥା ତାଙ୍କ ସୃଷ୍ଟିସମୂହର ପରିଚୟ ଦିଆଯାଇଛି । 'ଅଗ୍ରଦୂତ'ପ୍ରକାଶନୀର ଶ୍ରୀଯୁକ୍ତ ମନ୍ମଥ କୁମାର ପଟ୍ଟନାୟକ ଏହି ପୁସ୍ତକକୁ ପ୍ରକାଶ କରିଥିବାରୁ ମୁଁ ଅଶେଷ ଧନ୍ୟବାଦ ଜଣାଉଛି । ଅଗ୍ରଜ ପ୍ରତିମ ପ୍ରାଧ୍ୟାପକ ଡକ୍ଟର ମହେଶ୍ୱର ଦାସଙ୍କ ସହଯୋଗ ପାଇଁ ଅଶେଷ ସାଧୁବାଦ ଜଣାଉଛି । ଏଥିରେ ତେଇଶଟି ରମ୍ୟରଚନା ସଂକଳିତ ହୋଇଛି । ଅନ୍ୟ ରମ୍ୟରଚନାଗୁଡ଼ିକ ସଂଗୃହୀତ ହେଲେ ହେଁ ସେଗୁଡ଼ିକ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ସେଗୁଡ଼ିକୁ ପରବର୍ତ୍ତୀ ମୁଦ୍ରଣରେ ସ୍ଥାନିତ କରାଯିବାର ଲକ୍ଷ୍ୟ ରଖାଯାଇଛି ।

ଓଡ଼ିଆ ସାହିତ୍ୟର ଲବ୍ଧ ପ୍ରତିଷ୍ଠିତ ସାରସ୍ୱତ ସାଧକ ଭାବରେ ଶ୍ରୀଯୁକ୍ତ ବସନ୍ତ ଶତପଥୀ ଜଣେ ସ୍ମରଣୀୟ ପ୍ରତିଭା । ଅଧ୍ୟାପନା ତଥା ସୁବକ୍ତା ହିସାବରେ ସେ ସୁନାମ ଅର୍ଜନ କରିଛନ୍ତି । ଗାଳ୍ପିକ ଭାବରେ ଓଡ଼ିଆ ସାହିତ୍ୟରେ ସେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । ଶିଶୁସାହିତ୍ୟିକ, ନାଟ୍ୟକାର, ଅନୁବାଦକ ଓ ସମାଲୋଚକ ହୋଇଥିଲେ ହେଁ ସେ ରମ୍ୟରଚୟିତା ଭାବରେ ବେଶ୍ ଜନାଦୃତ । ତାଙ୍କ ରମ୍ୟରଚନାଗୁଡ଼ିକ ୧୯୬୨–୬୩ ମସିହାଠାରୁ ୧୯୯୦–୯୧ ମସିହା ମଧ୍ୟରେ ଝଙ୍କାର, ଆସନ୍ତାକାଲି, ସହକାର, ପ୍ରତିବେଶୀ, ସମାବେଶ, ନବଲିପି, ଜୀବନରଂଗ, ସାଗରିକା, କଳନା, ସାମ୍ମୁଖ୍ୟ ଇତ୍ୟାଦି ପତ୍ର ପତ୍ରିକାରେ ପ୍ରକାଶିତ । ମାନବିକ ଭାବ ସମ୍ବେଦନ, ସାଂସ୍କୃତିକ ସଚେତନତା, ସମାଜଜୀବନର ସୂକ୍ଷ୍ମପର୍ଯ୍ୟବେକ୍ଷଣର ଭାବ ନେଇ

ହାସ୍ୟ-ବ୍ୟଙ୍ଗ-କାରୁଣ୍ୟର ମଧୁର ସମନ୍ୱୟରେ ସେ ବହୁ ରମ୍ୟରଚନା ସୃଷ୍ଟିକରିଛନ୍ତି । ଜଣେ ଇଂରାଜୀ ଅଧ୍ୟାପକ ଭାବରେ ଇଂରାଜୀ ସାହିତ୍ୟକୁ ସେ ଗଭୀର ଭାବରେ ଅଧ୍ୟୟନ କରିଛନ୍ତି । ସେ କହନ୍ତି, ''କେହି ଇଂରାଜୀ ଅଧ୍ୟାପକ ଗବେଷଣା କରି ରାଶି ରାଶି ନିବନ୍ଧ ଭାରତରେ ଇଂରାଜୀରେ ଲେଖେ, ତାହା କେବଳ ଇଂଲଣ୍ଡରେ ସ୍ଥାନ ପାଇବ ନାହିଁ । ତାଙ୍କ ଇଂରାଜୀଜ୍ଞାନର ଯଥାର୍ଥ ସଦ୍ ବ୍ୟବହାର ହେବ ଯେବେ ସେ ଲବ୍ଧ ଜ୍ଞାନର ଆବଶ୍ୟକୀୟ ଅଂଶ ଦ୍ୱାରା ନିଜମାତୃଭାଷାକୁ ପରିପୁଷ୍ଟ କରିପାରିବେ ।''

ରମ୍ୟରଚନା ସାହିତ୍ୟରେ ଏକ ସ୍ୱତନ୍ତ୍ରକଳା । ରମଣୀୟ ଅର୍ଥରେ ନୁହେଁ, ମନ ଓ ପ୍ରାଣକୁ ଏହା ମୁଗ୍ଧ କରେ । 'ରମ୍ୟାର୍ଥ ଦୀପ୍ତ ଚିତ୍ତରେ ଆତ୍ମା ଆନନ୍ଦର ପ୍ରକାଶ ହେଉଛି ରମ୍ୟବୋଧ । ଭାବରୁ ରସର ଜନ୍ମ ହୁଏ, ଅର୍ଥରୁ ରମ୍ୟବୋଧ ଜନ୍ମେ । ଯେଉଁ ରଚନାରେ ରମ୍ୟାର୍ଥ ପ୍ରଧାନ ହୁଏ ତାହାହିଁ ରମ୍ୟରଚନା ।' ରମ୍ୟରଚନା ସୌନ୍ଦର୍ଯ୍ୟ କଳା Aesthetic art ଓ ଶାସ୍ତ୍ରୀୟକଳା classical art ର ସମନ୍ୱୟ ଅଟେ । ତେବେ ରମ୍ୟରଚନାର ସ୍ୱକୀୟ ପ୍ରରୂପ ଭିତରେ ରହିଛି ବ୍ୟକ୍ତିଗତ ଅନୁଭବ, ଅନୁଭୂତି ଓ ଅଭିଜ୍ଞତାର ପ୍ରତିଫଳନ, ପ୍ରଜ୍ଞା ଓ ପ୍ରାଣର ଅପୂର୍ବ ମିଳନ, ଦିବ୍ୟଗୁରୁ-ଦିବ୍ୟଦୃଷ୍ଟି, ଆତ୍ମପ୍ରେମ, ପୁରାତନକୁ ନୂଆ ଭଂଗୀରେ-ଦେଖିବାର ଚାହାଁଣି ଓ ଚମକ । ରମ୍ୟରଚନାର ଆଦର୍ଶ ଅଙ୍ଗଟି ହେଉଛି କାବ୍ୟିକ ସାବଲୀଳତା, ନାଟକୀୟ ବିସ୍ମୟ, ବୁଦ୍ଧିଦୀପ୍ତ ବାକ୍‌ଚାତୁରୀ, ହାସ୍ୟରସର ଯଥୋଚିତ ପରିବେଷଣ, ଭାଷା ଓ ଶୈଳୀର ସ୍ୱକୀୟତା, ଭାବ ଅଭିବ୍ୟକ୍ତିର ଉନ୍ମୁଖତା ଓ ସ୍ୱଚ୍ଛନ୍ଦତା । ରମ୍ୟରଚନାର ପ୍ରାଣଧର୍ମ ହେଉଛି ବ୍ୟକ୍ତିଗତ ଜୀବନ, ରାଷ୍ଟ୍ରୀୟ ଜୀବନକୁ ମହତ୍ତର କରି ତୋଳିବା । ଏହା ବସ୍ତୁନିଷ୍ଠ ଗୁରୁଗମ୍ଭୀର ବର୍ଣ୍ଣନାତ୍ମକ ପ୍ରବନ୍ଧ ନୁହେଁ,ବ୍ୟକ୍ତିନିଷ୍ଠ ଶୈଳୀରେ ଏହା ଜୀବନ୍ତ ଭାଷ୍ୟ ଅଟେ । ଉନବିଂଶ ଶତାବ୍ଦୀରୁ ଏହି ରମ୍ୟରଚନା ବିଶ୍ୱ ସାହିତ୍ୟରେ ସୃଷ୍ଟି ହୋଇଛି । ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟ ହେଉଛନ୍ତି ରମ୍ୟରଚନାର ପ୍ରଥମ ସ୍ରଷ୍ଟା । 'ବିବେକୀ' ତାଙ୍କର ପ୍ରଥମ ରଚନା । ବହୁ ରମ୍ୟ ରଚୟିତା ଓଡ଼ିଆ ସାହିତ୍ୟରେ ଏକ ନୂତନ ଧାରା ସୃଷ୍ଟି କରି ସଫଳ ହୋଇଛନ୍ତି । ତନ୍ମଧ୍ୟରୁ ବସନ୍ତ ଶତପଥୀ ଜଣେ ପ୍ରତିଷ୍ଠିତ ପ୍ରତିଭା ଅଟନ୍ତି । ହୃଦୟର ସତ୍ୟାଶ୍ରୟୀ ଅନୁଭୂତି, ହାସ୍ୟ, ଆନନ୍ଦ, ବେଦନାର କଲ୍ଲୋଳିତ ପ୍ରବାହକୁ ସେ ସାହିତ୍ୟର ଏକମାତ୍ର ଉପାଦାନ ହିସାବରେ ଗ୍ରହଣ କରି ସେଗୁଡ଼ିକୁ ରୂପାୟିତ କରିଛନ୍ତି ନିଜର ରଚନାରେ ।

ତାଙ୍କର 'ବୁଢ଼ାବାବୁ' ରମ୍ୟରଚନାରେ ରାଜନୀତିକ ସ୍ୱେଚ୍ଛାଚାରିତା, ସ୍ୱାର୍ଥସର୍ବସ୍ୱ ମନୋଭାବକୁ ଦେଖାଇଛନ୍ତି-''ରାଜନୀତିଜ୍ଞମାନେ ବୁଢ଼ା ବା ବୁଢ଼ୀ ହୁଅନ୍ତି ନାହିଁ । ମନେ ମନେ ହିସାବ କରି ଦେଖନ୍ତୁ କେତୁଟା ଦେଶର ପ୍ରଧାନମନ୍ତ୍ରୀ, ପ୍ରେସିଡେଣ୍ଟ ଷାଠିଏ ବର୍ଷ ତଳର । ଚାକିରୀରେ ଯିଏ ଷାଠିଏ ଉପରକୁ ଅଯୋଗ୍ୟ ହୁଏ, ରାଜନୀତିରେ ସିଏ ଅତିଯୋଗ୍ୟ ଓ କର୍ମଠ ବୋଲି ବିବେଚିତ ହୁଏ ।'' (ଝଙ୍କାର - ୧୯୭୩ - ୩ୟ ସଂଖ୍ୟା)

'ଚାଟୁ' ରମ୍ୟରଚନାରେ ରାଜନୀତିକ ବ୍ୟକ୍ତିମାନେ କିପରି ସାଧାରଣକୁ ଚିକ୍କଣିଆ କଥା କହି ଫାଇଦା ଉଠାନ୍ତି, ଅଭିନନ୍ଦନ, ମାଲ୍ୟାର୍ପଣ, ପ୍ରତିମୂର୍ତ୍ତି ଉନ୍ମୋଚନ ଭଳି ଚାଟୁକାରିତା କିପରି ରାଜନୀତିକ ଜୀବନରେ ଖ୍ୟାତି ହାସଲ କରିଛି, ତାହାର ବର୍ଣ୍ଣନା ବେଶ୍ ମାର୍ମିକ

ହୋଇଛି । 'ଦୁଗ୍ଧପୋଷ୍ୟ' ରମ୍ୟରଚନାରେ ଆଜିର ଚାକଚକ୍ୟପୂର୍ଣ୍ଣ ସଭ୍ୟତା ସାମାଜିକ ଜୀବନକୁ କିପରି ରୁଗ୍‌ଣ, ଦୁର୍ବଳ, ଅବଶ କରିଦେଇଛି ତାହାକୁ ସ୍ରଷ୍ଟା ବ୍ୟଞ୍ଜନା କରିଛନ୍ତି । 'ଆପଣାହସ୍ତେ ଜିହ୍ୱା ଛେଦୀ' ରଚନାରେ ସମାଜର ଅତି ସାଧାରଣ ସ୍ତରରୁ ଦୁର୍ନୀତି କିପରି କାୟା ବିସ୍ତାର କରିଛି ତାହାର ଚିତ୍ର ଚିତ୍ରିତ ହୋଇଛି । 'ପାନ' ରମ୍ୟରଚନାରେ ସ୍ରଷ୍ଟା ପାରିବାରିକ ଜୀବନର ଏକ ସୌହାର୍ଦ୍ଦପୂର୍ଣ୍ଣ ତଥା ମମତାସିକ୍ତ ସମ୍ପର୍କ ରୂପେ ଦର୍ଶାଇଛନ୍ତି-''ପାନ ଆପଣ ଖାଆନ୍ତୁ ବା ନ ଖାଆନ୍ତୁ ପାନ ଖିଲ ଗ୍ରହଣ ନ କରିବା ଅତିଥି ପକ୍ଷରେ ବଡ଼ ହୃଦୟହୀନତାର ଚିହ୍ନ, କାରଣ ପାନ ଖଣ୍ଡିରେ ଶରଧା, ଜାତି, ବଂଶ, ପରମ୍ପରା, ହସ ମାଧୁର୍ଯ୍ୟ, ଇହକାଳ, ପରକାଳ, ପୁଣ୍ୟରାଶି ପୁଞ୍ଜିଭୂତ ।''

'ନଙ୍ଗୁଳି ' ରମ୍ୟରଚନାରେ ସାମ୍ପ୍ରତିକ ସାମାଜିକ ଜୀବନର ନଗ୍ନ, ଅଶ୍ଳୀଳତା ଓ ନୀତିହୀନଆଚରଣକୁ ବ୍ୟକ୍ତ କରିଛନ୍ତି । 'ପ୍ରୀତ୍ୟୁପହାର' ରଚନାରେ ଲେଖକ ବ୍ୟକ୍ତିଜୀବନଠାରୁ ଆରମ୍ଭ କରି ଜାତୀୟଜୀବନ ପର୍ଯ୍ୟନ୍ତ ମଣିଷର ସମସ୍ତ କାର୍ଯ୍ୟକଳାପ ଉପରେ ତାର୍ଯ୍ୟକ ଦୃଷ୍ଟିଭଂଗୀ ପ୍ରକଟ କରିଛନ୍ତି । 'ତର୍କ ବିର୍ତକ' ରଚନାରେ ଅହଂସର୍ବସ୍ୱ ମଣିଷର ପ୍ରବୃତ୍ତିକୁ ବିଦ୍ରୂପ କରିଛନ୍ତି । ସେ କେତେଗୁଡ଼ିଏ ରମ୍ୟରଚନା 'STATEMAN' ର'Now ands again' ସ୍ତମ୍ଭରୁ ଅନୁବାଦ କରିଛନ୍ତି । ସେଗୁଡ଼ିକ ହେଲା Manmohan ଙ୍କର 'Valentirememory ରୁ ଶ୍ରୀଯୁକ୍ତ ଶତପଥୀଙ୍କର 'ପ୍ରେମ ପତ୍ରର ସ୍ମୃତି', Chandan Sen ଙ୍କର Living with Grand father ରୁ 'ଅଜାଙ୍କ ସଂଗେ ରହଣି', D.J.J. ଙ୍କର Kidscome ରୁ'ପିଲାଏ ଆସିଥିଲେ', Raj chatterji ଙ୍କର 'Man who stayed' ରୁ 'ଯେଉଁ ବନ୍ଧୁଟି ରହିଗଲେ', R. Dorai Swami ଙ୍କର Cooking up work ରୁ 'କାମ ରାନ୍ଧିବା' Dillip Biswas ଙ୍କ The fat of the casd ରୁ 'ଆମ ଦେଶର ମୋଟି ଝିଅଙ୍କ ଉଦ୍ଦେଶ୍ୟରେ', N. Mukharji ଙ୍କ Back to flower ରୁ 'ପୁଣି ଫୁଲ ଫୁଟିଲା', Baudhyan Mukherji ଙ୍କ A forgetable character ରୁ 'ଏକ ବିସ୍ମରଣୀୟ ଚରିତ୍ର' Sulekha Dasgupta ଙ୍କ A bad habit ରୁ 'ଗୋଟିଏ ବଦଭ୍ୟାସ' Animesh Roychoudhury ଙ୍କ Atonment ରୁ 'ପ୍ରାୟଶ୍ଚିତ୍ତ', Goyan Kapoor ଙ୍କ The mother complex ରୁ 'ମାତୃତତ୍ତ୍ୱର ଅଭିଳାଷ'Suresh Chopra ଙ୍କ 'The key to happiness ରୁ 'ମହାବାଣୀ' ପ୍ରଭୃତି ରମ୍ୟରଚନା ସ୍ରଷ୍ଟାଙ୍କ ପ୍ରତିଭାର ପରିଚୟ ଦିଏ । ଏହା ବ୍ୟତୀତ Stiphen Licok, Hileyar Belle, Gardener, Robert Lynd, Dinninj ଙ୍କ ରଚନାରୁ ମଧ୍ୟ ସେ ଅନୁବାଦ କରି ବହୁ ରମ୍ୟରଚନା ଲେଖିଛନ୍ତି ।

ସହଜ ସରଳ ଭାଷାକୁ ବାକ୍ ଭଂଗୀରେ ପ୍ରକାଶ କରିବା ଶତପଥୀଙ୍କ ଶୈଳୀର ଅନ୍ୟ ଏକ ବୈଶିଷ୍ଟ୍ୟ । ସରସ ରସାନୁଭୂତି ଦ୍ୱାରା ଅନୁରଞ୍ଜିତ କରିବା ତାଙ୍କର ନିଜସ୍ୱ ଶୈଳୀର ପରିଚୟ ଦିଏ । ଓଡ଼ିଆ ରମ୍ୟ ରଚନାର କ୍ରମବିକାଶରେ ତାଙ୍କର ସ୍ଥାନ ଅନନ୍ୟ ଓ ଅନବଦ୍ୟ ଅଟେ । କଳାତ୍ମକ ଦୃଷ୍ଟିରୁ ତାଙ୍କ ରମ୍ୟରଚନା ଗୁଡ଼ିକ କାଳଜୟୀ ହୋଇଛି । ଏହା ଏକ ବିସ୍ତୃତ ଆଲୋଚନାର ଅପେକ୍ଷାକରେ ।

ଡକ୍ଟର ମନ୍ମଥ କୁମାର ପ୍ରଧାନ

# ରମ୍ୟରଚନାର ସମୟ ନିରୂପଣ

୧. ବୁଢ଼ା ବାବୁ – 'ଝଙ୍କାର' ଶାରଦୀୟ ସଂଖ୍ୟା – ୧୯୭୩
୨. ଆଧୁନିକ କେଶ ବିନ୍ୟାସଗୃହ – ଝଙ୍କାର – ୧ମ ସଂଖ୍ୟା – ୧୯୬୮
୩. ପାନ ..... ଝଙ୍କାର – ୨ୟ ସଂଖ୍ୟା – ୧୯୬୭
୪. ଗାନ୍ଧୀଦର୍ଶନ ...... ୫ମ ସଂଖ୍ୟା – ୧୯୬୫
୫. ଋଣମୁକ୍ତ – ପୂଜା ସଂଖ୍ୟା ୧୯୮୭
୬. ଜଣେ ପାଠକଙ୍କ ସହିତ କଥାବାର୍ତ୍ତା – ୧୦ମ ସଂଖ୍ୟା – ୧୯୬୫
୭. ଚାଟୁ – ବିଷୁବ ସଂଖ୍ୟା – ୧୯୬୫
୮. ଆଜ୍ଞାଟିକେ ଦୟାକରି – ୩ୟ ସଂଖ୍ୟା ୧୯୬୫
୯. ମୋ କଲେଜ – ୬ଷ୍ଠ ସଂଖ୍ୟା – ୧୯୬୫
୧୦. ଶିକ୍ଷା ସଂସ୍କାରର ଗୋଟିଏ ଦିଗ – ବିଷୁବ ସଂଖ୍ୟା – ୧୯୬୫
୧୧. ଭୁଲାମନ – ୮ମ ସଂଖ୍ୟା – ୧୯୭୨
୧୨. ଅବଗୁଣ୍ଠନ ବତୀ – ୯ମ ସଂଖ୍ୟା – ୧୯୬୫
୧୩. ପ୍ରାତ୍ୟୁପହାର – 'ପ୍ରତିବେଶୀ' – ୧୯୬୮
୧୪. ଆପଣା ହସ୍ତେ ଜିହ୍ୱା ଛେଦି – ୧୯୬୮
୧୫. ତୁଚ୍ଛାକୁ ଏତେ – ଜୀବନରଂଗ – ୧୯୬୯
୧୬. ଦୋଷ ଧରିବେନି – ଆସନ୍ତାକାଲି – ୧୯୬୫
୧୭. ଜୀବନ ବିମା – ଆସନ୍ତାକାଲି – ୧୧ସଂଖ୍ୟା – ୧୯୬୭
୧୮. ନକ୍କୁଳି – ଆସନ୍ତାକାଲି – ୧୦ମ ସଂଖ୍ୟା – ୧୯୬୯
୧୯. ଶ୍ୱେତ ବିପ୍ଳବ – ଆସନ୍ତାକାଲି – ୧୧ମ ସଂଖ୍ୟା – ୧୯୮୩
୨୦. ତର୍କ ବିତର୍କ – 'ସାନ୍ନିଖ୍ୟ'– ୫ମ ସଂଖ୍ୟା – ୧୯୮୮
୨୧. ଗୋଟିଏ କୁକୁରକୁ କେନ୍ଦ୍ର କରି – ୧୯୬୭
୨୨. ହସ – ସହକାର – ୧୯୬୭
୨୩. ବାଘ ରଜା – ୧୯୬୮
୨୪. ନମସ୍କାର ସାର୍ – ୧୯୬୯
୨୫. ଦୁଗ୍ଧପୋଷ୍ୟ – 'କଳନା' – ୮ମ ସଂଖ୍ୟା – ୧୯୬୫
୨୬. ଶୁଭବିବାହ – 'ସମାବେଶ' – ପୂଜାସଂଖ୍ୟା – ୧୯୯୩
୨୭. ମାଛ ମିଛ – ୧୯୯୨
୨୮. ପାନ ପିକ – ମୂଳପାଣ୍ଡୁଲିପିରୁ ସଂଗୃହୀତ
୨୯. ପୂରା ମରାମତି – ମୂଳପାଣ୍ଡୁଲିପିରୁ ସଂଗୃହୀତ

୩୦.    କୃଷିରେ ବିଜ୍ଞାନର ପ୍ରୟୋଗ - ମୂଳପାଣ୍ଡୁଲିପିରୁ ସଂଗୃହୀତ
୩୧.    ମୋର ଶ୍ରେଷ୍ଠ ଅଲମ୍ପିକ୍ ପୁରସ୍କାର - ମୂଳପାଣ୍ଡୁଲିପିରୁ ସଂଗୃହୀତ
୩୨.    ମୁଁ ତେବେ ରହିଲି - 'କଳିଙ୍ଗ' (ସମ୍ବାଦପତ୍ର) - ୧୯୬୭
୩୩.    ଆମ୍ଭଦିଅଁ ଦେଖିବା ବୁଲି ଆସିବା - ମୂଳପାଣ୍ଡୁଲିପି
୩୪.    ଯେଝା ହାତରେ ଚଉଦପା'
୩୫.    କ୍ଳିଓ ପେଟ୍ରା -
୩୬.    କଟକ ଯାତ୍ରା - ' ବାଙ୍ମୟ' - ଶାରଦୀୟ ୧୯୯୭

## ବସନ୍ତଶତପଥୀଙ୍କ ସୃଷ୍ଟିସମ୍ଭାର

ଓଡ଼ିଆ ସାହିତ୍ୟରେ ଜଣେ ପ୍ରତିଷ୍ଠିତ ପ୍ରତିଭାରୂପେ ପରିଚିତ । ଗାଳ୍ପିକ ତଥା ରମ୍ୟରଚୟିତା ଭାବରେ ସେ ଆଦୃତ ଓ ଖ୍ୟାତି ଅର୍ଜନ କରିଛନ୍ତି । ୧୯୭୯ ମସିହାରେ ସେ 'ଝଙ୍କାର' ପୁରସ୍କାର ୧୯୬୮ ମସିହାରେ ସେ ଏଣ୍ଟିରୋମାଣ୍ଟିକ୍ ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ସମ୍ପାଦନା - ସଞ୍ଚୟନ (ଓଡ଼ିଆ କବିତା ସଂକଳନ)

ଅନୁବାଦ -ନବନାଟିକା - ୧୯୬୦ (ଶ୍ରେଷ୍ଠଇଂରାଜୀ ଏକାଙ୍କିକାର ସାବଲୀଳ ଅନୁବାଦ)

ଚମ୍ପା - ୧୯୭୦ - ଛ'ମାଣ ଆଠଗୁଣ୍ଠର ନାଟ୍ୟରୂପ

୧୯୭୭ - ଲେମ୍ବଙ୍କ ସେକ୍ସପିୟର କାହାଣୀମାଳାର ଅନୁବାଦ

୧୯୭୯ - ରାଜା - (ରବୀନ୍ଦ୍ରନାଥଙ୍କ ପଞ୍ଚନାଟକର ଅନୁବାଦ)

୧୯୭୦ - ଇଉଲିସେସ୍‌ଙ୍କ ଓ ମାନଚେଥ୍ ସେବ୍‌ଙ୍କ ଭ୍ରମଣକାହାଣୀ ଦୁଇଟିର

**ଅନୁବାଦ ଗଳ୍ପ ସଂକଳନ -**

ଏଣ୍ଟିରୋମାଣ୍ଟିକ - ୧୯୬୬
ଗଂଗା ଓ ଗାଙ୍ଗୀ - ୧୯୮୧
ହାଇଦ୍ରାବାଦ ଅଙ୍ଗୁର - ୧୯୮୨
ମାଂସାଶୀଙ୍କ ଉଦ୍ଦେଶ୍ୟରେ - ୧୯୮୨
ଗୋଟିଏ ଆକୁ - ୧୯୮୨
ନୀଡ଼ାଶ୍ରୟୀ - ୧୯୮୩
ଅଜାଗା ଘା' - ୧୯୮୩
ମେଡ଼ର ଅପେରେସନ - ୧୯୯୧
ପୁଅ ପାଇଁ ଝିଅଟିଏ - ୨୦୦୦



# ସୂଚୀପତ୍ର





# ଆପଣା ହସ୍ତେ ଜିହ୍ବା ଛେଦି

ଆମ ଗାଁରେ ସେ ଦିନ ମଜ୍‌ଲିସ୍‌ଟା ଭାଗବତ ଟୁଙ୍ଗି ବା କ୍ଲବ ଘରେ ନବସି ଜମିଥାଏ କିଆ ପୋଖରୀ ହୁଡ଼ାରେ । ନଅ ଦିନ ଧରି କଣକଣି ଶୀତ ଆଉ କାଲୁଆ ପାଗ ପରେ ଦିନଟା ଯାକ ଖୁବ୍ ଟାଣୁଆ ଖରା ହୋଇ ଫୁଲ ସଞ୍ଜ ବେଳକୁ ଆମ୍ବ ବଉଳ ମହକ ସହିତ ସୁଲୁସୁଲିଆ ଦକ୍ଷିଣା ପବନ ବହୁଥାଏ । ଫି ସାହିରୁ ଅନ୍ତତଃ, ଦି ଜଣ ଲେଖାଏଁ ମୁରବୀ ଭୂଇଁରେ ଗାମୁଛା ପାତି ପିକା, ଗୁଡ଼ାଖୁ, ନାସ, ଚୂନପତର ବିବିଧ ଉପଯୋଗ କରି ଚାଲିଥାନ୍ତି । ନରହରି ମିଶ୍ରେ ପ୍ରଥମେ ଆରମ୍ଭ କଲେ "ଦେଖିଲ ତ ! ହଜାରେ ଟଙ୍କାର କାମ । କୁହାକୁହି ଧରାଧରି କରି କେଡ଼େ କଷ୍ଟରେ । ଟଙ୍କା ମଞ୍ଜୁର କରେଇଲୁଁ, ସମସ୍ତେ ଏକ ରାହାରେ କହିଲୁଁ ତାଙ୍କୁଇ କାମଟା ଦିଅ । କଲେ କ'ଣ ? କୂଅ ଉଖାଳି ଦେଲେ ଯେ ସାନ ବାଲ୍‌ଟିଟିଏ ବି ବୁଡ଼ିବାକୁ ନାହିଁ; ଚାନ୍ଦିନୀ ପଲସ୍ତରା କଲେ ଯେ ଦି'ଟା ଦିନରେ ଇଟାବାଲିଚୂନ ଏକାକାର । ଘର ଡିଙ୍କି କୁମ୍ଭୀର ହେଲେ କ'ଣ କରିବା ?" ମହେଶ୍ୱର ପ୍ରୁହାଣ ବଡ଼ ପାଟିରେ କହିଲା "ଦାଣ୍ଡ ଗୋହିରି କାମ ଅଧିକ କ'ଣ ହେଲା କି ? ମୁଠାଏ ମୁଠାଏ ନାଲି ଗୋଡ଼ି ଏଠି ସେଠି ବୁଣିଦେଇ କୋଦାଳେ ଦି'କୋଦାଳ ମାଟି ହାତ ପହୁଞ୍ଚରୁ ଟେକି ଆଣିଲେ, ମାପଯୋଖ କରାଇ ହାତଗୁଞ୍ଜା ଦେଇ ପାଞ୍ଚହଜାର ମାଠି ଦେଲେ, ଜଣକର ଦାଣ୍ଡଘର, ବାରଣ୍ଡା ସିମେଣ୍ଟ ମେଜିଆ ତ ଅନ୍ୟ ଜଣକର ଗୁହାଳ ଘର ସିମେଣ୍ଟ ଟାଇଲି ।" ତାଙ୍କ କଥା ଶେଷ ହେଉ ନ ହେଉଣୁ ମିଶ୍ରେ ସୁର ଧରି ଗାଇଲେ "ଆପଣା ହସ୍ତେ ଜିହ୍ବା ଛେଦି କେ ତା'ର ଅଛି ପ୍ରତିବାଦୀ ।" ପ୍ରୁହାଣ ପୁଅ ଯୋଡ଼ିଲା 'କାହାକୁ କହିବା କପାଳରେ ସିନା କର ତାଡ଼ିବା ।'

ଖଣ୍ଡେ ଦୂରରେ ତାଳ ଗଛର ପତଳା ଛାଇରେ ଛିଡ଼ାହୋଇ ସିଗାରେଟ୍ ଟାଣୁଥାଏ ଏବଂ ଶୁଣୁଥାଏ ଏ ଅଧାପାଠୁଆ, ଦରପାଠୁଆଙ୍କ ମୁହଁରୁ ଢଗଢମାଳି, କାବ୍ୟ କବିତାର ଅବାରିତ ସାବଲୀଳ ନିର୍ଭୁଲ ପ୍ରୟୋଗ ।

ଆପଣା ହସ୍ତେ ଜିହ୍ବା ଛେଦି – ମାତ୍ର ନଅଟି ଅକ୍ଷର କିନ୍ତୁ ତା'ର ତାତ୍ପର୍ଯ୍ୟ, ବ୍ୟାପ୍ତି ଓ ପ୍ରୟୋଗ କେତେ ବିବିଧ ଓ ଅପ୍ରମିତ । ନଅ ମିନିଟ୍ କ'ଣ ନଅ ଘଣ୍ଟା, ନଅ ଦିନ ଧରି ପ୍ରବଚନ ଦେଇହେବ ଯାହି ଉପରେ ।

ପ୍ରଥମେ ଜିଭଟି କଥା ଭାବନ୍ତୁ ତ । ପାଟି ଭିତରେ ଲୁଚିଛି କେଡ଼େ ଛୋଟ ଇନ୍ଦ୍ରିୟ ଟିକକ । କିନ୍ତୁ ଅପରିସୀମ ତା'ର ମହିମା । ଏଇ ଜିଭ ପାଇଁ ଜୀବଜଗତରେ ଆମର ସ୍ୱତନ୍ତ୍ର

ସ୍ଥାନ । ଆମେ ଟକିଙ୍ଗ୍ ଓ ଲାଫିଙ୍ଗ୍ ଏନିମଲ୍ । ଏଇ ଜିଭ ଆମକୁ ଷଡ଼ରସ କାହିଁକି ନବରସର ଆସ୍ୱାଦ ଦିଏ । ଆମେ କଥା କହୁ, ହସିପାରୁ, ଏଇ ଜିଭରୁ ଆଦି ଶବ୍ଦ ଓମ୍ ଉଚ୍ଚାରିତ । ଏଇଥିରୁ ବେଦ, ଗୀତା, ଭାଗବତ । ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି-ସ୍ଥିତି-ଲୟ ପ୍ରକ୍ରିୟାର ଆଦିମନ୍ତ୍ର ଏଇ ଜିହ୍ୱାରୁ । ଏଇ ଜିଭରେ ଆମେ ପ୍ରାର୍ଥନା କରୁଁ, ଗୀତ ଗାଉଁ । ଏଇ ଜିଭ ଜରିଆରେ ପ୍ରେମିକ ପ୍ରେମିକା ପରସ୍ପରକୁ କଥା ଦିଅନ୍ତି, ପିତା ବାକ୍‌ଦାନ କରେ ଏବଂ ପୁରୋହିତ ମହାବାକ୍ୟ ଉଚ୍ଚାରଣ କରି ଦୁଇଟି ହୃଦୟ ଏକ କରେ। ଗୋଟିଏ ଜିଭ କୋଟି କୋଟି ଲୋକଙ୍କ ଅସ୍ତ୍ରଶସ୍ତ୍ରର ଶକ୍ତିକୁ ପରାଭୂତ କରି ବୈପ୍ଳବିକ ପରିବର୍ତ୍ତନ ଆଣିପାରେ ଦୁନିଆରେ ।

ଯଦି ଆମର ଅଭାବନୀୟ କ୍ଷମତାସମ୍ପନ୍ନ ସର୍ବଶକ୍ତିମାନ୍ ଇନ୍ଦ୍ରିୟକୁ କିଏ କାଟି ଦିଏ ତେବେ ଆମେ କେଡ଼େ ଚିଜଟି ନ ହରାଇଲୁଁ । ଗ୍ରୀସ୍ ଦେଶର ରାଜକନ୍ୟା ଫିଲୋମେଲାଙ୍କ ଅପରୂପ ସୌନ୍ଦର୍ଯ୍ୟରେ ପ୍ରଲୁବ୍ଧ ହୋଇ ଭିଣୋଇ ତା' ଉପରେ ପାଶବିକ ଅତ୍ୟାଚାର କଲେ ଏବଂ କାଳେ ତାଙ୍କ ସ୍ତ୍ରୀକୁ ଦୁଷ୍କର୍ମ କଥା ସେ କହିଦେବ ସେଥିପାଇଁ ତା' ଜିଭଟିକୁ କାଟିଦେଲେ । ପ୍ରକାଶ ଶକ୍ତି ହରାଇ ଅବ୍ୟକ୍ତ ବେଦନାରେ ଝିଅଟିର ହୃଦୟ ଯେତେବେଳେ ବିଦୀର୍ଣ୍ଣ ହେବାକୁ ବସିଲା କୃପା କରି ଦେବତାମାନେ ତାକୁ ନାଇଟିଙ୍ଗେଲ୍ ଚଢ଼େଇ କରିଦେଲେ ଯିମିତିକି ସେ ରାତି ଅଧରେ ଗଛପତ୍ର ଆଢୁଆଳରୁ କରୁଣ ସଙ୍ଗୀତ ମୂର୍ଚ୍ଛନାରେ ତା' ଦୁଃଖ ଦୁନିଆଁକୁ ଜଣେଇ ପାରିବ । ଆମ ଏଇ ଭାରତରେ ଈର୍ଷାପରାୟଣ ପଣ୍ଡିତବର୍ଗ ପରମା ବିଦୂଷୀ ତରୁଣୀ ଲୀଳାବତୀଙ୍କ ଜିଭ କାଟିଦେଇ ଗଣିତ ସମ୍ପଦର ଯେଉଁ ଅପୂରଣୀୟ କ୍ଷତି କଲେ ଖନା ବଚନ ତା'ର ସାକ୍ଷୀ ।

ଯଦି ଅନ୍ୟ କିଏ ଆମ ଜିଭ କାଟିଦେଲା ବା ଆକସ୍ମିକ ଦୁର୍ଘଟଣାରେ ତାକୁ ହରାଇଲୁଁ ତେବେ ଆମେ ଅନ୍ୟ ଉପରେ ଦୋଷ ଦେଇପାରୁଁ । ମାତ୍ର ଏକ ଅମୋଘ ଅସ୍ତ୍ରଟିର ମହିମାଜାଣି ମଧ୍ୟ ଯଦି ଅନ୍ୟ ହାତକୁ ଛୁରୀଟିଏ ବଢ଼ାଇଦେଉଁ ବା ନିଜେ ନିଜ ହାତରେ ଛେଦି ଦେଉଁ ତେବେ ଆମେ କେଡେ ମର୍ମନ୍ତୁଦ ଜଘନ୍ୟ କାମ ନ କରିଲୁଁ । କେହି ବାଦ କଲେ ପ୍ରତିବାଦ କରିବ କିଏ ? ଆମ ପିଠିରେ ପଡ଼ିବ କିଏ ? କେଉଁ ଓକିଲ ଓକାଲତ୍‌ନାମାରେ ସଫେଇ ପାଇଁ ସ୍ୱାକ୍ଷର କରିବ ? ଅସହାୟ ସମ୍ବଳହୀନ ହୋଇ ଆଶ୍ୱାସନା ଛଳରେ, ନିଜକୁ ଧିକ୍କାର କରି ଗଁ ଗଁ ହୋଇ ମନେ ମନେ କେବଳ କହୁଥିବୁ 'ଆପଣା ହସ୍ତେ ଜିହ୍ୱା ଛେଦି ।'

ଜିଭ ନକାଟି ମଧ୍ୟ ମାରାତ୍ମକ ଭୁଲ କରାଯାଇ ପାରେ, ଅଜସ୍ର କ୍ଷତି ଘଟାଇ ପାରୁଁ । ଆମ ଗାଁବାଲା ଦାଣ୍ଡ ତିଆରି, କୂଅ ଉଝାଳିବା ପ୍ରସଙ୍ଗରେ ଜିଭ ଛେଦିବା କଥା କାହିଁକି କହୁଥିଲେ ? ନିଜେ ଯେଣୁ ଭୁଲ କରିଛନ୍ତି ଅନ୍ୟକୁ ଦୋଷ ଦେଇ ପାରୁନାହାନ୍ତି । ବର୍ତ୍ତମାନ ପ୍ରଶ୍ନ ହେଲା ମଣିଷ ଜିଭ କାଟେ କାହିଁକି ? ମଣିଷ ଭୁଲ କରେ, ଜିଭ କାଟେ, କାରଣ ସେ ମଣିଷ, ଦେବତା ନୁହେଁ । ମର୍ତ୍ତ୍ୟମଣ୍ଡଳେ ଦେବତା ବି ଯଦି ଦେହ ବହି ଜନ୍ମିଲେ ସେ ମରୁ ନ ମରୁ ଭୁଲ ନିଶ୍ଚୟ କରିବ । ଏଇ ଦେବତାମାନଙ୍କ କଥା ପ୍ରଥମେ ଶୁଣନ୍ତୁ ।

ଦେବାଦିଦେବ ମହାଦେବଙ୍କ ବର ଠିକ୍ କାମ କରୁଛି କି ନାହିଁ ପରୀକ୍ଷା କରିବା ପାଇଁ ଭସ୍ମାସୁର ଯିମିତି ବରଦାତାଙ୍କ ମୁଣ୍ଡକୁ ହାତ ବଢ଼ାଇଛି ଶିବ ତଦଣ୍ଡେ କହି ନ ଥିବେ 'ଆପଣା ହସ୍ତେ ଜିହ୍ୱା ଛେଦି ?' କଥାରେ, ଅଛି ଆପଣା ଆଇତ ପରକୁ ଦେଇ ଶିବଂ ପଳେଇଲେ ଲଙ୍ଗଳା ହୋଇ । ଶିବଙ୍କ ପରି ବ୍ରହ୍ମା ମଧ୍ୟ କମ୍ ହଟହଟାରେ ପଡ଼ିଥିଲେ ? ତାଙ୍କରି ବରରେ ଅପରାଜେୟ ହୋଇ ତାରକାସୁର ଦେବତାଙ୍କ ଉପରେ ଯେମିତି ଅତ୍ୟାଚାର କରିଛି ସେମାନେ ପରାଭବର ପ୍ରତିକାର ଲୋଡ଼ନ୍ତେ ସ୍ରଷ୍ଟା କ'ଣ କହିଲେ ? ମୁଁ ଅନନ୍ୟୋପାୟ ! ବିଷବୃକ୍ଷ ଲଗାଇଛି କାଟି ପାରିବି ନାହିଁ । ପାର୍ବତୀଙ୍କ ତପସ୍ୟା, ମଦନ ଭସ୍ମ, ରତି ବିଳାପରୁ କୁମାର ସମ୍ଭବ ମହାକାବ୍ୟର ସୃଷ୍ଟି ।

ଦେବତାଙ୍କ ରାଜ୍ୟରୁ ପୃଥିବୀକୁ ଆସନ୍ତୁ । ସତ୍ୟସନ୍ଧ ଦଶରଥ ମହାରାଜ ଏକ ଦୁର୍ବଳ ମୁହୂର୍ତ୍ତରେ ଜିଭ କାଟି କୈକେୟୀଙ୍କି ଯେଉଁ ଦୁଇଟି ବର ଦେଇଥିଲେ ସେଥିରୁ ନିଜର ଅକାଳ ମୃତ୍ୟୁ, ରାମଙ୍କ ବନବାସ, ସୀତାହରଣ ଓ ରାବଣ ମରଣ ଅର୍ଥାତ୍ ସାତକାଣ୍ଡ ରାମାୟଣ । ଧର୍ମରାଜ ଯୁଧିଷ୍ଠିର ଜୁଆରେ ମାଟି ରାଜ୍ୟ ଓ ଦ୍ରୌପଦୀଙ୍କି ପଣ ରଖିବା ଫଳରେ ଏବଂ ଦୁର୍ଯ୍ୟୋଧନ ବିନା ଯୁଦ୍ଧେ ସୂଚ୍ୟଗ୍ର ପରିମାଣ ମେଦିନୀ ନଦେବାର ଯେଉଁ ପଣ ତାରି ଫଳରେ ଅଷ୍ଟାଦଶ ପର୍ବ ମହାଭାରତ । ଭାବିତେ ଉଚିତ ଛିଲ ପ୍ରତିଜ୍ଞା ଯଖନ୍ । ଜିହ୍ୱାର ଲାଳସାକୁ ଆଦି ମାନବ ଜ୍ଞାନ ଫଳ ଭୁଞ୍ଜି ଦୁନିଆକୁ ତଥା ନିଜ ଉପରକୁ କେଡ଼େ ବିପଦ ଟାଣି ଆଣିଲେ ! ଡକ୍ଟର ଫଷ୍ଟାସ୍ ଜ୍ଞାନ ସୌନ୍ଦର୍ଯ୍ୟ ଓ ପରିଭ୍ରମଣ ପିପାସାରେ ସଇତାନକୁ ନିଜ ଆତ୍ମା ସମର୍ପଣ କରିବା ପାଇଁ ନିଜ ହାତ କାଟି ରକ୍ତରେ ଦଲିଲ ଲେଖିଦେଲେ । କି କରୁଣ ଶୋକାବହ ପରିଣତି ତାଙ୍କ ଗୌରବୋଜ୍ଜ୍ୱଳ ଜୀବନର । ବିଶ୍ୱ ସାହିତ୍ୟରେ ଯେତେଯେତେ ମହାନ୍-ଟ୍ରେଜିକ୍ ଚରିତ୍ର-କିଙ୍ଗ୍‌ଲିଅର, ଅଥେଲୋ, ମାକ୍‌ବେଥ୍, ହେମଲେଟ୍-ସମସ୍ତେ ଆପଣା ହସ୍ତରେ ଜିହ୍ୱା ଛେଦିଛନ୍ତି, ଅନୁତପ୍ତ ହୋଇ ଅବଶେଷରେ ମୃତ୍ୟୁବରଣ କରିଛନ୍ତି । ଆହୁରି ଦୁଃଖର କଥା ତାଙ୍କ ସହିତ ଆତ୍ମୀୟ ସ୍ୱଜନ ମଧ୍ୟ ବିନା ଦୋଷରେ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଇତିହାସର ଅନେକ ଉଦାହରଣରୁ ଗୋଟିଏ ସ୍ମରଣୀୟ ଉପାଖ୍ୟାନ ହେଲା ଜୟଚନ୍ଦ୍ର ନିଜ ଜାତି ଭାଇ ପୃଥ୍ୱୀରାଜଙ୍କ ବିରୋଧରେ ମହମ୍ମଦ ଘୋରୀଙ୍କି ଭାରତ ଆକ୍ରମଣ ପାଇଁ ଆହ୍ୱାନ କଲେ ଯାହା ଫଳରେ ରାଜପୁତ୍ ଶକ୍ତିର ଚିର ଅବସାନ ହେଲା ଏ ଭାରତ ଭୂମିରେ ।

ଏ ସବୁ ପୁରାଣ ଇତିହାସର ବଡ଼ ବଡ଼ କଥାରୁ ଫେରି ଆସନ୍ତୁ ଆମ କିଆ ପୋଖରୀ ହୁଡ଼ାର ସାନ୍ଧ୍ୟ ମଜଲିସ୍‌କୁ । ବଣ ଜଙ୍ଗଲ ମୁଲକର କଇଁଆଁ ମାଝୀ ଆମ ଗାଁକୁ ଆସିଥିଲା ତେଲଲୁଣ ନେବାକୁ । ଫେରିବା ବାଟରେ ମଜଲିସରେ ଦଣ୍ଡେ ଯୋଗ ଦେଇ କହିଲା "ତୁମ୍ଭେମାନେ ଠିକ୍ କଥା କହୁଛ । ଭୋଟ ଆଗରୁ ଆମର ଚଇତନ ବାବୁ ହାତୀ ଦବ ଘୋଡ଼ା ଦବ ବୋଲି କହୁଥିଲା । ଯିମିତି ଆମର ପେଁକାଳି ବାଜିଛି ସିମିତି ସେ ସହରକେ ଗଲା, ସଭାକେ ଗେଲ, ଗେଲା ଯେ ଗେଲା । ମନ୍ତ୍ରୀ ହେଲା, ପାକ୍‌କା କର୍‌ଲା, ରହିଗେଲା ରହିଗେଲା

ସେଇ ସହର ବଜାରରେ । ଆଉ୍ ଫେରିଲା ନାହିଁ । ଗାଁକେ ଆମର କଥା କିଛି ବୁଝିଲା ନାହିଁ । ମୁଇଁ କହେଁ ନିଜର ଗୋଡ଼ର ଗୁଛିଟା କୁରାଢ଼ିରେ କାଟି ଦେଲେ ଆଉ୍ ମୁଁ ଠିଆହେବି କିମିତି ?'' ମିଶ୍ରେ ସାଙ୍ଗେ ସାଙ୍ଗେ ତା' କଥାରେ ଯୋଗ ଦେଇ ଖିଅ ଧରି କହି ଚାଲିଲେ ଅଯୋଗ୍ୟ ଲୋକଙ୍କୁ ବିଶ୍ୱାସ କରି ତାଙ୍କ ହାତକୁ ହତିଆର ଦେଇ ଆମେ ଭୁଲ କରୁଛୁ । ଆମେ ନିଜ ଜିଭ ନିଜେ କାଟୁଛୁ । ଲାଲ ମୋହନ ବେଙ୍କ୍ରୁ ଟଙ୍କା ଆଣିଲା କୁକୁଡ଼ା ଛେଳି ପାଳିବ ବୋଲି ସନା ଆଣିଲା ପୋଖରୀ ଖୋଳିବ ବୋଲି; ଦି' ଜଣ ମିଶି କରାମ୍ ନାଚ କଲେ ମଦ ହାଣ୍ଡିଆ ପିଇ କରଜ ଟଙ୍କା ଉଡ଼େଇ ଦେଲେ । ଆମ ତଳ ସାଇର ଛକୁର ପୁଅ ଝିଅ ମିଶି ତିନି ଥିଲେ, ମନ ମାନିଲା ନାହିଁ ସେତିକିରେ, ଆଠ ପହୁଞ୍ଚେଇ ଦେଲାଣି । ଏମିତି ପ୍ରତି ମୁହୂର୍ତ୍ତରେ ଆମେ ଜିଭ କାଟି ଚାଲିଛୁ, ତଣ୍ଟି କାଟି ଚାଲିଛୁ ଆମେ ସମସ୍ତେ । ପାଖରେ ସ୍କୁଲ, ଛୁଆଙ୍କୁ ମୂର୍ଖ କରୁଛୁ; ପାଖରେ ଡାକ୍ତରଖାନା ବ୍ୟବସ୍ଥା ପତ୍ର ନିଦାନ ନ ଆଣି ଗୁଣିଗାରେଡ଼ି କରୁଛୁ; ବଣଜଙ୍ଗଲ କାଟି ଚେରମୂଳ ବି ତାଡ଼ି ଦେଲୁଁ । ଜୀବଜନ୍ତୁ ଚଢ଼େଇ ମାରି ଖାଇଗଲୁଁ । ସାଇ ସାଇରେ ଝଗଡ଼ା କଳି ତକରାଳ, ମାରପିଟ୍ ଦଙ୍ଗା ହାଙ୍ଗାମ, ଦେଶ ଭାଗ ହେଲା । ହେବାରୁ ଫଳ ତ ଏବେ ବି ଭୋଗୁଛ । ଆହୁରି ଟକୁରା ଟୁକୁରା କରିବା ପାଇଁ ବିଦେଶୀ ଶତ୍ରୁ ଚାହିଁ ବସିଛନ୍ତି ଯେ । ପରସ୍ପର ସଦ୍‌ଭାବ ଆଉ୍ ସଂହତି ନଷ୍ଟ କରିବା ଜିହ୍ୱା ଛେଦିବା ନୁହେଁ ତଣ୍ଟି କାଟିବା ।

ମଜଲିସ୍‌ଟା ମଉଳିବାକୁ ଆରମ୍ଭ କରିଛି ମୁଁ ଘର ମୁହାଁ ହେଲି । ଭାବୁଥାଏଁ ସେଇ ପଦକର ତାତ୍ପର୍ଯ୍ୟ । ଛୋଟ ଛୋଟ ଭୁଲର କ୍ଷମା ଅଛି ପ୍ରାୟଶ୍ଚିତ୍ତ ଅଛି, ଛୋଟ ଛୋଟ କଥା ଘାଆ ଛଉ ଭଲ ହୋଇଯିବ । କିନ୍ତୁ ଜାଣିଶୁଣି ଯେଉଁ ଜିଭକୁ ନିଜ ହାତରେ ଛେଦିବୁଁ ତାକୁ ଆଉ ଯୋଡ଼ି ହବନି । ସେଥିପାଇଁ ମୁଁ ନିଜେ, ମୋ ପରିବାର, ମୋ ଜାତି, ମୋ ଦେଶ ଏପରିକି ସାରା ପୃଥିବୀ ଦୁଃଖ ଭୋଗ କରିବ । ଆଜି ଯେଉଁ ରାଷ୍ଟ୍ରନାୟକମାନଙ୍କ ହାତରେ ଗଣତାନ୍ତ୍ରିକ ବା ଅନ୍ୟ ପ୍ରକ୍ରିୟାରେ ଆମେ ଆନ୍ତର୍ଜାତିକ ଶକ୍ତି ଓ କ୍ଷମତା ଠୁଳ କରି ଅର୍ପଣ କରିଛୁ ସେମାନେ ପ୍ରକ୍ରିୟାକୁ ଯେବେ ଫ୍ରେଙ୍କିନ୍‌ଷ୍ଟାଇନ୍ ସାଜି ବିପରୀତମୁଖୀ କରନ୍ତି ଏବଂ ଏକ ପାଗଳ ମୁହୂର୍ତ୍ତରେ ଉପଯୋଗ କରି ହିରୋସିମାର ପୁନରାବୃତ୍ତି ଘଟାନ୍ତି ତେବେ ଜିଭଟିଏ ବି ପୃଥିବୀ ପୃଷ୍ଠରେ ନଥିବ ଛେଦିବା ପାଇଁ । ଏଣୁ ବେଳହୁଁ ସାଧୁ ସାବଧାନ । ଉପାୟ ଷିନ୍ତୟେତ୍ ପ୍ରାଜ୍ଞ ଅପାୟମପି ଚିନ୍ତୟେଦ୍ । ବୁଝି ବିଚାରି କାର୍ଯ୍ୟ କଲେ, ପ୍ରମାଦ ନପଡ଼ଇ ଭଳେ ।



# ଆଜ୍ଞା, ଟିକିଏ ଦୟାକରି..........

ସେଦିନ ସେକ୍ରେଟେରିଏଟର ଯେଉଁ ଟୋକା ଲିଫ୍‌ଟ୍‌ବାଲାଟି କିରାଣୀବାବୁଙ୍କୁ ଭିଡ଼ି ଓଟାରି ଲିଫ୍‌ଟରୁ ବାହାର କରି ଦେବା ଅପରାଧରେ ଜୋରିମାନାଦଣ୍ଡ ଭୋଗିଲା ତାକୁ ଆମେ ଦୋଷୀ ବୋଲି ଅବଶ୍ୟ କହିବୁଁ । ମାନସମ୍ମାନ, ଭଦ୍ରତା, ଶିଷ୍ଟାଚାର, ସୌଜନ୍ୟ ବା ଆଜ୍ଞା ଅବଧାନ ନେଇ ଦୁହିଁଙ୍କ ମଧ୍ୟରେ କଳି ଆରମ୍ଭ ହେଲା । କିରାଣୀବାବୁ ଲିଫ୍‌ଟ ଭିତରକୁ ପଶିଯାଇ ହାକିମାତି ଦେଖାଇ କହିଲେ, ''ଉଠା ଉପରତାଲାକୁ ।'' ଲିଫ୍‌ଟବାଲା ରାଗିଯାଇ ତୁରନ୍ତ ଜବାବ ଦେଲା, ''ଉଠାଅ ବୋଲି କହନ୍ତୁ ।'' କିରାଣୀବାବୁ 'ଉଠାଅ' ବୋଲି କହିବାକୁ ନାରାଜ ହେବାରୁ ଦୁହିଁଙ୍କ ମଧ୍ୟରେ କଡ଼ା ବାକ୍ୟ ବିନିମୟ ଆରମ୍ଭ ହେଲା ଓ ଶେଷରେ ତରୁଣ ବଳିଷ୍ଠ ଲିଫ୍‌ଟଚାଳକ କିରାଣୀବାବୁଙ୍କ ଆଦେଶ ଯେ କେବଳ ଅବଜ୍ଞା କଲା ତା' ନୁହେଁ ତାଙ୍କୁ ବଳପ୍ରୟୋଗ କରି ପିଞ୍ଜରାରୁ ପଦାକୁ ଫୋପାଡ଼ି ଦେଲା । ସୌଜନ୍ୟ ଉପରେ ଅତି ବେଶୀ ଜୋର ଦିଆ ହେଲା ଏ କ୍ଷେତ୍ରରେ । ଶିଷ୍ଟାଚାରର ମଧ୍ୟ ଗୋଟାଏ ସୀମା ଅଛି । ଅତି ବେଶୀ ଭଦ୍ରାମି ଦେଖାଇବାକୁ ଯାଇ ଲୋକେ ହଟହଟାରେ ମଧ୍ୟ ପଡ଼ିଛନ୍ତି । ପଅରଦିନ ସନ୍ଧ୍ୟାରେ ମୋର ବନ୍ଧୁ ରାଜକିଶୋର ବାବୁ କେନାଲ କୂଳରେ ଭ୍ରମଣ କରୁଁକରୁଁ ଦେଖିଲେ ବିପରୀତ ଦିଗରୁ ତାଙ୍କ ବନ୍ଧୁ ଜନୈକା କଲେଜଛାତ୍ରୀଙ୍କ ସହିତ ଅସଂଯତ ଅବସ୍ଥାରେ ଆସୁଛନ୍ତି । ଦୁହିଁଙ୍କୁ ରାସ୍ତା ଛାଡ଼ି ଦେବାପାଇଁ ଏବଂ ସେମାନଙ୍କୁ ସେ ଦେଖି ନାହାନ୍ତି ଏହି ଧାରଣା ଦେବାପାଇଁ ସେ କେନାଲର ଏତେ କଡ଼କୁ ଚାଲିଗଲେ ଯେ ଟୁପ୍ କରି ପାଣିରେ ବୁଡ଼ିଗଲେ । ତାଙ୍କ ହାତର ଖବରକାଗଜଟି ଭାସି ଯାଉଥିବାର ଦେଖିଲାରୁ ତାଙ୍କର ଚେତା ଫେରିଲା ଓ ଜାଣିଲେ ସେ କେଉଁଠି । ଅତି ଭକ୍ତି ପରି ଏହା ଅତି ଭଦ୍ରାମିର ଦୃଷ୍ଟାନ୍ତ ।

ଅସୌଜନ୍ୟପାଇଁ ପ୍ରତିକାର ଆଇନ୍‌ରେ, ନାହିଁ । କେହି ଯେବେ ଦାଣ୍ଡଘାଟରେ ଆମକୁ ନମସ୍କାର ନ କଲା ଆମେ କ'ଣ ଅଶିଷ୍ଟାଚାରିତାପାଇଁ ତାକୁ ବାଡ଼େଇବୁଁ ? ଖିଡ଼ିକିକି ଭାଙ୍ଗି ଘରେ ପଶିଥିବା ଚୋରକୁ ହୁଏତ ଆମେ ବାଡ଼େଇ ପାରୁ; ଆଇନ୍ ଆମକୁ ଛାଡ଼ିଦେବ । ମୋତେ ଯେବେ କେହି ମାଡ଼ ମାରିଲା ତେବେ ପ୍ରତିଶୋଧରେ ମୁଁ ଯଦି ଅନୁରୂପ ନା ନ୍ୟାର୍ଯ୍ୟ ପ୍ରତିହିଂସା ଆଚରଣ କରେ, ତେବେ ହୁଏତ ମୋତେ ଆଇନ୍ ରକ୍ଷା କରିବ । କାରଣ ଏ ଉଭୟ କ୍ଷେତ୍ରରେ ଚୋର ଓ ଆକ୍ରମଣକାରୀ ଦୁହେଁ ଆଇନ୍ ନିର୍ଦ୍ଦିଷ୍ଟ ବାଧା ନିଷେଧର ଅବଜ୍ଞା କରିଛନ୍ତି, ଲଙ୍ଘନ କରିଛନ୍ତି, ମାତ୍ର ଭଦ୍ରତା ଶିକ୍ଷା ଦେବା ପାଇଁ ଦୁନିଆଁରେ କେଉଁଠି ଆଇନ୍ ପ୍ରଣୟନ ହୋଇନାହିଁ; ବା ଯାହା ଦଣ୍ଡନୀୟ ଅପରାଧ ବୋଲି ଆଇନ୍ କହେନାହିଁ ତା'ର ପ୍ରତିବଦଳରେ ହିଂସା ଆଚରଣ କୁତ୍ରାପି ସଭ୍ୟଦେଶରେ ଅନୁମୋଦିତ ହୋଇନାହିଁ । ଲିଫ୍‌ଟବାଲା

ପ୍ରତି ଆମର ଦୟା ସହାନୁଭୂତି ଥିଲେ ମଧ୍ୟ ଆଇନ୍ ଦୃଷ୍ଟିରେ ସେ ଯେ ଅପରାଧୀ ଏଥିରେ ତିଳେମାତ୍ର ଆମର ସନ୍ଦେହ ରହିବା ଉଚିତ୍ ନୁହେଁ । ବ୍ୟକ୍ତିବିଶେଷର ଚାଲିଚଳନ, ମୁଖଭଙ୍ଗୀ ବା ଗଳାସ୍ୱର ମୋ ମନକୁ ନ ପାଇଲା ବୋଲି କ'ଣ ମୁଁ ତା' କାନ ମୋଡ଼ି ଦେବି ବା ପିଠିରେ ବିଧାଏ ପକାଇବି ? ଯଦି ତା' କରି ପାରିବାର ସ୍ୱାଧୀନତା ସମସ୍ତଙ୍କର ଥାଆନ୍ତା ତେବେ ଆମର ହାତ ଦୁଇଟାରେ ମୋଟେ ବିଶ୍ରାମ ନ ଥାନ୍ତା, ନାଳ-ନର୍ଦ୍ଦମାରେ ଦିନରାତି ରକ୍ତର ସୁଅ ବୋହୁଥାନ୍ତା ।

ମୁଁ ପାରୁପର୍ଯ୍ୟନ୍ତ ଅଶିଷ୍ଟ, ଅଭଦ୍ର ହୋଇ ପାରେଁ, ସେଥିରେ ଯେବେ କେହି ହିଂସ୍ର ପ୍ରତିବାଦ ବା ପ୍ରତିରୋଧ କରେ ତେବେ ଆଇନ୍ ସବୁବେଳେ ମୋ ତରଫ ରହିଥିବ । ମୁଁ ଯେତେ ଉଦ୍ଧତ ଦୁର୍ବିନୀତ ହେଲେ ମଧ୍ୟ ଆଇନ୍ ଅଦାଲତ ମୋର କିଛି କରି ପାରିବ ନାହିଁ । ଅତିବେଶୀ ହେଲେ ଲୋକେ ମୋତେ ଅସଭ୍ୟ, ଅଶ୍ଳୀଳ, ମଫସଲି ବୋଲି ଗାଳିଗୁଲଜ୍ କରି ପାରନ୍ତି । ଆଇନ୍ ମୋତେ 'ଦୟାକରି ଆଜ୍ଞା' ଶବ୍ଦ ଲଗାଇ କାହାରିକୁ ଅନୁରୋଧ କରିବାକୁ କହେ ନାହିଁ । ଯିମିତି 'ଉଠ।' ନ କହି 'ଉଠ।ଅ' ବୋଲି ଶବ୍ଦ ପ୍ରୟୋଗ କରିବାକୁ କୌଣସି ଆଇନ୍ ବହିରେ ଲେଖା ହୋଇ ନାହିଁ । ଅନ୍ୟର ମନ, ମେଜାଜ୍ ସହିତ ମୁଁ ମୋ ମନ ବା ମେଜାଜ୍କୁ ମିଳାଇ ଚଳିବି ବୋଲି ମୋତେ କିଏ ବାଧ୍ୟ କରିବ ? ବା ମୁଁ ଯେବେ ନିଶ ମୋଡ଼େଁ, ଭୁରୁ କୁଞ୍ଚାଏଁ, ଚୂଳରେ ଲୋମା ଲଗାଏଁ ବା ଯାତ୍ରାକାଳିଙ୍କ ପରି ଚୂର୍ଣ୍ଣକୁନ୍ତଳ ଗଳା ଦେଶରେ ଲମ୍ବାଏଁ ତେବେ କ'ଣ ଆଇନ୍ ମୋତେ ମନା କରିବ ? ତା' ଛଡ଼ା ଅନ୍ୟର କଥା ବା ଅଙ୍ଗଭଙ୍ଗୀ ବା ବ୍ୟବହାରରେ ମୋ ମନରେ କଷ୍ଟ ହେଲା ବୋଲି ନୈତିକ ବା ବୌଦ୍ଧିକ କ୍ଷତିପୂରଣ ବ୍ୟବସ୍ଥା ଆଇନ୍ କରି ନାହିଁ । .

ତା' ବୋଲି କ'ଣ କ୍ଷତିର ପରିମାଣ ସାମାନ୍ୟ, ନଗଣ୍ୟ ? ଲିଫ୍ଟବାଲା ହୁଅଇ ଚତୁର୍ଥପାହିଆ କର୍ମଚାରୀସଂଘର ସଭାପତି । କିରାଣୀବାବୁ ତା' ପ୍ରତି ଉଚିତ ସମ୍ମାନ ନ ଦେଖାଇ ତାଚ୍ଛଲ୍ୟଭାବ ଦେଖାଇବାରେ ସଂଘ ପ୍ରତି ଏବଂ ସମାଜରେ ତା'ର ନ୍ୟାର୍ଯ୍ୟ ଆସନ – ମର୍ଯ୍ୟାଦାରେ ଆଞ୍ଚ ଆଣିଛନ୍ତି । ଲିଫ୍ଟଚାଳକର ଜୀବନକୁ ହୁଏତ ଖୁବ୍ ବାଧିଥିବ, ବିଧାଗୋଇଠା ଖାଇଥିଲେ ହୁଏତ ତାକୁ ଏତେ ବାଧି ନଥାନ୍ତା । କାରଣ ଆଇନ ଅଦାଲତରେ ତହିଁର ପ୍ରତିକାର ସେ ଲୋଡ଼ି ପାରିଥାନ୍ତା । ଆଜି ହେଉ ବା କାଲି ସେଇ ବିଧାଗୋଇଠାର ଯନ୍ତ୍ରଣା ଚାଲିଯାଇଥାନ୍ତା; କିନ୍ତୁ ବ୍ୟକ୍ତିବିଶେଷର ଆତ୍ମସମ୍ମାନ ଉପରେ ଯେଉଁ ଆଘାତ ତହିଁର ଯନ୍ତ୍ରଣା ବହୁ ସମୟ ଧରି ରହେ ଏବଂ ଜୀବନର ପ୍ରତ୍ୟେକଟି କାର୍ଯ୍ୟ ଓ ମୁହୂର୍ତ୍ତକୁ ବିଷମୟ କରିଦିଏ । ଯେବେ ରଘୁନାଥ (ଲିଫ୍ଟବାଲାର ନାମ) କିରାଣୀ (ନାମ କହିବି ନାହିଁ, ତାଙ୍କ ସମ୍ମାନରେ ଆଞ୍ଚ ଆସିବ) ବାବୁଙ୍କୁ ଲିଫ୍ଟରୁ ଫୋପାଡ଼ି ଦେଇ ନ ଥା'ନ୍ତା ତେବେ ଦିନଯାକ ସେ ସେହି ଅପମାନକଥା ଭାବିଥାନ୍ତା ଓ ମନର ଶାନ୍ତି ଫେରି ପାଇବାଲାଗି ଘରେ ପହୁଞ୍ଚି ହୁଏତ ନିଜ ସ୍ତ୍ରୀକୁ ଆକ୍ରମଣ କରିଥାନ୍ତା –

''ଶାଶୁ ମାରୁଥାଏ ବୋହୂକୁ
ବୋହୂ ଛାର ହୋଇ ମାରିବ କାହାକୁ
ମାରୁଥାଏ ଚୁଲିମୁହଁକୁ'' ।

ଅଶିଷ୍ଟାଚାରଜନିତ କ୍ଷୁବ୍ଧ ମନ ବା କ୍ଷୁଣ୍ଣ ମେଜାଜ୍ ପରି ସଂକ୍ରାମକ ବ୍ୟାଧି ଆଉ ନାହିଁ । ବାପ ପୁଅକୁ ଗାଳିଗୁଲଜ କଲେ ପୁଅ ପୂଜାରୀ ଉପରେ ବିଗିଡ଼େ, ପୂଜାରୀ ଚାକରକୁ ଗାଳିଦିଏ । କିରାଣୀବାବୁ ଲିଫ୍ଟବାଲା ପ୍ରତି ତାଚ୍ଛଲ୍ୟ ଦେଖାଇବାର କାରଣ ହୋଇପାରେ ଯେ ସେ ମନେ ମନେ ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଚିଡୁଥିଲେ, କାରଣ ସେ ତାଙ୍କୁ ନମସ୍କାର ଫେରାଇ ଦେଇ ନଥିଲେ । ସୁପରିଣ୍ଟେଣ୍ଡେଣ୍ଟ ହୁଏତ ସେକ୍ରେଟେରୀଙ୍କୁ ଅସୌଜନ୍ୟପାଇଁ ଚିଡ଼ିଥିଲେ । ତେଣୁ କିରାଣୀବାବୁଙ୍କୁ ଯଥୋଚିତ ଶିଷ୍ଟାଚାର ଦେଖାଇ ପାରିଲେ ନାହିଁ । ସେକ୍ରେଟେରୀ ମଧ ଅନୁରୂପ ତ୍ରୁଟି କଲେ କାରଣ ତାଙ୍କ ସ୍ତ୍ରୀ ତାଙ୍କୁ ଖାଇ ବସିଲାବେଳେ ହତାଦର କରିଥିଲେ । ସ୍ତ୍ରୀ ମଧ ସ୍ୱାମୀଙ୍କ ପ୍ରତି ଶରଧାରେ ତ୍ରୁଟି କଲେ କାରଣ ଚାକରାଣୀ ସକାଳେ ମୁହଁ ହାଣ୍ଡି କରି ତାଙ୍କ ସହିତ ଜବାବସୁଆଲ କରିଥିଲା । ଅଶିଷ୍ଟାଚାର ଏମିତି ଗୋଟାଏ ପାପଚକ୍ର ସୃଷ୍ଟି କରେ ଯାହା ଜୀବନର ଦୈନନ୍ଦିନ ସୁଖଶାନ୍ତିକୁ ଟୁକୁରା ଟୁକୁରା ଖଣ୍ଡି କରିଦିଏ । ସ୍ତ୍ରୀଙ୍କଠାରୁ ଗାଳିମନ୍ଦ ଶୁଣି ସ୍ୱାମୀ ଏମିତି ଅଭଦ୍ରାମି ଦେଖାନ୍ତି ଯାହା ଫଳରେ ଶହ ଶହ ସ୍ତ୍ରୀ ସେମାନଙ୍କ ସ୍ୱାମୀଙ୍କ ଦ୍ୱାରା ନିପୀଡ଼ିତ ନିର୍ଯାତିତ ହୋଇଥାନ୍ତି । ତା ସତ୍ତ୍ୱେ ଆମର ବ୍ୟକ୍ତିଗତ ଆଚାରବ୍ୟବହାରରେ ଘରୋଇ ବ୍ୟାପାରରେ ଆଇନ୍ ହସ୍ତକ୍ଷେପ କରେ ନାହିଁ ବା ସେଥିରେ ରକ୍ଷକ ହୁଏ ନାହିଁ । ଏମିତି ଦେଶାନୁଶାସନ ନାହିଁ ଯାହା ଆମର କଥାବାର୍ତ୍ତା, ଆଖିଭଙ୍ଗୀ ବା ମେଜାଜ୍‌କୁ ନିୟନ୍ତ୍ରଣ କରିବ ।

ଲିଫ୍ଟବାଲା ପ୍ରତି ଯେଉଁ ଦଣ୍ଡ ହେଲା ତାହା ଆମେ ଅନୁମୋଦନ କଲେ ମଧ ତା' ପ୍ରତି ଆମର ସହାନୁଭୂତି ସ୍ୱତଃସ୍ଫୂର୍ତ୍ତ । ଶିଷ୍ଟାଚାର ଶିଷ୍ଟବାକ୍ୟର ପ୍ରୟୋଗ ପାଇଁ ଆଇନ୍ ଆମକୁ ବାଧ ନ କଲେ ମଧ ଆଇନ୍ ଠାରୁ ବଳି ପ୍ରାଚୀନ ଓ ପବିତ୍ର ଆମ ସମାଜର ଚଳଣି ଆମକୁ ବରାବର ଶିଷ୍ଟାଚାରର ଇଙ୍ଗିତ ବା ନିର୍ଦ୍ଦେଶ ଦେଇଥାଏ । ଭଦ୍ରତାର ପ୍ରଥମ ସୋପାନ ବା ମୂଳଦୁଆ ହେଲା ଉପକାରୀର ଉପକାର ସ୍ୱୀକାର କରିବା, କୃତଜ୍ଞତା ପ୍ରକାଶ କରିବା । ''ଆଜ୍ଞା'', ''ଦୟାକରି'', 'ଧନ୍ୟବାଦ', 'ଦୁଃଖୀ ହେଲି'ପ୍ରଭୃତି ଶିଷ୍ଟାଚାରସୂଚକ ଶବ୍ଦ ବଳି ଆମ ଦୈନନ୍ଦିନ ଜୀବନର ପଇସି ଦୋପଇସି, ସେ. ଛୋଟ ଛୋଟ ମୁଦ୍ରା ଦ୍ୱାରା ସାମାଜିକ ବେପାରବଣିକ ସମ୍ଭବ ହୁଏ । ବିନିମୟ ସହଜ ହେବାରୁ ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ ପ୍ରତିଷ୍ଠା ହୁଏ । ବଡ଼ ସାନକୁ ହୁକୁମ କରିବାର ମନୋଭାବ ଛାଡ଼ି ଦିଆନିଆ ନୀତି ଗ୍ରହଣକରେ । ହୁକୁମ୍ କରି ଆଦେଶ ଦେଇ ଯେଉଁ ବ୍ୟକ୍ତି କାମ ଉଠାଇବାକୁ ଚାହାନ୍ତି ସେ ଅଶିଷ୍ଟ, ଅମାର୍ଜିତ ଓ ଅଶ୍ଳୀଳ । ବିଦ୍ୱେଷ ବା ବିରକ୍ତି ନ ରଖି ସଦ୍ଭାବର ସହିତ ଯଦି ଅନୁରୋଧ ପାଳନ କରାଯାଏ ତାହାକୁ ସେବା ବୋଲି ବିବେଚନା କରାଯାଏ ।

ଏପ୍ରସଙ୍ଗରେ ମୁଁ ମୋର ବନ୍ଧୁ ଜନୈକ ସୁଶୀଳ କଣ୍ଡାକ୍ଟରଙ୍କ କଥା ଉଲ୍ଲେଖ କରୁଛି । ତାଙ୍କୁ 'ସୁଶୀଳ' 'ବନ୍ଧୁ' ବୋଲି କହିବାଦ୍ୱାରା ମୁଁ ଅନ୍ୟ କଣ୍ଡାକ୍ଟରମାନଙ୍କୁ 'ଶତ୍ରୁ' ସ୍ଥାନରେ ରଖୁନାହିଁ ବା ଦୁର୍ବିନୀତି ବୋଲି ଇଙ୍ଗିତ ଦେଉ ନାହିଁ । ପରନ୍ତୁ ଆମର ଏଇ ଧାରଣା ଯେ ଦୁନିଆଁରେ ଯେତେ ଯେତେ ଚାକିରି ଅଛି ସେ ଭିତରେ ଏ ଚାକିରିଟି ସବୁଠୁଁ ବେଶୀ ଶକ୍ତି, ଟାଣୁଆ ଓ ବିରକ୍ତିକର । କେଉଁଠି କେମିତି ଗୋଟାଏ ଅଧେ ଘୋଡ଼ାମୁହାଁ କୁଳାଙ୍ଗାରକୁ ଆମେ ଭେଟାଉଥାଉଁ ଯେଉଁମାନେ ଯାତ୍ରୀଙ୍କୁ ସ୍ୱାଭାବିକ ଶତ୍ରୁ ବୋଲି ଧରିନେଇ ଭାବନ୍ତି ଯେ ଯାତ୍ରୀ

ଗୁଡ଼ାକ ସବୁ ଧୂର୍ତ୍ତ ଓ ଶଠ, ତାକୁ ଠକାଇବା ସେମାନଙ୍କ ମତଲବ୍ । ତେଣୁ କେବଳ ତର୍ଜନ ଗର୍ଜନ କରି ହାକିମାତିଦେଖାଇ ସେମାନଙ୍କୁ ଚରିତ୍ରବନ୍ତ କରାଯାଇ ପାରେ ବା ଜବଦ୍ କରାଯାଇ ପାରେ ବୋଲି ଏ ସବୁ ଗୋଠଛଡ଼ାଙ୍କ ଧାରଣା । ସୁଖର କଥା ଏ ଶ୍ରେଣୀର କଣ୍ଡାକ୍ଟରଙ୍କ ସଂଖ୍ୟା କମିଯାଉଛି । ସେଥିପାଇଁ ଟ୍ରାନ୍‌ସପୋର୍ଟ ଡିପାର୍ଟମେଣ୍ଟ ଓ ରେଳବାଇଙ୍କୁ ଧନ୍ୟବାଦ ଦେବାର କଥା କାରଣ ଯାତ୍ରୀଙ୍କ ପ୍ରତି ସୌଜନ୍ୟପୂର୍ଣ୍ଣ ଆଚରଣ ଚାକିରିର ଏକ ବିଶେଷ ସର୍ତ୍ତ ବୋଲି ଧରାଯାଇଛି । ବସ୍ ଓ ରେଳଯାତ୍ରା ତେଣୁ ପୂର୍ବାପେକ୍ଷା ସୁଖମୟ ହୋଇଛି ଏବଂ ଅତ୍ୟାବଶ୍ୟକ ସମାଜସେବା ମଧ୍ୟ ତଦ୍ଵାରା ହୋଇ ପାରୁଛି ।

ତେଣୁ କଣ୍ଡାକ୍ଟରଗୋଷ୍ଠୀ ପ୍ରତି ତିଳେ ମାତ୍ର ଅସୂୟା ବା ଘୃଣା ନ ରଖି ମୁଁ ମୋ ବନ୍ଧୁଙ୍କ ଗୁଣ ଗାଉଛି । ମୁଁ ବନ୍ଧୁଙ୍କୁ ଚିହ୍ନିଲି ସେଇଦିନ ଯେବେ କୁଞ୍ଜିଅ ଦୋକାନ ଆଗରେ ତରବରରେ କୁଦିପଡ଼ି ଚଳନ୍ତି ବାସ୍‌ରେ ଚଢ଼ିଗଲି । ଷ୍ଟେସନ ମୋଡ଼ ପହୁଞ୍ଚିଲାବେଳକୁ ପକେଟ ଅଣ୍ଡାଳି ଦେଖିଲି ଯେ ମନି ବେଗ୍‌ଟି ହୋଟେଲରେ ଛାଡ଼ି ଆସିଛି । ଏ ଆବିଷ୍କାର ଫଳରେ ମନରେ ଯେଉଁ ମିଶ୍ର ଭାବ ସବୁ ଉଦିତ ହୁଏ ତାହା ପ୍ରତି ଅଭିଜ୍ଞ ବ୍ୟକ୍ତିଙ୍କୁ ଜଣା । ଚେହେରା ଖୁବ୍ ଭଲ କରିପାରିଲେ ଆମେ ଦିଶୁ ବୋଡ଼ାଙ୍କ ପରି, ନ ହେଲେ ଜଣାପଡୁ ଯିମିତି ଏକ ବୁଢ଼ା ଠକ ବା ପାଜି । କଣ୍ଡାକ୍ଟର ଯଦି ଏତିକିବେଳେ ଦେଖିଦେଲା ସେ ମନେ ମନେ କହିବ, "ହଁ ହଁ, ଚାଲାକି ରଖ, ଭଦ୍ର ପରି ଦିଶୁଛ ସିନା ତୁମ ମୁହଁରୁ ସବୁ ବୁଝିଲିଣି, ଓହ୍ଲାଅ ଏଥର ଦୟା କରି !" ଯଦି ବା କଣ୍ଡାକ୍ଟର ଭଲ ଲୋକ ହୋଇଥିବ ତେବେ ହୁଏତ ସହଜରେ ଛାଡ଼ିଦେବ, କିନ୍ତୁ ପୁଣି ହୋଟେଲକୁ ଫେର, ବେଗ୍ ଆଣ,ପଛ ବାସ୍‌କୁ ଧର, ସଭାସମିତି ଗଲା, କ୍ଲାସ ଗଲା, ସାକ୍ଷାତ କରି ନ ପାରି ମିଳିବା ଚାକିରି ବି ଗଲା । କାଳେ କେଉଁଠି ପକେଟରେ ଖୁଚୁରା ରହିଯାଇଥିବ ବୋଲି ପକେଟ୍ ଅଣ୍ଡାଳି ଦେଖିଲି ଶୁଖିଲା ପାନଖିଲ, ଭଙ୍ଗା ଗୁଆ ଓ ଲବଙ୍ଗ ଛଡ଼ା ଆଉ କିଛି ନାହିଁ । ଭଦ୍ରଲୋକ ପରି କଣ୍ଡାକ୍ଟର ପାଖକୁ ଚାଲିଯାଇ କହିଲି, "କଣ୍ଡାକ୍ଟର ବାବୁ ମୋ ପାଖରେ ଭଡ଼ା ପଇସା ନାହିଁ, ମନିବେଗ୍ ହୋଟେଲରେ ରହିଗଲା, ମୁଁ ଓହ୍ଲାଇଯିବି ଲେଭେଲ୍ କ୍ରସିଂ ପାଖରେ । ପଟା ପଟ ବନ୍ଧୁ ମୋର ଜବାବ୍ ଦେଲେ, 'ପରବା ଲେଦୁ, ଆପଣଙ୍କୁ ଓହ୍ଲାଇବାକୁ ପଡ଼ିବ ନାହିଁ, କେଉଁଠାକୁ ଯିବେ ।'ଏତେ କହି ପେନ୍‌ସିଲି ଧରି ଟିକଟ ଲେଖିବାକୁ ଆରମ୍ଭ କଲେ ଯେପରି କି ବାଣୀବିହାର କାହିଁକି ବରହମପୁର, ବମ୍ବେ ବା ବାଗଦାଦ୍ ପର୍ଯ୍ୟନ୍ତ ଟିକଟ ଦେବାକୁ ପ୍ରସ୍ତୁତ । ଟିକଟ.ମୋ ହାତକୁ ବଢ଼ାଇ ଦେଇ ଚାଲି ଯାଉ ଯାଉ ମୁଁ କୃତଜ୍ଞତାପୂର୍ଣ୍ଣ ଗଳାରେ ପଚାରିଲି, "ପଇସା କିମିତି କେଉଁ ଠିକଣାରେ ପଠାଇବି ?" ଅଳ୍ପ ହସି ବନ୍ଧୁ କହିଲେ, "ଛାଡ଼ନ୍ତୁ ସେ କଥା । ଯେବେ ହେଲେ ତ ଦିନେ ଦେଖା ହବ, ଏତେ ବ୍ୟସ୍ତ କାହିଁକି ?"ଅନ୍ୟ ଯାତ୍ରୀଙ୍କ ପାଖକୁ ସେ ଚାଲିଗଲେ । ଦୈବକୁ ସେତିକିବେଳେ ମୋର ଆଖି ପଡ଼ିଲା ଛାତି ପକେଟର ଅନ୍ତର୍ଦ୍ଦେଶୀୟ ପତ୍ରଟିର ଭିତରମୋଡ଼ରେ ଲୁଚି ରହିଥିବା ପାଞ୍ଚଟଙ୍କିଆ ନୋଟ ଉପରେ । ସଙ୍ଗେ ସଙ୍ଗେ ମୁଁ ଭଡ଼ା ପଇସା ଦେଇଦେଲି ସତ, ମାତ୍ର ବନ୍ଧୁଙ୍କର ମଧୁର ବ୍ୟବହାର ମୋ ମନରେ ଯେଉଁ ଆନନ୍ଦ ଦେଇଥିଲା ତା'ର ମାତ୍ରା ଆଦୌ କମିଲା ନାହିଁ ।

ଆଉ କେତେଦିନ ପରେ ସେଇ ବାସ୍‌ରେ ବସି ଖବରକାଗଜ ଉପରେ ଆଖି ପକାଉଥାଏଁ ମୋ ଡାହାଣ ଗୋଡ଼ର ଦରଜିଆ ବୁଢ଼ା ଆଙ୍ଗୁଠିଟାକୁ କିଏ ଜୋର୍‌ରେ ମାଡ଼ିଦେଲା । ଯନ୍ତ୍ରଣା ଓ କ୍ରୋଧରେ ଅଧୀର ହୋଇ ଦୁର୍ବୃତ୍ତ ଅପରାଧୀ ଜଣକ କିଏ ବୋଲି ଚାହିଁ ଦେଖିଲି ସେଇ ପୁରୁଣା ବନ୍ଧୁଙ୍କୁ । ମୁଖରେ ସ୍ମିତ ଓ ନୟନରେ କ୍ଷମାପ୍ରାର୍ଥନା ରଖି ବନ୍ଧୁ ତତ୍‌କ୍ଷଣାତ୍ ବିନମ୍ର ସ୍ୱରରେ କହିଲେ, ''କ୍ଷମା କରିବେ ଆଜ୍ଞା, ଦେଖିପାରି ନାହିଁ ଭିଡ଼ ଭିତରେ, ଭୁଲ ହୋଇ ଯାଇଛି, ଆପଣଙ୍କୁ ବହୁତ ଜୋର୍ ଲାଗିଥିବ, ଯୋତା ହଳକ ନାଲମର । ଆଗରୁ ଚପଲ ପିନ୍ଧୁଥିଲି, ପାସେଞ୍ଜରମାନେ ମୋ ଗୋଡ଼କୁ ବହୁତଥର ମାଡ଼ିମକଚି ଦେଲାରୁ ଏ ଚଢ଼ଉ ହଳକ କିଣିଛି । ମାଫି ଦେବେ, ସାର୍ ।'' ପ୍ରକୃତରେ ମୋତେ ଭାରି କଷ୍ଟ ହେଉଥାଏ, ମାତ୍ର ବନ୍ଧୁଙ୍କ ଅନୁନୟ ବିନୟରେ ମୁଁ ଏତେ ମୁଗ୍ଧ ହେଲି ଯେ ଉତ୍ତରରେ କହିଲି,'' ନା, ନା, ମୋତେ ମୋଟେ କଷ୍ଟ ହୋଇନାହିଁ । ତୁମେ କ'ଣ ମୋ ଗୋଡ଼ରେ ମାଡ଼ିଛ ଯେ ଏତେ ବ୍ୟତିବ୍ୟସ୍ତ ହେଉଛ ?''

ଏ ଘଟଣା ପରେ ମୁଁ ଯେବେ ସେ ବାସ୍‌ରେ ଯାଏ ତେବେ ବନ୍ଧୁଙ୍କ ସୁମିଷ୍ଟ ପ୍ରକୃତି ଓ ବ୍ୟବହାର ଉପରେ ନଜର ଦେଇଥାଏ । ମୁଁ ଦେଖିଲି ତାଙ୍କର ଅସୀମ ଧୈର୍ଯ୍ୟ ଓ ସହନଶୀଳତା । ଯାତ୍ରୀମାନଙ୍କ ସୁଖସୁବିଧା ପାଇଁ ସେ ସଦା ବ୍ୟସ୍ତ, ବ୍ୟଗ୍ର । ଯେବେ କେଉଁଠି ଜାଗାଟିଏ ଖାଲି ପଡ଼ିଲା ତେବେ ଅସୁବିଧା ଅଡୁଆ ଅବସ୍ଥାରେ ଥିବା ଯାତ୍ରୀଙ୍କୁ ସେ କହନ୍ତି, ''ଆଜ୍ଞା, ଏଠାକୁ ଆସନ୍ତୁ ।'' ବୁଢ଼ାଙ୍କ ପାଖରେ ସେ ପୁଅପରି, ପିଲାଙ୍କ ଆଗରେ ସେ ବାପପରି । କଲେଜ ପିଲାଙ୍କପ୍ରତି ତାଙ୍କ ହୃଦୟ ସ୍ନେହଭରା । କାମରେ ଭିଡ଼ ନ ଥିଲେ ସେ ସେମାନଙ୍କ କଥାବାର୍ତ୍ତା ଥଟ୍ଟାତାମସାରେ ମଧ୍ୟ ଯୋଗ ଦିଅନ୍ତି, କଲେଜପିଲେ ମଧ୍ୟ ତାଙ୍କପ୍ରତି ତାଚ୍ଛଲ୍ୟ ଦେଖାନ୍ତି ନାହିଁ । ଅନ୍ଧ, ଅବଶ, ବିକଳାଙ୍ଗ ଯାତ୍ରୀଙ୍କୁ ଯେଉଁଠି ସେଇଠି ନିରାଶ୍ରୟ ଅବସ୍ଥାରେ ଓହ୍ଲାଇ ନ ଦେଇ,ଦରକାର ପଡ଼ିଲେ ଗାଡ଼ି ଛିଡ଼ା କରାଇ, ରାସ୍ତାମୋଡ଼ ପାରକରି ନିରାପଦ ସ୍ଥାନରେ ସେମାନଙ୍କୁ ପହଞ୍ଚାଇ ଦିଅନ୍ତି । ମୋଟାମୋଟି କହିଲେ ବନ୍ଧୁଙ୍କ ବସ୍‌ଟିରେ ସଦ୍ଭାବ, ସମ୍ପ୍ରୀତିର ଏମିତି ଗୋଟାଏ ବାୟୁମଣ୍ଡଳ ସୃଷ୍ଟି ହୁଏ ଯେ ତାଙ୍କ ଗାଡ଼ିରେ ଯିବା ଅର୍ଥ ଶିଷ୍ଟତା ଭଦ୍ରାମି ସମ୍ପର୍କରେ ଗୋଟାଏ ସ୍ୱାଭାବିକ ନୀତିଶିକ୍ଷାର ପ୍ରାକ୍ଟିକେଲ୍ କ୍ଲାସରେ ଯୋଗଦେବା ।

ଯିମିତି ସହଜ ସରଳ ଉପାୟରେ ଅନାୟାସରେ ବନ୍ଧୁ କର୍ତ୍ତବ୍ୟ ତୁଲାନ୍ତି ତାହା ଲକ୍ଷ୍ୟ କରିବାର କଥା । ଅଶିଷ୍ଟାଚାରପରି ଶିଷ୍ଟାଚାର ମଧ୍ୟ ସଂକ୍ରାମକ। ଅସଭ୍ୟ ଅଶ୍ଳୀଳଙ୍କ ସଂଘର୍ଷରେ ଆସି ଆମେ ଅଭଦ୍ର ହେଉଁ, ମାତ୍ର ଯେଉଁ ବ୍ୟକ୍ତି ସଦା ହୃଷ୍ଟ ସଦାଚାରୀଙ୍କ ସମ୍ପର୍କରେ ଆସି ମଧ୍ୟ ସୁଖୀ ହୋଇ ନ ପାରେ ସେ ଏକ ଜଘନ୍ୟ କୁତ୍ସିତମନା ନୀଚ ମନୁଷ୍ୟ । ଇଂରାଜୀକବି କୀଟ୍‌ସ୍ କହିଥିଲେ, ''ପାଗ ଭଲ ଥିଲେ ମୋ ମନ ଭଲ ଥାଏ । ନିର୍ମଳ ଆକାଶ ମୋ ମନକୁ ବି ନିର୍ମଳ କରିଦିଏ ।'' ସିମିତି ହରଷିଆ ଲୋକ ଭଲ ଦିନଟିପରି ଆମ ମନରୁ ସବୁ ଗ୍ଲାନି, ଅବସାଦ ଅନ୍ଧାର କାଟିଦିଏ । ସେଥିପାଇଁ ମୋ ବନ୍ଧୁଙ୍କ ବାସ୍‌ଟି ସଦା ଆନନ୍ଦରେ ଭରପୁର ।

ତାଙ୍କର ଶିଷ୍ଟାଚାର, ବନ୍ଧୁସୁଲଭ ବ୍ୟବହାର ଓ ପ୍ରଫୁଲ୍ଲ ମାନସ ଯାତ୍ରୀଗଣଙ୍କୁ ମଧ୍ୟ ସଂକ୍ରମିତ କରେ । ବନ୍ଧୁଙ୍କ ସ୍ଫୂର୍ତ୍ତି ବା ପ୍ରଫୁଲ୍ଲତା ବିଳାସିତାର ମୂଲ୍ୟହୀନ ଅପଚୟ ନ ହୋଇ ଏକ ଲାଭଜନକ ମୂଲ୍ୟବାନ୍ ବିନିଯୋଗ ବୋଲି ବୁଝିବାକୁ ହେବ ।

ଏବେ ଏବେ ବନ୍ଧୁଙ୍କୁ ଆଉ ସେ ରାସ୍ତାରେ ଦେଖୁନାହିଁ । ସେ ବୋଧହୁଏ ଆଉ ଏକ ଲାଇନ୍‌କୁ ବଦଳି ଯାଇଥିବେ ଏବଂ ସଙ୍ଗରେ ତାଙ୍କର ପ୍ରଫୁଲ୍ଲତା ମଧ୍ୟ ନେଇଥିବେ । ଏ ବୈଚିତ୍ର୍ୟହୀନ ଗଦ୍ୟମୟ ଦୁନିଆରେ ସର୍ବତ୍ର କ'ଣ ହର୍ଷ ବିତରଣ ସମ୍ଭବ ? ମୁଁ ଜଣେ ଅନାମଧେୟ କଣ୍ଡାକ୍ଟରଙ୍କ ପ୍ରଶସ୍ତିଗାନ କଲି ବୋଲି କେହି ଯେପରି ମୋତେ ଭୁଲ ନ ବୁଝନ୍ତି । କେତେ କେତେ କବି ଲେଖକ ତ ପୁଣି "ଘାସ" "ତୃଣ ଫୁଲ" "ଶେଫାଳୀ" "ଡାମରାକାଉ" ବା "ବାଜି ରାଉତ" ପାଖରୁ ପ୍ରେରଣା ନେଇ କାବ୍ୟ-କବିତା ଲେଖି ଜାତିକୁ ନୀତିବାଣୀ ଶୁଣାଇଛନ୍ତି । ତେବେ ଛୋଟ ଜୀବଟିଏ ହେଲେ ମଧ୍ୟ ଯେଉଁ ବ୍ୟକ୍ତି ସମାଜରେ ଏତେ ସୁରୁଖୁରୁରେ ଗୁରୁ ଦାୟିତ୍ୱ ତୁଲାଇ ଶିଷ୍ଟାଚାର ଓ ପ୍ରଫୁଲ୍ଲତାଦ୍ୱାରା ଛାର କଣ୍ଡାକ୍ଟର ଚାକିରିକୁ ମଧ୍ୟ ମହନୀୟ କରିଛି ତା' ପାଖରୁ ଶିକ୍ଷା ନେଲେ ବା ଅପରାଧ କ'ଣ ?

ଏକଥା ସତ ଯେ ବିଗତ ମହାଯୁଦ୍ଧ ଯୋଗୁଁ ଓ ଯୁଦ୍ଧୋତ୍ତର ଯୁଗର ଅବ୍ୟବସ୍ଥା ଓ ଅଭାବ ଅନଟନଫଳରେ ଆମର ଦୈନନ୍ଦିନ ଜୀବନକୁ ମଧୁମୟ କରୁଥିବା ଛୋଟ ଛୋଟ କଥା ଓ କାମରେ ଏବଂ ଶିଷ୍ଟାଚାରରେ ଯଥେଷ୍ଟ ମାତ୍ରାରେ ଶୀତଳତା ଓ ଶିଥିଳତା ଦେଖାଦେଇଛି । 'ଅଭାବରେ ସ୍ୱଭାବ ନଷ୍ଟ ହୁଏ' ବୋଲି ବହୁଦିନରୁ କଥାଟି ପ୍ରଚଳିତ । ତଥାପି ଯେବେ ପରସ୍ପର ପ୍ରତି ସ୍ନେହସଦ୍‌ଭାବ ରଖି ଜୀବନ କଟାଇବା ଶ୍ରେୟ ବୋଲି ଆମେ ବିବେଚନା କରୁ ତେବେ ଆମକୁ ସେଇ ସବୁ ଶିଷ୍ଟାଚାରର ନମ୍ରତା ବିନୟ ଫେରାଇ ଆଣିବାକୁ ପଡ଼ିବ ।

କିନ୍ତୁ ଆଇନ୍‌ର ଆଶ୍ରାନେଇ କ'ଣ ସେ ସବୁ ଫେରାଇ ଆଣି ହେବ ? ଆମେ ତ ଦେବତା ହୋଇନାହୁଁ ବା ଅପ୍‌ସରା ବା ଦେବଦୂତ ନୋହୁଁ ଯେ ଆମ ପାଇଁ ଆଇନ୍ ରହିବ ନାହିଁ । ଆମେ ମଣିଷ, ତେଣୁ ଆଇନ୍ ରହିବ ଓ ଆଇନ୍‌ର ପ୍ରତୀକ ପୋଲିସ ମଧ୍ୟ ରହିବ, ମାତ୍ର ପୋଲିସ ସିନା ଦୈହିକ ଆକ୍ରମଣରୁ ଆମକୁ ରକ୍ଷା କରିବ; ମାନସିକ ବା ବୌଦ୍ଧିକ ସ୍ତରର ତା'ର ସାହାଯ୍ୟ ଲୋଡ଼ିବା ବୃଥା । ଲିଫ୍‌ଟବାଲା ବଳପ୍ରୟୋଗ କରି ଅଶିଷ୍ଟାଚାରର ଯେଉଁ ପ୍ରତିଶୋଧ ନେଲା ସେ ରୀତି ଅବଲମ୍ବନ କରି ଆମେ କ'ଣ ଲୋକଙ୍କୁ ଶିଷ୍ଟାଚାର ଶିଖାଇ ପାରିବୁଁ ? ବରଞ୍ଚ ସେ ଯେବେ କିରାଣୀବାବୁଙ୍କୁ 'ଆଜ୍ଞା', 'ଅବଧାନ' କହି ବିନୟ ଦେଖାଇ ମାନସମ୍ମାନ ଦେଇଥାନ୍ତା ତେବେ ପ୍ରତିଶୋଧ ବେଶ୍ କାର୍ଯ୍ୟକାରୀ ଓ ସୂକ୍ଷ୍ମବୁଦ୍ଧି ସମ୍ମତ ହୋଇଥାନ୍ତା । ତଦ୍ୱାରା ସେ କେବଳ ଅଭଦ୍ରାମିକୁ ନୁହେଁ ନିଜକୁ ମଧ୍ୟ ଜିଣିଥାନ୍ତା । ଏହି ଶେଷୋକ୍ତ ଜୟ ହିଁ ଯଥାର୍ଥ ବିଜୟ । ଶିଷ୍ଟାଚାରୀର ଜାଗତିକ ଭୌତିକ କ୍ଷତି ହୋଇପାରେ ମାତ୍ର ନୈତିକ ବା ଆଧ୍ୟାତ୍ମିକ ବିଜୟ ତା'ରି ।

ପରିଶେଷରେ ଲିଫ୍‌ଟବାଲାକୁ ଗଳ୍ପଛଳରେ ଗୋଟିଏ ଐତିହାସିକ ଶିଷ୍ଟାଚାରର ନିଦର୍ଶନ ଦେଉଛି । ଇଂଲଣ୍ଡରେ ଅଷ୍ଟାଦଶ ଶତାବ୍ଦୀର ସାଂସ୍କୃତିକ ଜୀବନରେ ଲର୍ଡ ଚେଷ୍ଟାରିଫିଲ୍ଡ୍ ଥିଲେ ଜଣେ୍କ ବିଚକ୍ଷଣ ସମ୍ଭ୍ରାନ୍ତ ରାଜନୀତିଜ୍ଞ । ସେ ସମୟରେ ଲଣ୍ଡନର ରାସ୍ତାଗୁଡ଼ିକ ପକ୍କା ନ ଥିବା ଯୋଗୁଁ ଭାରି କାଦୁଅ ହେଉଥିଲା । ତେଣୁ ଯେଉଁ ଲୋକ କାନ୍ଥ ପାଖ ଦେଇ ଯାଉଥିଲା ସେ ଶୁଖିଲା ବାଟ ପାଇପାରୁଥିଲା । ଦିନେ ଲର୍ଡ ଚେଷ୍ଟାରଫିଲ୍ଡ୍ କାନ୍ଥ ପାଖ ରାସ୍ତାରେ ଚାଲିଛନ୍ତି ଅପର ପାର୍ଶ୍ୱରୁ ଲୋକଟିଏ ଆସିଲା । ତାଙ୍କୁ ଦେଖିଦେଲାମାତ୍ରେ ଲୋକଟି ବାହାଦୂରୀ ଦେଖାଇ କହିଲା, ''ମୁଁ କେବେ ପାଜି ସଇତାନଙ୍କୁ କାନ୍ଥପାଖ ଶୁଖିଲା ରାସ୍ତା ଛାଡ଼ି ଦିଏ ନାହିଁ ।'' ତତ୍‌କ୍ଷଣେ ଅଶିଷ୍ଟାଚାରର ପ୍ରତିଶୋଧଛଳରେ ମୁଣ୍ଡ ନୁଆଁଇ ଭଲ ଶୁଖିଲା ରାସ୍ତାଟି ଚେଷ୍ଟାରଫଲ୍ଡ଼ ଆଗନ୍ତୁକଙ୍କୁ ଛାଡ଼ିଦେଲେ ଏବଂ କହିଲେ, ''ମୁଁ ସେମାନଙ୍କୁ ବରାବର ଛାଡ଼ିଦିଏ ।'' ଆଗନ୍ତୁକଙ୍କୁ ଜାବୁଡ଼ି ଧରି କାଦୁଅକୁ ଫୋପାଡ଼ି ଦେବା ଅପେକ୍ଷା ଏ ପ୍ରତିଶୋଧ ଯେ ଅଧିକ ଫଳପ୍ରଦ ହେଲା ତାହା ମୋର ବନ୍ଧୁ ଲିଫ୍‌ଟବାଲା ଅବଶ୍ୟ ସ୍ୱୀକାର କରିବେ ।



# ଜଣେ ପାଠକଙ୍କ ସହିତ କଥାବାର୍ତ୍ତା

ବଡ଼ ବଡ଼ ଲେଖକଙ୍କ (ଯେଉଁମାନଙ୍କ ବହି ହଜାର ହଜାର ସଂଖ୍ୟାରେ ବିକ୍ରି ହୁଏ; ମୁଁ ବଡ଼ ଲେଖକ ନୁହେଁ ବା ଯେଉଁ ଖଣ୍ଡେଅଧେ ବହି ଛପା ହୋଇଛି ତା'ରି ବିକ୍ରି ସମ୍ବାଦ ଅଦ୍ୟାପି ପ୍ରକାଶକଠାରୁ ପାଇ ନାହିଁ ।) ଜୀବନରେ ହୁଏତ ବାରମ୍ବାର ମୋରି ଅଭିଜ୍ଞତା ଆସିଥିବ, ମାତ୍ର ଦୁନିଆଁ ଆଗରେ କାହିଁ କେଉଁଠି ସେମାନେ ତାହା ପ୍ରକାଶ କରିଥିବା ର ମନେ ପଡୁ ନାହିଁ । ମୋ ଜୀବନରେ ମାତ୍ର ଥରେ ମୋର ଅମର (ମୋ ମତରେ) ଗଳ୍ପାବଳିର ଜନୈକ ପାଠକ ସହିତ ଭେଟିବାର ଓ ଖୋଲାଖୋଲି କଥାବାର୍ତ୍ତା ଓ ଆଳାପ ଆଲୋଚନା ମନେ ପକାଇ ଅଦ୍ୟାପି ମୁଁ ଏତେ ଆନନ୍ଦ ଓ କୌତୁକ ପାଉଛି ଯେ ତାହା ସର୍ବସାଧାରଣରେ ପ୍ରକାଶ କରିବାର ଆଗ୍ରହ ସମ୍ବରଣ କରିପାରୁ ନାହିଁ ।

କେତେ ମାସ ତଳର କଥା । ପୁରୀ ପେସେଞ୍ଜାରରେ ଦିନବେଳେ ଜେନାପୁରରୁ ବାଲେଶ୍ୱର ଆସୁଥାଏଁ । ତୃତୀୟଶ୍ରେଣୀ ଛୋଟ ଡବାଟିରେଠିକ୍ ମୋ ସାମନାରେ ଜଣେ ଯାତ୍ରୀ ଚାର୍ମିନାର ସିଗାରେଟ୍ ଟାଣି ବସିଥାନ୍ତି । ତାଙ୍କ ପାଖରେ ଥୁଆହୋଇଥିବା ଚମଡ଼ାବେଗ୍, ତାଙ୍କର ବେଶଭୂଷା ଏବଂ ଭାବଭଙ୍ଗୀ ଦେଖିଲେ ମନେ ହେଉଥାଏ ଯେପରି ସେ ଟା' ବା ସାବୁନ୍ କମ୍ପାନୀର ବା ଇନ୍‌ସ୍ୟୁରେନ୍‌ସର ବା କୌଣସି ହୋଟେଲବାଲାର ଏଜେଣ୍ଟ ବା ଆତତାୟୀ ବା ହନ୍ତା ହୋଇପାରନ୍ତି । ମୁହଁଟି ବେଶ୍ ସରସ ସୁନ୍ଦର; ହାତ ଦୁଇଟା ଲୋମଶ ଓ ବଳିଷ୍ଠ ଏବଂ ଚେହେରା ଭାବଗମ୍ଭୀର । ଶରତ୍‌କାଳ; ପୂଜା ଛୁଟିର ଦିନ ଓ ପରିବେଶ । ସଫା ପାଗ । ଦୁନିଆଁ ଉପଭୋଗ କରିବାପାଇଁ ବୋ କୌଣସି ଆଗନ୍ତୁକ ସହିତ ଆନନ୍ଦରେ କଥାବାର୍ତ୍ତା କରିବା ପାଇଁ ତାହା ବେଶ୍ ଅନୁକୂଳ । ଏକେ ତ ମୋର ମେଜାଜ୍ ଖୁସିଥାଏ, ଯେମିତି ସହଯାତ୍ରୀଙ୍କ ହାତରେ ମୋରି ବହିର ରଙ୍ଗୀନ୍ ମଲାଟରେ ମୋ ନାମଟା ଦେଖିଦେଲି ମୋ ମନ ଶୂନ୍ୟରେ ଉଡ଼ିବାକୁ ଆରମ୍ଭ କଲା । ବହିଟି ସଦ୍ୟ ପ୍ରକାଶିତ ବିଭିନ୍ନ ପତ୍ରପତ୍ରିକାରୁ ସଂଗୃହୀତ ମୋରି କେତୋଟି ଗଳ୍ପର ସମାହାର ।

ମନେ ମନେ ଭାବିଚାଲିଲି, ''ୟା' କୁଇ କହନ୍ତି ଯଶ, ଖ୍ୟାତି, ସୁନାମ । ମୋରି ଖ୍ୟାତି ପ୍ରତିଷ୍ଠା । ଦେଶରେ ବ୍ୟାପିବାକୁ ଆରମ୍ଭ କଲାଣି ଦେଖୁଛି । ଏ ଭଦ୍ରଲୋକ ଜଣକ ଅଗଣିତ ପାଠକଶ୍ରେଣୀରୁ ଜଣେ । ସେ ମୋ ବହି କିଣିଛନ୍ତି, ପଢୁଛନ୍ତି । ଆହା ! ତାଙ୍କୁ ଆନନ୍ଦରେ କୁଣ୍ଢାଇବାକୁ ଇଚ୍ଛା ହେଉଛି । ସାରା ଦେଶରେ ୟାଙ୍କରି ପରି କେତେ ପାଠକ ମୋର ଅମୂଲ୍ୟ

ରଚନାବଳି ପଢୁ ନଥିବେ ! ଥରେ ନୁହେଁ, ଦୁଇଥର ନୁହେଁ ବାରମ୍ବାର ସେ ବହି ପଢ଼ିବେ ଏବଂ ମଲାଟ ଓ ପୃଷ୍ଠା ଚିରିବାଯାଏ ପଢୁଥିବେ । ପଢ଼ିସାରି ପୁଣି ନୂଆ କପି କିଣିବେ ପଢ଼ିବେ; ବନ୍ଧୁବାନ୍ଧବ ପ୍ରିୟାପ୍ରୀତିଙ୍କୁ ଉପହାର ଦେବେ; ନ ହେଲେ କିଣିବାକୁ ପଢ଼ିବାକୁ ସୁପାରିଶ୍ କରିବେ । ଅଧିକରୁ ଅଧିକ ବହି ବିକ୍ରି ହୋଇ ଦ୍ୱିତୀୟ ତୃତୀୟ ସଂସ୍କରଣ ଆଡ଼କୁ ଚାଲିବ । ଆଃ ! "ବଦଲ୍‌ଗୟା ଇନ୍‌ସାନ୍" । ଏତେଦିନ ପରେ ମୋର ଭାଗ୍ୟରବି ଉଦିତ ହେଲେ । ଦେଶ ପ୍ରକୃତ ପ୍ରତିଭା ଚିହ୍ନି ପାରିଲା ।

ଏମିତି ମୋ ମନ ଭିତରେ ଗୋଟାକ ପରେ ଗୋଟାଏ ଆନନ୍ଦର ଢ଼େଉ ଖେଳି ଯାଉଥାଏ । ହଠାତ୍ ଗୋଟାଏ ଶବ୍ଦ ଶୁଣି ଚମକି ପଡ଼ିଲି । ସହଯାତ୍ରୀ ଦୀର୍ଘନିଃଶ୍ୱାସଟାଏ ଛାଡ଼ି ବହିଟିକୁ ରଖି ଦେଲେ । (ସତ କହିଲେ କାଠର ବେଞ୍ଚ ଉପରେ ବହିଟାକୁ ଏତେ ଜୋର ବାଡ଼େଇ ଦେଲେ ଯେ ସିଲାଇ ଫିଟି ଗୋଟାଏ ଅଧେ ଫର୍ମା ବାହାରି ପଡ଼ିଲା) ମୋ ଆଡ଼କୁ ଚାହିଁ ମୋତେ ଶୁଣାଇ ଶୁଣାଇ କହିଲେ, "ଧେତ୍ ! ନନ୍‌ସେନ୍‌ସ ! ଏକଦମ୍ ବାଜେ ଯାହାକୁ କହନ୍ତି ।"

ମୁଁ 'ହୁଁ' କହିଲି ପଚାରିଲି "ଆପଣ ବହିଖଣ୍ଡି କେଉଁଠୁ ପାଇଲେ ?"

ତାଚ୍ଛଲ୍ୟରେ "ଜାଣେନା" କହି ଦଣ୍ଡେ ଗୁମ୍‌ମାରି ବସିଗଲେ ସେ ।

ଦଣ୍ଡେ ପରେ ପୁଣି ଆରମ୍ଭ କଲେ, "ବୁକ୍‌ଷ୍ଟଲର ଷ୍ଟଲ୍‌ରେ ବହି ଓଲଟ ପାଲଟ କରୁଥାଏ, ଦୋକାନୀ କହିଲା 'ଆଜ୍ଞା, ଏ ବହିଖଣ୍ଡି ପଢ଼ନ୍ତୁ ।' ମୁଁ ଭାବୁଛି ଆଉ ଗୋଟାଏ ବହି ଭାବି ଏଇଟାକୁ ଭୁଲରେ ଦେଇ ଦେଇଛି । ଯାହା ତ ହେବାରହେଲା, ଟଙ୍କା, ତିନିଟା (ତିନିଟଙ୍କାରୁ କମରେ ଓଡ଼ିଶାରେ ଗଳ୍ପ ବା ଉପନ୍ୟାସ ମିଳୁନି) ପାଣିରେ ପଡ଼ିଲା ଦେଖୁଛି ।"

ମୁଁ ପଚାରିଲି "ବହିର ଲେଖକ କିଏ ?"

ବିରକ୍ତି ସହିତ କଡ଼ା ଗଳାରେ କହିଲେ "କେଜାଣି !" ପରେ ନିହାତି ଅଳସ ଭାବ ଦେଖାଇ ବହି ମଲାଟରୁ ମୋ ନାମଟା ଦେଖି "ଶତପଥୀ" କୁ "ଶଠପତି" ବୋଲି ଉଚ୍ଚାରଣ କଲେ ଏବଂ ପୁଣି ଜୋର୍‌ରେ ବହିଟାକୁ ବାଡ଼େଇ ରଖିଦେଲେ ଓ ଦୀଘନିଶ୍ୱାସଟାଏ ଛାଡ଼ିଲେ ।

ମୁଁ ଚୁପ ରହିବାର ଦେଖି ପୁଣି ସେ ଆରମ୍ଭ କଲେ, "ଟ୍ରେନ୍‌ରେ ଯିବାଆସିବା ବେଳେ କାହିଁକି ଯେ ମଣିଷର ପଢ଼ିବାକୁ ଇଚ୍ଛା ହୁଏ ବୁଝି ପାରେନାଁ । ବଦ୍‌ଅଭ୍ୟାସ ହୋଇଗଲାଣି । କିଛି ଗୋଟାଏ କିଛି ନ ପଢ଼ିଲେ ବଡ଼ ଆକୁପାକୁ ଲାଗେ; କିନ୍ତୁ ଏମିତି ବାଜେ ବହି ମଣିଷ କିମିତି ଭଲା ପଢ଼ିବ ?"

ଏ କଥାଗୁଡ଼ାକରୁ ତାଙ୍କ ମନର ତିକ୍ତତା ବେଶ୍ ବୁଝା ପଡୁଥାଏ । ଯେବେ ସେ ଅକିଞ୍ଚନ ବହିଖଣ୍ଡକୁ କେଉଁଠି ବାଟରୁ କୁଢ଼ାଇ ଆଣିଥାନ୍ତେ ବା କାହାପାଖରୁ ଉପହାରସୂତ୍ରରେ ପାଇଥାନ୍ତେ ତେବେ ହୁଏତ ତିକ୍ତତା ଏତେ ତୀବ୍ର ହୋଇ ନଥାନ୍ତା । ଗୋଟାଏ ଅଧେ ନୁହେଁ ନଗଦ ତିନିତିନିଟା ଟଙ୍କା ନିଜ ହାତରେ ଗଣି ଦେଇଥିବାରୁ ତାଙ୍କ ଛାତି କରତି ହୋଇ ଯାଉଥାଏ ।

ମୁଁ ପଚାରିଲି, "କ'ଣ ଅଛି ସେ ବହିରେ ?"

''କେଜାଣି ।'' ପୁଣି ଦଣ୍ଡେ ପରେ କହିଲେ, ''ମୁଁ ବହିର ମୂଳ-ଅଗ, ଗଣ୍ଡି-ମୁଣ୍ଡ କିଛି ପାଉନି ।''

କ'ଣ ଭାବିଲେ କେଜାଣି ବହିଖଣ୍ଡି ପୁଣି ଉଠାଇ ଏପଟ ସେପଟ କଲେ; କହିଲେ ''କାହିଁ ମଲାଟରେ ତ ବହି ବିଷୟରେ ପଦେ ଅଧେ କିଛି ନାହିଁ । ମଣିଷ ତେବେ କିମତି ଜାଣିବ ? ଗୁଡ଼ାଏ ବାଜେ ଜିନିଷ ଏଣୁ ତେଣୁ ଆଣି ପୂରାଇବା କଥା । ଏଠି ଗଳ୍ପ କାହିଁ ? ସବୁ ଖଣ୍ଡିଆଦଣ୍ଡିଆ । ପୁରୁଣା ଖବରକାଗଜ ପତ୍ରପତ୍ରିକରୁ କଟାକଟି କରିଗୁଡ଼ାଏ ଆବର୍ଜନା ଏକାଠି କରି ଛାପିଦେଲେ ତ କାମ ଶେଷ ।''

ଏକଥାଗୁଡ଼ାକ ମୋ ଛାତିରେ ଶେଳପରି ବାଜିଲା । ସତରେ ସେଗୁଡ଼ାକ ବିଭିନ୍ନ ପତ୍ରପତ୍ରିକାରେ ଛାପା ହୋଇଥିବା ଲେଖା । ଗରିବ ଲେଖକ ସେସବୁ ଏକତ୍ର କରି ମଲାଟଭିତରେ ଥୋଇଦେଇଛି ଦି ପଇସା ଆଶାରେ ।

ପୁଣି କଥା ବାର୍ତ୍ତା ଚାଲୁରଖିବା ମତଲବରେ ସହଯାତ୍ରୀ ଆରମ୍ଭ କଲେ '' ଆଦୌ ବୁଝି ହୁଏନା ଲୋକଗୁଡ଼ାକ ଏମିତି ବହି କାହିଁକି ଲେଖନ୍ତି, ଛାପନ୍ତି ।'

''ଅର୍ଥ ଆଶାରେ ନିଶ୍ଚୟ ।'' ମୁଁ କହିଲି ।

''ସେ କଥା ସତ ଯେ; କିନ୍ତୁ ଏମିତି ବହିରୁ କେତେ ବା ମିଳିବ ? ତା' ଛଡ଼ା ଲେଖକ ଭଲା ଲବ୍‌ଧପ୍ରତିଷ୍ଠ ହୋଇଥାନ୍ତା । କେବେ ତ ନାମ ଶୁଣି ନାହିଁ ।'' ଝରକା ଆଡ଼େ ମୁହଁଟା ବୁଲାଇନେଇ କହିଲେ, ''ଭବିଷ୍ୟତରେ କେବେ ଶୁଣିବାର ଇଚ୍ଛା ନାହିଁ ମଧ୍ୟ ।''

''ଆପଣ କେଉଁ କେଉଁ ଲେଖକଙ୍କୁ ଭଲପାନ୍ତି ?'' ବୋଲି ପଚାରିବାରେ ସେ ଗୁଡ଼ାଏ ନାମ କହିଲେ ଯାହା ଲେଖିଲେ ଲେଖକ କୂଳକୁ ଲଜ୍ଜା ଓ ଅପମାନ ହେବ । ଦୈବକୁ ସେ ତାଲିକାରେ ଜଣେ କବିଙ୍କ ନାମ ଥିଲା ।

ମୋତେ ଖୁସି ଲାଗିଲା ଯେ ସହଯାତ୍ରୀ ବନ୍ଧୁ କବିତା ରସିକ, କାବ୍ୟପ୍ରେମୀ । ତେଣୁ ଜାଣିବାକୁ ଚାହିଁଲି ସେ କବିଙ୍କ କବିତାବଳିର କେଉଁ ବିଭାବ, ଅଂଶ ବା ଗୁଣ ତାଙ୍କୁ ଭଲ ଲାଗେ । ସଙ୍ଗେ ସଙ୍ଗେ ସେ ଉଷ୍ମ ହୋଇ ଉଠିଲେ ।

ଚିତ୍କାର କରି କହିଲେ, ''କବିତା ଶୁଣିବେ ? ବଢ଼ିଆ ଜିନିଷ । ରକ୍ତ ତାତିଉଠିବ ଟକଟକ ଫୁଟିବ । ଆପଣଙ୍କ ମାଇଚିଆ ଆଧୁନିକ କବିତା ନୁହେଁ ସେ । ଶୁଣିବେ ?'' ଏତକ କହିସାରିଛନ୍ତି କି ନାହିଁ ସ୍ୱର ଧରି ଆଖି ଡିମା ଓଲଟାଇ ପୂର୍ଣ୍ଣପ୍ରାଣରେ ଗାଇବାକୁ ଆରମ୍ଭ କଲେ ସଙ୍ଗୀତଟି ଯହିଁରୁ ଦୁଇଧାଡ଼ି ମୋର ଅଦ୍ୟାପି ମନେ ଅଛି ।

''କାଞ୍ଚଲାରେ ଉର ଉଦ୍ଧତ ଉଙ୍କତି
ଥିବୁରେ ଯେବେ ଲୁଚାଇ,
ମୋରାଣ ! ସଙ୍ଘାତ ଅଳସଭୁଜଙ୍ଗେ
ଭୁଜ ଟେକି ଦେବୁ ନାହିଁ ।''

ଏ ଦୁଇଟି ପଂକ୍ତି ଗାଇସାରି ଡେଇଁପଡ଼ି ବନ୍ଧୁ କହିଲେ, ''ୟାକୁଇ ସିନା କହନ୍ତି କବିତା ! ଯିମିତି ଭାବ ସିମିତି ଭାଷା – ଯିମିତି ଅଳଙ୍କାର ସିମିତି ଅନୁପ୍ରାସ ।'' ପାପୁଲି କୁ ପାପୁଲି ଠୋ କରି ପିଟି କହିଲେ, ସମଗ୍ର ଓଡ଼ିଆ ସାହିତ୍ୟ କାହିଁକି ବିଶ୍ୱ ସାହିତ୍ୟରେ ଏହାର ତୁଳନା ନାହିଁ, ଆପଣଙ୍କ ସେକ୍‌ସ୍ ପିଅରଙ୍କ –''

ମୁଁ ଏବଂ ଅନ୍ୟାନ୍ୟ ଯାତ୍ରୀମାନେ ତାଙ୍କର କବିତାପ୍ରୀତିରେ ମୁଗ୍‌ଧ, ଚକିତ ଓ ତଟସ୍ଥ ହେବାର ଦେଖି ସେ ଦ୍ୱିଗୁଣ ଉତ୍ସାହରେ କାଠ ଚଟାଣରେ ଯୋତାରେ ତାଳ ଦେଇ ପୁଣି ଆରମ୍ଭ କଲେ,

''ସାଜ ସାଜ ବୀରବେଶ ନାଚ ନାଚ ନାଚରେ,
ମାର ମାର ମାରେ ରେ
ମାର ଭୀମା ମୁଦ୍‌ଗର ରକ୍ତ କରନ୍ତୁ ଉଦ୍‌ଗାର,
ସାଜ ସାଜ...''

ଅଣନିଶ୍ୱାସୀ ହୋଇ ମନ୍ତବ୍ୟ କଲେ, '' କି, ଅଗ୍ନିମୟୀ ବାଣୀ କି ଅଗ୍ନିର ଗର୍ଭ ଆତ୍ମା ! କି ଓଜସ୍ୱିନୀ ପ୍ରତିଭା !''

କବିତାର ଭଣିତା ପରେ ଦୀର୍ଘଶ୍ୱାସ ପକାଇ ଗୋଟାଏ ବକ୍ର ଜିଜ୍ଞାସୁ ଚାହାଣି ନିଜ ହୃଦୟ ଉପରେ ରଖି କହିଲେ, ଭାବିହୁଏନା କବି କିମିତି ଏମିତି କବିତା ଲେଖନ୍ତି ! ଐଶୀଶକ୍ତି, ଦୈବୀ ପ୍ରତିଭା, ଅଗାଧ ପାଣ୍ଡିତ୍ୟ ବ୍ୟତୀତ ଏହା କଦାପି ସମ୍ଭବ ନୁହେଁ । ଆପଣ ବା ମୁଁ କେବେ ଏମିତି ଲେଖିବା ସ୍ୱପ୍ନରେ ସୁଦ୍ଧାଭାବି ପାରିବ ? ହୁଁ ହଜାରହଜାର ଲକ୍ଷ ଲକ୍ଷ ଟଙ୍କାର ପ୍ରଲୋଭନ କ'ଣ ଆମକୁ ଏମିତି କବିତା ଲେଖାଇ ପାରିବ ? ଯାହାକୁ କହନ୍ତି ଗଛରୁ ପତ୍ର ବାହାରିଲା ପରି ସ୍ୱଭାବିକ ଏ କବିତା ।'' ଏହା କହି ପକେଟରୁ ପ୍ଲାଷ୍ଟିକ୍‌ର ନାଲି ଚିରୁଣୀଟାଏ ବାହାର କରି ବିପର୍ଯ୍ୟସ୍ତ ଚୂଳଗୁଡ଼ାକ ପଛଆଡ଼େ କୁଣ୍ଡାଇ ନେଲେ ।

ମୁଁ ପଚାରିଲି, ''ଆପଣ କ'ଣ କେବେ ସେ ମହାକବିଙ୍କୁ ଦେଖିଛନ୍ତି ?'' ସେ ଚମକି ପଡ଼ିଲା ପରି ହୋଇ କହିଲେ, ''ବାବା ! ସେ ସୌଭାଗ୍ୟ କ'ଣ ଆମ ପରି ନଗଣ୍ୟ ଜୀବ ପକ୍ଷରେ ସମ୍ଭବ ?'' କବିଙ୍କ ସହିତ ସାକ୍ଷାତ୍‌କାର ପରି ଏକ ବିରାଟ ଘଟଣା ମର ମାନବପକ୍ଷରେ ଯିମିତି ଘଟିବାର ନୁହେଁ ।

ଭଦ୍ରଖ ପାଖାପାଖି ହେଲାରୁ ଟ୍ରେନର ଗତି ଧିମେଇ ଆସିଲା । ଯାଯାବର, ବୁଲା ଫକୀର, ଏଜେଣ୍ଟ, ଧର୍ମ ପ୍ରଚାରକ ଖୁନୀ ବା ଆଉ ଯାହା କିଛି ହୋଇଥାନ୍ତୁ ବେଗ୍‌ଟି ଧରି ସହଯାତ୍ରୀ ଉଠିବାର ଉପକ୍ରମ କଲାବେଳେ ମୋ ମୁଣ୍ଡରେ କିଏ ଯିମିତି ଭଲ ବୁଦ୍ଧିଟାଏ ଦେଲା । ମୁଁ ସନ୍ତର୍ପଣରେ କହିଲି, ଆଜ୍ଞା ! ଯାହା ଭାବନ୍ତୁ ପଛେ ପଦେ ଅନୁରୋଧ କରିବି ବୋଲି ଭାବୁଛି, ଅନୁମତି ଦେବେ ?'' ସମ୍ମତିସୂଚକ ଚାହାଣି ଦେଖି କହିଲି, ''ଆଜ୍ଞା ! ଏ ବହିଖଣ୍ଡି ଆପଣଙ୍କଠାରୁ କିଣି ନେବାକୁ ଚାହେଁ । ଦେବେ ?'' ରହି ରହି ଭଙ୍ଗା ଭଙ୍ଗା ଗଳାରେ

ସେ କହିଲେ, ''କିଣି ନେବେ ? କିଣିବା କ'ଣ ଭଲ ... ଉଚିତ ହେବ ?'' ମୁଁ କହିଲି ''ଦେଖନ୍ତୁ, ଭଦ୍ରଖରୁ ବାଲେଶ୍ବର ଭିତରେ ପଢ଼ିବାପାଇଁ ମୋଠି କିଛି ନାହିଁ, ମୁଣ୍ଡ ଭିତରେ ଅର୍ଥନୀତି, ଜ୍ୟାମିତି କଷି କଷି ଥକି ଗଲିଣି ।'' ''କ'ଣ କଷି କଷି ?'' ସେ ପଚାରିଲେ । ମୁ କହିଲି, ''ନା; କିଛି ନା ତେବେ ପଢ଼ା ପଢ଼ି ନ କଲେ ଟ୍ରେନ୍ ବସ୍‌ରେ ସମୟ କଟେ ନି । ତେଣୁ ଯାହା ହେଉ ବହି ଏମିତି କି ଆପଣଙ୍କ ହାତର ସେଇ ରଦ୍ଦି, ବାଜେ ବହିଟା ହେଲେ ବି ମୋର ଚଳିଯିବ ।'' ବିବେକବନ୍ତ ସଚୋଟ ଲୋକଟି ବୋଧହୁଏ ପସନ୍ଦ କରୁ ନଥିଲେ ଯେ ମୁଁ ଏମିତି ବାଜେ ବହି ଉପରେ ଅଧଲାଏ ସୁଦ୍ଧା ଖର୍ଚ୍ଚ କରେଁ । ଶେଷରେ ଟଙ୍କା ତିନୋଟି ମୋ ହାତରୁ ନେଲେ ଏବଂ ବାଁ ହାତରେ ବହିଟି ମୋତେ ବଢ଼ାଇ ଦେଲେ ।

ଭଦ୍ରଖରେ ଗୁଡ଼ାଏ ଭଦ୍ର ଲୋକ ଓ ପିଲା ତାଙ୍କୁ ଫୁଲମାଳ ଦେଇ ଅଭିନନ୍ଦିତ କଲେ ଓ ପାଛୋଟି ନେଲେ । କଥାବାର୍ତ୍ତାରୁ ବୁଝିଲି ସେ ଗୋଟାଏ ସାହିତ୍ୟସଭାରେ ଭାଷଣ ଦେବାକୁ ଯାଉଛନ୍ତି ।

ଟ୍ରେନ୍ ଛାଡ଼ିଲାରୁ ମୁଁ ବହିର ପୃଷ୍ଠାଗୁଡ଼ାକ ଉପରେ ଏଠିସେଠି ଆଖି ପକାଇଲି । ମନ ଏକାବେଳକେ ଫିକ୍‌କା ପଡ଼ିଗଲା । ସହଯାତ୍ରୀଙ୍କ ମନ୍ତବ୍ୟ ଯଥାର୍ଥ ବୋଲି ମୋତେ ଜଣାଗଲା । ବହୁଦିନ ପରେ ପୁରୁଣା ଲେଖା ଗୁଡ଼ାକ ଉପରେ ନଜର ପଡ଼ିଲା । ଗୋଟାକୁ ଗୋଟା ଓଲଟପାଲଟ କରି ପଢ଼ିଲି । ଏଥିରୁ ବାକ୍ୟଟାଏ ସେଥିରୁ ଶବ୍ଦ କେତୁଟା । ବଡ଼ ଦୁଃଖ, ବିରକ୍ତି, ଧିକ୍‌କାର ଆସିଲା । କେଉଁଠି ବାକ୍ୟ –ଗଠନରେ ପ୍ରମାଦ ଓ ଅନ୍ୟ କେଉଁଠି ଶବ୍ଦର ଅମେଳ, ଅସାମଞ୍ଜସ୍ୟ; ଅନ୍ୟତ୍ର ଭାବ ପ୍ରକାଶରେ ଅକ୍ଷମଣୀୟ ଅପାରଗତା, ଦୈନ୍ୟ ଓ ଦୁର୍ବଳତା ମୋଟା ମୋଟି ସର୍ବତ୍ର ଅଭିନିବେଶ ଓ ଅନୁରକ୍ତିର ଅଭାବ । ସେ ବହି ସହିତ ନିଜନାମ ଯୋଡ଼ିବା ପାଇଁ ଲଜ୍ଜା ଓ ଘୃଣା ଆସିଲା । ପୁଣି ଯେତେବେଳେ ମନେପଡ଼ିଲା ଯେ ସେଇ ସପ୍ତାହରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ରମ୍ୟ ରଚନାବଳିକୁ ଅନ୍ୟ ଏକ ପୁସ୍ତିକା ଆକାରରେ ସଜାଇବାକୁ ପଡ଼ିବ ସେତେବେଳେ ଆତ୍ମଗ୍ଳାନିର ସୀମା ରହିଲା ନାହିଁ । କାରଣ ପେଷାଦାର ଲେଖକକୁ ଜୀବନରେ ଦୁଇଟି ଜଘନ୍ୟ ହୀନିମାନିଆ ଦଶାରୁ ଗୋଟିକୁ ବାଛି ନେବାକୁ ପଡ଼େ । ଗୋଟିଏ ହେଲା ନିଜ ନାମ ଯୋଡ଼ି ଖରାପ ବହିଟିଏ ପାଠକଙ୍କୁ ବିକିବା; ଅନ୍ୟଟି ହେଲା ଋଣ ପରିଶୋଧ କରି ନ ପାରି ଅପମାନ ଭୋଗିବା । ପୁଣି ଯେ ସଙ୍ଗତିସମ୍ପନ୍ନ ସୌଖୀନ୍ ଲେଖକ ତାକୁ ମଧ୍ୟ ସେମିତି ଅବସ୍ଥା ଭୋଗିବାକୁ ପଡ଼େ । ଗୋଟାଏ ପଟେ ବିବେକର ଦଂଶନ ଅନ୍ୟ ପଟେ ଜୀବନଧାରଣ । ଜୀବନ ଦୁଃଖଜଞ୍ଜାଳ ଯେତେବେଳେ ଦୁର୍ବିଷହ ହୁଏ ସେତେବେଳେ ସେ ନିଜ ଜୀବନ ଓ ବୃଦ୍ଧି ବୃତ୍ତିକୁ ବଞ୍ଚାଇ ରଖିବା ପାଇଁ ସାହିତ୍ୟର ଆଶ୍ରା ନିଏ ଏବଂ ସେତେବେଳେ ସେ ଯେବେ ପାଠକର ରୁଚି ଓ ଅଭାବ କଥା ଭାବି ବସେ ତେବେ ସେ ସାହିତ୍ୟ ସୃଷ୍ଟି କରିପାରିବ ନାହିଁ, ମରିଯିବ ବା ପାଗଳ ହୋଇଯିବ ।

ଏମିତି ଚିନ୍ତା ଭିତରେ ଦିଗନ୍ତବିସ୍ତାରୀ ହରିତାୟମାନ ଶସ୍ୟକ୍ଷେତ୍ରର ଶୋଭା ମୋର କ୍ଷୁଣ୍ଣ ମନରେ ପ୍ରଲେପ ପରି କାମ ଦେଲା ଏବଂ ଦିଗ୍‌ବଳୟରେ ନୀଳଗିରିର ସ୍ୱର୍ଣ୍ଣଚୂଡ଼ ପର୍ବତ ଶିଖରରେ ଅସ୍ତଗାମୀ ସୂର୍ଯ୍ୟର ଆଭା ପ୍ରଶାନ୍ତି ଆଣିଦେଲା ।

ସେ ଦିନର ଏ ଅଭିଜ୍ଞତା ପରେ ଆଜିଯାକେ ମୁଁ ମୋ ବହି ପଢୁଥିବା କୌଣସି ପାଠକକୁ ଦେଖି ନାହିଁ; କିନ୍ତୁ ଯଦି କେବେ ଆଉଥରେ କାହାରିକୁ ମୋ ବହି ପଢୁଥିବାର ଦେଖେଁ ତେବେ ଏ କଥା ନିଶ୍ଚିତ ଯେ ମୁଁ କଦାପି ତାଙ୍କୁ ବହିଟି ତାଙ୍କ ମନକୁ ପାଇଲା ନ ପାଇଲା ବିଷୟରେ ଜେରାଜମାନବନ୍ଦୀ କରିବି ନାହିଁ ।



# ଭୁଲାମନ

ଲଣ୍ଡନପରି ବଡ଼ ବଡ଼ ରେଳ ଷ୍ଟେସନମାନଙ୍କରେ ଯାତ୍ରୀମାନେ ଛାଡ଼ି ଯାଇଥିବା ଜିନିଷପତ୍ରର ଯେଉଁ ଲମ୍ବା ବିକ୍ରି ବିଜ୍ଞାପନ ବାହାରେ, ତାକୁ ପଢୁଥିବା ଲୋକଙ୍କ ମଧ୍ୟରୁ ଅଧିକାଂଶ ଆଶ୍ଚର୍ଯ୍ୟ ହୋଇ ଭାବୁଥିବେ, ସତରେ ମଣିଷର କେଡ଼େ ଭୁଲା ମନ; କିନ୍ତୁ ଏ ବିଷୟରେ ଯେବେ ଠିକ୍ ତଥ୍ୟ ବା ହିସାବପତ୍ର ମିଳୁଥାନ୍ତା,ତା' ହେଲେ ମୋର ଦୃଢ଼ ଧାରଣା ଯେ ପାସୋରି ଯିବାଟା ମଣିଷର ସାଧାରଣ ଗୁଣ ନୁହେଁ ବୋଲି ନିଶ୍ଚୟ ପ୍ରମାଣିତ ହୁଅନ୍ତା । ସତ କହିଲେ, ମଣିଷର ବିସ୍ମରଣଶକ୍ତି ଅପେକ୍ଷା ତା'ର ଅଭାବନୀୟ ସ୍ମରଣଶକ୍ତି ମୋତେ ବିସ୍ମୟାଭିଭୂତକରେ ।

ଏ ଯୁଗର ମଣିଷ ଏପରିକି ଟେଲିଫୋନ୍ ନମ୍ବର ମନେ ରଖିପାରେ; ବନ୍ଧୁବାନ୍ଧବଙ୍କ ଚିକିନିଖି ଠିକଣା ମନେ ରଖେ, ଉତ୍କୃଷ୍ଟ ମଦ୍ୟର ତିଆରି ସାଲ ତାରିଖ ମନେ ରଖେ, କେବେ କେଉଁଠି କେତେବେଳେ ଭୋଜନର ବ୍ୟବସ୍ଥା ଅଛି ତାକୁ ବି ମନେ ରଖେ । ଏହାଛଡ଼ା ଦୁନିଆଯାକର ଅଭିନେତା ଓ ଅଭିନେତ୍ରୀ, କ୍ରିକେଟ ଓ ଫୁଟବଲ୍‌ଖେଳାଳୀ ଏପରିକି ଖୁନୀ ଓ ନରହନ୍ତାମାନଙ୍କ ରାଶି ରାଶି ନାମରେ ତା' ମୁଣ୍ଡ ଭରପୂର । ସୁଦୂର ଅତୀତରେ କେବେ କେଉଁ ଶ୍ରାବଣରେ ପାଗ କିମିତି ଥିଲା ବା ସୁଦୂର ମୋଫସଲର କେଉଁ ହୋଟେଲରେ ଖରା ଦିନରେ ଅତି କଦର୍ଯ୍ୟ ଖାଇବାର ମିଳିଥିଲା, ତାହା ସେ କହି ଦେଇ ପାରିବ । 'ପୁନଶ୍ଚ ଦୈନନ୍ଦିନ ଜୀବନର କର୍ମନିର୍ଘଣ୍ଟର ଯେତେ ଯେତେ କଥା ମନେ ରଖିବା କଥା ସେଥିରୁ ସେ କୌଣସିଟି ଭୁଲେ ନାହିଁ । କହନ୍ତୁ ଦେଖି ସହରର କେତେଜଣ ଲୋକ ବାହାରକୁ ଗଲାବେଳେ ପୋଷାକପତ୍ରରୁ ଗୋଟାଏ ଅଧେ ପିନ୍ଧିବାକୁ ଭୁଲିଯାନ୍ତି ? ଶହକରେ ଜଣେ ନୁହେଁ, ବୋଧହୁଏ ଦଶ ହଜାରରେ ଜଣେ ନୁହେଁ । ପୁଣି କହନ୍ତୁ ଦେଖି ଘରୁ ବାହାରି ଗଲାବେଳେ କେତେଜଣ ସାମ୍ନା ଦରଜାଟା ବନ୍ଦ କରିବାକୁ ଭୁଲିଯାନ୍ତି ? ତାଙ୍କ ସଂଖ୍ୟା ବି ନିଶ୍ଚୟ ଯାଠାରୁ ବେଶୀହୋଇ ନ ଥିବ । ଏମିତି ଦିନଯାକ ଚାଲେ । ପ୍ରାୟ ପ୍ରତ୍ୟେକ ଠିକ୍ ସମୟରେ ପ୍ରତିଟି କାମ କରିବାକୁ ମୋଟେ ଭୁଲନ୍ତି ନାହିଁ । ଅବଶେଷରେ ଶୋଇବା ବେଳ ଆସିଯାଏ ଏବଂ ସାଧାରଣ ଲୋକଟି ମଧ୍ୟ ଉପର ମହଲାକୁ ଶୋଇବାକୁ ଗଲାବେଳେ ସିଡ଼ି ଘରର ଆଲୁଅଟାକୁ ଲିଭାଇବାକୁ ଭୁଲେନାହିଁ ।

ଏ କଥା ଅବଶ୍ୟ ମୁଁ ମାନୁଛି କେତେଗୁଡ଼ାଏ ବିଷୟ ଅଛି ଯହିଁରେ ଆମ ମନ ନିର୍ଭୁଲ୍ ଭାବରେ କାମ କରି ପାରେ ନାହିଁ । ମୁଁ ଭାବୁଛି କେବଳ ସେହି ଲୋକଟି ଡାକ୍ତରଙ୍କ ବ୍ୟବସ୍ଥାପତ୍ର ଅନୁଯାୟୀ ଠିକ୍ ସମୟରେ ଔଷଧ ଖାଇପାରେ ଯେ କି କଡ଼ାକଡ଼ି ନିୟମ ଶୃଙ୍ଖଳାରେ ଜୀବନକୁ

ବାନ୍ଧି ପାରିଛି । ଆଶ୍ଚର୍ଯ୍ୟ ଲାଗେ କିମିତି ଔଷଧ ଖାଇବା ପରି ସହଜ କଥାଟା ଆମେ ମନେ ପକାଇପାରୁ ନାହିଁ । କାଳେ ଆମେ ଭୁଲିଯିବୁଁ ସେଥିପାଇଁ ଖାଇବା ପୂର୍ବରୁ ପରେ ବା ମଝିରେ ଔଷଧ ସେବନର ବ୍ୟବସ୍ଥା ଥାଏ । ଯିମିତି କି ଭୋଜନ ସହିତ ଔଷଧ କଥା ମନେ ପଡ଼ିବ; କିନ୍ତୁ କି ଆଶ୍ଚର୍ଯ୍ୟ କଥା ! କେତେଜଣ ମହାତ୍ମା ବା ନୀତି ରାକ୍ଷସଙ୍କୁ ଛାଡ଼ି ଖୁବ୍ ଅଳ୍ପ ଲୋକ ଯଥାସମୟରେ ଔଷଧ ଖାଇପାରନ୍ତି । କେତେକ ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ଆମେ ସେଇ ସେଇ କଥା ଭୁଲିଯାଉଁ, ଯାହା ଆମେ ଭୁଲିବାକୁ ଚାହୁଁ ଏବଂ ଔଷଧପତ୍ର ପ୍ରତି ଆମର ସ୍ୱାଭାବିକ ବିତୃଷ୍ଣା ଥିବାରୁ ଯଥା ସମୟରେ ବଡ଼ିବଟିକା ଖାଇବାକୁ ଆମର ମନେପଡ଼େ ନାହିଁ । ଏକଥା ଯଦି ସତ ତେବେ ମୁଁ କିମିତି ବୁଝିବି ଯେ ଆଗ୍ରହ ବା ଶ୍ରଦ୍ଧା ନ ଥାଇ ଲୋକେ ଔଷଧ ଖାଇବାକୁ ଭୁଲି ଗଲାପରି ମୁଁ ଜୀବନଯାକ ଔଷଧପାତିର ପରମ ଭକ୍ତ ହୋଇ ମଧ୍ୟ ତାଙ୍କ ପରି ଔଷଧ ସେବନ କରିବାକୁ ଭୁଲି ଯାଇଛି ? ସର୍ବରୋଗହର ବହୁ ବିଜ୍ଞାପିତ ମହୌଷଧିର ଉଜ୍ଜ୍ୱଳ ଭବିଷ୍ୟତ୍ ଉପଲବ୍ଧିରେ ମୁଁ ଆନନ୍ଦ–ବିଭୋର ହୁଏ । ତଥାପି ଏ ନୂତନ ଆଶ୍ଚର୍ଯ୍ୟ ମହୌଷଧିଟି ମୋ ପକେଟରେ ଥିଲେ ମଧ୍ୟ ଗିଳିବା ସମୟ ପହୁଞ୍ଚିଲାବେଳକୁ ମୁଁ ତା' କଥା ଏକାବେଳକେ ଭୁଲି ଯାଇଥାଏଁ । ଆମେ ଯେଉଁ ଔଷଧଟି ଖାଇବାକୁ ଭୁଲିଯାଉଁ ସେଇଥିରୁ ଔଷଧ – ପ୍ରସ୍ତୁତକାରକମାନେ ଲକ୍ଷପତି କୋଟିପତି ହୁଅନ୍ତି ।

ଆମ ମନ ଯେତେବେଳେ କଥା ଭୁଲିଯାଏ ସେ ଭିତରେ ଅତି ସାଧାରଣ ମାମୁଲି ହେଲା ଚିଠିପତ୍ର ପକାଇବା । ଏଇ ଚିଠିପତ୍ର ପକାଇବା କାମଟି ଭୁଲିଯିବା ଲୋକଙ୍କ ସଂଖ୍ୟା ଏତେ ଅଧିକ ଯେ ମୋ ପାଖରୁ ବିଦାୟ ନେଇ ଯାଇଥିବା କୌଣସି ବନ୍ଧୁଙ୍କ ହାତକୁ ଜରୁରୀ ଦରକାରୀ ଚିଠିଟାଏ ବଢ଼ାଇଦେବାପାଇଁ ମୁଁ କୁଣ୍ଠିତ । ତାଙ୍କ ସ୍ମରଣ ଶକ୍ତି ଉପରେ ମୋର ଆସ୍ଥା ଏତେ କମ୍ ଯେ ଚିଠିଟି ତାଙ୍କ ହାତରେ ଦେବା ପୂର୍ବରୁ ତାଙ୍କୁ ହଲପ କରାଏ । ମୋ ନିଜ କଥା କହିଲେ ଏତିକି କହିବି ଯେ ଯେଉଁ ଲୋକ ମୋତେ ଚିଠିଟାଏ ପକାଇବାକୁ ଦେବ ତା'ର ମଣିଷ ଚରିତ୍ରର ବିଚାରଶକ୍ତି ବଡ଼ ଦୁର୍ବଳ । ଚିଠିଟା ହାତରେ ଧରି ଚାଲିଥିଲେ ବି ପ୍ରଥମ ଚିଠିବାକ୍ସଟା ପାରହୋଇ ଗଲେ ଯାଇ ମୋର ଚିଠିଟା କଥା ମନେ ପଡ଼େ ଓ ନିଜକୁ କହେ 'ଓହୋ ! ଚିଠିଟି ସେଠି ପକାଇବା ଉଚିତ୍ ଥିଲା ।'' ହାତରେ ଧରିଧରି ଥକିଗଲେ ନିରାପତ୍ତାଲାଗି ତାକୁ ଗୋଟାଏ ପକେଟରେ ପୂରାଇ ଦିଏଁ ଏବଂ ଚିଠିଟି କଥା ଏକାବେଳକେ ଭୁଲିଯାଏଁ । ଚିଠିର ରୋମାଞ୍ଚକର ଭ୍ରମଣକାହାଣୀ ସେତିକିରେ ଶେଷ ହୁଏ । ଦିନ ଆସେ ଯେବେ ପରିସ୍ଥିତିର ତାଡ଼ନାରେ ନାନା ଅଡୁଆ ତଡୁଆ ପ୍ରଶ୍ନର ସମ୍ମୁଖୀନ ହୋଇ ଅପରାଧର ସେଇ ମୂକ ସାକ୍ଷୀ ଚିଠିଟିକୁ ପକେଟରୁ ବାହାର କରିବାକୁ ବାଧ୍ୟ ହୁଏ । ଆପଣ କହିପାରନ୍ତି ଅପରର ଚିଠିରେ ମୋର କୌଣସି ସ୍ୱାର୍ଥ ନ ଥିବାରୁ ଭୁଲିଗଲି ବୋଲି । ଭୁଲିଯିବାର ଏହା ଯଥାର୍ଥ ସଫେଇ ନୁହେଁ । କାରଣ ଯେଉଁ ଅଳ୍ପ କେତେ ଖଣ୍ଡି ଚିଠି ଅତି କଷ୍ଟରେ ମନେ ପକାଇ ମୁଁ ଲେଖେଁ ସେ ମଧ୍ୟରୁ ବି ଗୋଟାଏ ଅଧେ ପକାଇବାକୁ ଭୁଲିଯାଏଁ ।

ଟ୍ରେନ୍ ବା ଟେକ୍‌ସିରେ ଜିନିଷପତ୍ର ଛାଡ଼ି ଆସିବାର ଦୋଷଦୁର୍ଗଣ ମୋର ପ୍ରାୟ ନାହିଁ। କେବଳ ବହି ଓ ବାଡ଼ି ଛଡ଼ା ଆଉସବୁ ଜିନିଷକୁ ମୁଁ ମନେ ପକାଏଁ। ବେଳେବେଳେ ବହିଗୁଡ଼ାକ ବି ମୋର ମନେ ପଡ଼ନ୍ତି; କିନ୍ତୁ ବାଡ଼ିଗୁଡ଼ାକ ମୋ ପାଖରେ ମୋଟେ ରହନ୍ତି ନାହିଁ। ସେଗୁଡ଼ାକ ପ୍ରତି ମୋର କିମିତି ଗୋଟାଏ ମରହଟୀ ଶ୍ରଦ୍ଧା ରହିଛି ଓ ଯେବେତେବେ ମୁଁ ବାଡ଼ି କିଣେ; କିନ୍ତୁ ଥରେ ଯଦି ମୁଁ କେଉଁ ବନ୍ଧୁଘରକୁ ବୁଲିବାକୁ ଯାଇଛି, ତେବେ ମୋ ବାଡ଼ିଟି ହଜା ରାଇଜକୁ ଗଲାବୋଲି ଜାଣ। ଛତାଟାଏ ସାଙ୍ଗରେ ନେବାକୁ ମୋର ସାହସ ନାହିଁ। କାରଣ ଛତା ନେଲେ ତାହା ହଜିବା ଭୟ ବରାବର ଥାଏ। ଏମିତି କେଉଁ ଲୋକର ଜିଭରେ ହାଡ଼ ଅଛି ଯେ କି ଶପଥ କରି କହିପାରିବ ଯେ ଛତାଟାଏ ନ ହଜାଇ ଜୀବନ କଟାଇ ପାରିଛି ?

ଏକଥା ଅବଶ୍ୟ ସତ ଯେ ଆମ ଭିତରୁ ଖୁବ୍ କମ୍ ଲୋକ ଯିବାଆସିବାରେ ବହୁମୂଲ୍ୟବାନ୍ ଚିଜ ଏଇ ପାଶୋରାଗୁଣ ଯୋଗୁଁ ହରାଇଛନ୍ତି। ସାଧାରଣ ଲୋକଟି ଯାତ୍ରାଶେଷରେ ଗନ୍ତବ୍ୟସ୍ଥାନରେ ପେଡ଼ିପେଟରା ନିରାପଦ ରଖି ପହଞ୍ଚେ। ଗୋଟାଏ ବର୍ଷରେ ଟ୍ରେନ୍‌ରେ ଯେତେ ଯେତେ ଜିନିଷପତ୍ର ହଜିଛି ତା'ର ତାଲିକାରୁ ଜଣାଯାଏ ଯେ ବୟସ୍କଙ୍କ ଅପେକ୍ଷା ଯୁବକମାନେ ବେଶୀ ଭୁଲନ୍ତି ଏବଂ ଖେଳୁଆଡ଼ମାନଙ୍କ ସ୍ମୃତିଶକ୍ତି ତାଙ୍କ ଗମ୍ଭୀରମନା ସାଙ୍ଗସାଥୀଙ୍କଠାରୁ ଅନେକ କମ୍। ଉଦାହରଣସ୍ୱରୂପ ଗୁଡ଼ାଏ ଫୁଟବଲ ଏବଂ କ୍ରିକେଟ ବେଟ୍ ତରୁଣ ଖେଳୁଆଡ଼ମାନେ ଟ୍ରେନ୍‌ରୁ ନେବାକୁ ଭୁଲିଯାଇଛନ୍ତି। କାହିଁକି ଏସବୁ ଜିନିଷ ସେମାନେ ଛାଡ଼ି ଯାଇଛନ୍ତି ତାହା ଜାଣିବା ଅତି ସହଜ। ପିଲାଏ ଯେତେବେଳେ ଘରକୁ ଫେରୁଥାନ୍ତି ସେତେବେଳେ ତାଙ୍କ ମନ ଖେଳ ପଡ଼ିଆର ଛନ୍ଦରେ ଭରପୁର ଥାଏ। ଯେତେବେଳେ ସେମାନେ ବିଜୟ କଥା ମନେ କରନ୍ତି ସେତେବେଳେ ସେମାନଙ୍କ ମୁଣ୍ଡ ସ୍ୱର୍ଗରେ ଲାଗେ; ପୁଣି ପରାଜୟ କଥା ମନେ ପଡ଼ିଲେ ତାଙ୍କ ହୃଦୟ ଯୋତାଭିତରେ ଥାଏ। ସେତେବେଳେ ସେମାନେ ବାହାର ଦୁନିଆଁ ପ୍ରତି ଅବହିତ ନ ଥାନ୍ତି। ଖେଳପଡ଼ିଆର ସ୍ମୃତି ତାଙ୍କ ମନକୁ ଏମିତି ଜାବୁଡ଼ି ଧରିଥାଏ ଯେ ଟ୍ରେନ୍‌ରୁ ଓହ୍ଲାଇଲାବେଳେ ମାମୁଲି ଦୁନିଆଁର ସାମାନ୍ୟ ପାର୍ଥିବ ଚିଜ ବେଟ୍ ବା ବଲ୍‌ଟାଏ – ମନେ ପକାଇବାର ଅବକାଶ ଦିଏ ନାହିଁ। ଦିନର ଅବଶିଷ୍ଟ ସମୟ ବି ସେମାନେ ସେହି ସ୍ୱପ୍ନରାଜ୍ୟରେ ବିଚରଣ କରନ୍ତି। ସେହି କାରଣରୁ ବନଶୀଆମାନେ ବି ବନଶୀ ନେବାକୁ ଭୁଲିଯାନ୍ତି। ମୁଁ ବୁଝିପାରେ ନାହିଁ କାହିଁକି ଲୋକେ ବନଶୀଆଙ୍କୁ ଖୁବ୍ କଳ୍ପନାପ୍ରବଣ ବୋଲି କହିଥାଆନ୍ତି। ଦିନଯାକ ବନଶୀ ପକାଇ ଘରକୁ ଫେରିଲାବେଳେ ନାନା ଉଦ୍ଭଟ ଗାଲୁଗଳ୍ପ ଫାନ୍ଦିଫାନ୍ଦି ଆସୁଥିବାରୁ ସେମାନଙ୍କ ପକ୍ଷରେ ସାମାନ୍ୟ ଅନ୍ୟମନସ୍କ ହେବା କିଛି ବିଚିତ୍ର କଥା ନୁହେଁ। ବାସ୍ତବ ଦୁନିଆଁର ବନଶୀକୁ ଭୁଲି ସେମାନେ କଳ୍ପଲୋକର ବନଶୀର ଦିବାସ୍ୱପ୍ନ ଦେଖନ୍ତି। ସେମାନଙ୍କର ଯଦି ମତି ଭ୍ରମ ଘଟେ ତେବେ ତାଙ୍କ ପକ୍ଷରେ ଏହା ଏକ ଗୌରବର କଥା। କାରଣ ସେଥିରୁ ପ୍ରମାଣିତ ହେଉଛି ଯେ ଦିନଯାକର ମଉଜ ଉପଭୋଗ କରିବାର

ତୀବ୍ର ଶକ୍ତି ସେମାନଙ୍କର ଅଛି । କବି ଯିମିତି ଚିଠି ପକାଇବାକୁ ଭୁଲିଯାଏ, ବନଶୀଆ ବି ସିମିତି ବନଶୀ କଥା ଭୁଲିଯାଏ, କାରଣ ଉଭୟେ ସମଧିକ ଗୌରବମୟ ଜୀବନର ଚିନ୍ତାରେ ନିମଗ୍ନ ଥାଆନ୍ତି । ସେମାନଙ୍କ ପକ୍ଷରେ ଏତାଦୃଶୀ ଅନ୍ୟମନସ୍କତାମାଏକ ସୁଗୁଣ ବୋଲି ମୋର ଧାରଣା । ଯେଉଁ ଲୋକ ଅନ୍ୟମନସ୍କ ସେ ହୁଏତ ଜୀବନର ଉପଯୁକ୍ତ ସଦ୍‌ବ୍ୟବହାର କରୁଛି । ତେଣୁ ସାମାନ୍ୟ ପାର୍ଥିବ ବିଷୟ ଚିନ୍ତା କରିବାକୁ ତା'ର ବେଳ କାହିଁ ? କଲରିଜ୍ ବା ସକ୍ରେଟିସ୍‌ଙ୍କୁ କିଏ ଭଲା ଚିଠିଟାଏ ପକାଇ ଦେବାକୁ ଅନୁରୋଧ କରନ୍ତା ? ଏସବୁ ଛୋଟ ଛୋଟ କଥାର ବହୁ ଊର୍ଦ୍ଧ୍ୱରେ ସେମାନେ ।

ଉତ୍କୃଷ୍ଟ ସ୍ମରଣଶକ୍ତି ଧାରଣା କରିବା ଭଲ କି ମନ୍ଦ ଏ ବିଷୟରେ ଅନେକ ଆଲୋଚିତ ହୋଇଛି । ଯାହାଙ୍କର ସ୍ମରଣ ଶକ୍ତି ଊଣା ସେମାନେ ଅନେକ ସମୟରେ ପ୍ରମାଣ କରିବାକୁ ଚାହାନ୍ତି ଯେ ସ୍ମୃତି ଶକ୍ତିଥିବା ଲୋକଙ୍କଠାରୁ ସେମାନଙ୍କ ସ୍ଥାନ ଉଚ୍ଚରେ; ତାଙ୍କ ମତରେ ଯାହାଙ୍କ ମନ ନିର୍ଭୁଲ୍ ଯନ୍ତ୍ର ପରି କାମ କରେ ସେଗୁଡ଼ାକ ବୁଦ୍ଧିହୀନ । ପ୍ରମାଣସ୍ୱରୂପ ସେମାନେ ଉଦାହରଣ ଦିଅନ୍ତି ଯେ ପ୍ରକୃତ ସ୍ମରଣଶକ୍ତି ଥିବା ବାଳକ ବା ବୃଦ୍ଧ ପ୍ରାୟଶଃ ବୁଦ୍ଧିହୀନ । ମୋର ଧାରଣା କିନ୍ତୁ ଅନ୍ୟପ୍ରକାର । ମୁଁ ଭାବେ ପ୍ରସିଦ୍ଧ ଲେଖକ, ସଙ୍ଗୀତ – ରଚୟିତା ଓ ସ୍ୱରକାର ମାନେ ଅସାଧାରଣ ସ୍ମୃତିଶକ୍ତିର ଅଧିକାରୀ । ମୁଁ ଯେତେ ଯେତେ କବିଙ୍କୁ ଜାଣେ ସେମାନଙ୍କ ସ୍ମରଣଶକ୍ତି ବଜାରରେ କମ୍ପାନୀର ଅଂଶ ବିକ୍ରୀ କରୁଥିବା ଦଲାଲଙ୍କ ସ୍ମରଣଶକ୍ତି ଅପେକ୍ଷା ଖୁବ୍ ବେଶୀ । ଏଇ ସ୍ମୃତିଶକ୍ତିହିଁ ତାଙ୍କ କଳାର ଅର୍ଦ୍ଧାଂଶ । ଅନ୍ୟ ପକ୍ଷରେ ରାଜନୀତିଜ୍ଞମାନଙ୍କ ସ୍ମୃତିଶକ୍ତି ଅସାଧାରଣ ନିମ୍ନ ଶ୍ରେଣୀର । ଯେବେ ଦୁଇଜଣ ରାଜନୀତିଜ୍ଞଙ୍କୁ ସେଇ ଏକା ଘଟଣା–ଧରନ୍ତୁ କୌଣସି ଏକ ମନ୍ତ୍ରୀସଭାର–ମନେ ପକାଇବାକୁ କୁହାଯାଏ ତେବେ ପ୍ରତ୍ୟେକେ ଅପରର ବିବରଣୀକୁ ଭ୍ରମପ୍ରମାଦପୂର୍ଣ୍ଣ ବୋଲି ମନ୍ତବ୍ୟ ନେଇ କହିବେ "ତାଙ୍କୁ କାହିଁକି ପଚାରୁଛନ୍ତି ? ତାଙ୍କ ମନ ଚାଲୁଣିପରି, ତା' ଛଡ଼ା ସତକଥାକୁ ମିଚି କରିବାରେସେ ଜଣେ ରଥୀ । ତାହା ମିଛୁଆ ରାଜନୀତିଜ୍ଞମାନଙ୍କର ବକ୍ତୃତା ଓ ଆତ୍ମଚରିତର ତଥ୍ୟର ସତ୍ୟତା ଉପରେ ବାରମ୍ବାର ଯେପରି ପ୍ରଶ୍ନ ଉତ୍‌ଥାପିତ ହୁଏ ସେଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ଦୁନିଆରେ ଏ ଯାକେ ଆଦର୍ଶ ରାଜନୀତିଜ୍ଞ ଆବିର୍ଭାବ ହୋଇନାହିଁ, ଯେଉଁମାନେ କି ବଡ଼ ବଡ଼ କବିମାନଙ୍କ ପରି ଏକାଧାରରେ ଅସାମାନ୍ୟ ଧୀଶକ୍ତି ଓ ସ୍ମୃତିଶକ୍ତିର ଅଧିକାରୀ ହୋଇଥିବେ ।

ଏସବୁ କଥା ସାଙ୍ଗକୁ ଆମକୁ ସବୁବେଳେ ମନେରଖିବାକୁ ହେବ ଯେ – ଭଲ ସ୍ମରଣଶକ୍ତି ଏତେ ସାଧାରଣ ଯେ ଯଦି କାହାରି ତାହା ନଥାଏ ତେବେ ତାକୁ ଆଡ଼୍‌ବାୟା ବୋଲି କହିଥାଉ । ମୁଁ ଏ ପ୍ରସଙ୍ଗରେ ଶୁଣିଥିବା ଜେନୈକ ପିତାଙ୍କ କଥା ଅବତାରଣ କରୁଛି । ସେ ଭଦ୍ରଲୋକ ଦିନେ କୁଆଡ଼େ ତାଙ୍କ ପିଲାଙ୍କୁ ଠେଲା ଗାଡ଼ିରେ ବୁଲାଇବାକୁ ନେଇଥିଲେ । ଯାଇଁ ଯାଇଁ ପାଗଟା ଏତେ ଉଜ୍ଜ୍ୱଳ ଓ ବଢ଼ିଆ ହେଲା ଯେ ଅଟକି ଯାଇ ରାସ୍ତା କରର ଗୋଟାଏ ହୋଟେଲ ଭିତରକୁ ପଶି ଗ୍ଲାସେ ମଦ ପିଇବାର ଲୋଭ ସେ ସମ୍ବରଣ କରି

ପାରିଲେ ନାହିଁ । ହୋଟେଲ ବାହାରେ ପିଲାଙ୍କୁ ଗାଡ଼ିରେ ଥୋଇ ସେ ମଦଦୋକାନର ଦୁଆରଦେଇ ଅନ୍ତର୍ହିତ ହୋଇଗଲେ । ଦଣ୍ଡେ ପରେ ବଜାରକୁ ସୌଦା କରିବାକୁ ଆସି ତାଙ୍କ ସ୍ତ୍ରୀ ଦୈବାତ୍ ସେଇ ହୋଟେଲ ଆଗ ଦେଇ ଯାଉ ଯାଉ ଦେଖିଲେ ଯେ ତାଙ୍କ ପିଲା ଠେଲା ଗାଡ଼ିରେ ଶୋଇଛି । ସ୍ୱାମୀଙ୍କ ଏ ବିଚିତ୍ର ଆଚରଣରେ କ୍ରୋଧାନ୍ୱିତ ହୋଇ ତାଙ୍କୁ ପାଠଟାଏ ପଢ଼ାଇବାର ତଦ୍ଦଣ୍ଡେ ସଂକଳ୍ପ କଲେ । ଗାଡ଼ିକୁ ଗଡ଼ାଇ ଗଡ଼ାଇ ନେଉଥିଲାବେଳେ ସେ ମନେ ମନେ କଳ୍ପନା କରୁଥାନ୍ତି ତାଙ୍କ ସ୍ୱାମୀଙ୍କ ଦୟନୀୟ ଦଶା; ହୋଟେଲରୁ ବାହାରି ଆସି ଯେତେବେଳେ ଦେଖିବେ ଯେ ପିଲା ନାହିଁ ସେତେବେଳେ ତାଙ୍କ ଅବସ୍ଥା କ'ଣ ହେବ ଓ ସେ କିପରି ଶଙ୍କାକୁଳ ହେବେ । ସେ ଘରେ ପହଞ୍ଚିଲେ ଏବଂ କ୍ରୋଧ-କୌତୂହଳ ମିଶା ଚକ୍ଷୁରେ ଅନାଇ ରହିଲେ "କେତେବେଳେ ସ୍ୱାମୀ ମୁହଁ ଫିକା କରି ଓଠ ଥରାଇ ଆସି କହିବେ ପିଲାଟା ଚୋରି ହୋଇଗଲା ।" କିନ୍ତୁ ତାଙ୍କ ବିରକ୍ତି କେତେଦୂର ଯାଇଥିବ ଅନୁମାନ କରନ୍ତୁ, ଯେତେବେଳେ ତାଙ୍କ ସ୍ୱାମୀ ହସି ହସି ନିର୍ବିକଳ୍ପଚିତ୍ତରେ ଘରଭିତରକୁ ପଶି ଆସି ପଚାରିଲେ, "କିଗୋ ! ଆଜି କ'ଣ ଖାଇବାର କରିଛ ?" ନିଜ ପିଲା ଓ ତାକୁ ବୁଲାଇ ନେଇ ଯାଇଥିବା କଥା ସେ ଏକାବେଳକେ ମନରୁ ପାସୋରି ଦେଇଥିଲେ । ଏ ପ୍ରକାର ଅନ୍ୟମନସ୍କତା ଦାର୍ଶନିକ ପଣ୍ଡିତସ୍ତରର ଲୋକଛଡ଼ା ଆଉ କାହା ପାଖରେ ଦେଖିବାକୁ ମିଳିବ ଭଲା ? ଭାଗ୍ୟ ଭଲ ଆମ ଭିତରୁ ଅନେକେ ଗଦ୍ୟମୟ ସ୍ମୃତିଶକ୍ତି ନେଇ ଜନ୍ମଗ୍ରହଣ କରିଛୁ; ନହେଲେ କୌଣସି ଆଧୁନିକ ସହରରେ ପରିବାର ବୋଲି ଗୋଟାଏ ଅନୁଷ୍ଠାନ ତିଷ୍ଠି ରହନ୍ତା ନାହିଁ ।



# ଦୁଗ୍‌ଧ ପୋଷ୍ୟ

ପଚିଶ ବର୍ଷ ବେଳେ ମୋର ପ୍ରଥମ ଦାନ୍ତଟି ପଡ଼ିଥିଲା, ଚାଳିଶ ବେଳକୁ ଅଧାଅଧି ଶେଷ । ମୋ ପିଲାଙ୍କର ମଧ୍ୟ ଆଜିରୁ ଦାନ୍ତ ଗଣ୍ଡଗୋଳ ଆରମ୍ଭ ହେଲାଣି । ରବିବାର ଦିନ ସ୍କୁଲ ପଢୁଆ ପିଲା ଦିହିଙ୍କ ଦାନ୍ତର କଣା ସବୁ ଡାକ୍ତର ପଟ୍ଟନାୟକଙ୍କ କ୍ଲିନିକ୍‌ରେ ପୂରାଇ ଆଣିଥିଲି ; ଆଜି ଝିଅର ଦାନ୍ତ କଟକଟ ଧକଧକ ହେଉଛି । ଏମିତି ଯେବେ ଚାଲେ ତେବେ ଅଣନାତିମାନଙ୍କର ଦଶବର୍ଷ ବେଳକୁ ଦାନ୍ତ ପଡ଼ିବାକୁ ଆରମ୍ଭ କରିବ, ପଣନାତିଙ୍କ ହୁଏତ ଦାନ୍ତ ମୋଟେ ଉଠିବ ନାହିଁ ।

ତେବେ କ'ଣ ଦନ୍ତରୋଗ ବଂଶଗତ ? ବଂଶଧରମାନେ ପୁରୁଷକୁ ପୁରୁଷ ଦୁର୍ବଳରୁ ଦୁର୍ବଳତର ଦାନ୍ତର ଅଧିକାରୀ ହେଉଥିବେ ? ନା, ନା, ତ କେମିତି ହେବ ? ପାନ ବୋଳରେ କୋଇଲା ପରି ରଙ୍ଗ ହୋଇଥିଲେ ବି ଜେଜିବାପାଙ୍କ ଦାନ୍ତ ସତୁରି ବର୍ଷ ପର୍ଯ୍ୟନ୍ତ ଭଲଥିଲା; ସେ ବୟସରେ ବି ସେ ଚୁଡ଼ା, ମକା,ଚଣା ଚୋବାଇ ଖାଇ ପାରୁଥିଲେ । ତାଙ୍କ ବାପା କୁଆଡ଼େ ତେୟାନବେ ବର୍ଷରେ ଅଧାଅଧି ଦାନ୍ତ ନେଇ ଇହଧାମ ତ୍ୟାଗ କରିଥିଲେ । ତେବେ ଦାନ୍ତରୋଗ ବଂଶଗତ ବୋଲି କହିବା କିମିତି ?

ମୋଫସଲ ଲୋକକୁ ପଚାରନ୍ତୁ ସେମାନେ କହିବେ ଯେ ପୂର୍ବେ ଲୋକେ ଦାନ୍ତ ବା ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗର ଉଚିତ ସଦ୍‌ବ୍ୟବହାର କରୁଥିଲେ ବୋଲି ସେମାନେ ଆଜୀବନ ସୁସ୍ଥ ଥିଲେ ଓ ସେମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ଦୁର୍ବଳତା ବା ବୈକଲ୍ୟ ନଥିଲା । ତାଙ୍କ ଦାନ୍ତରେ ହୁଏତ ବିନକା, କଲଗେଟ୍, କଲିନସ ବା ଫରାନ୍‌ସର ବହୁବିଜ୍ଞାପିତ ଦାନ୍ତର ଧଳେଇ ରଙ୍ଗ ନଥିଲା । ମାତ୍ର ଟାଣୁଆ ଖାଦ୍ୟ ଚୋବାଇବା ପାଇଁ ଯେ ସେଗୁଡ଼ିକ ଅତୀବ ଉପଯୁକ୍ତ ଥିଲା ଏଥିରେ ସନ୍ଦେହ ନାହିଁ । ଅଙ୍ଗରା,ଚୁଲିମାଟି, ପୋଡ଼ା ଟିକିଆ ଅଥବା ଲୁଣ ସୋରିଷ ତେଲ ଦେଇ ମୂଳୀ ଶାଳକାଠିରେ ମାଜି ସେମାନଙ୍କ ଦାନ୍ତ ଗୁଡ଼ିକୁ ଏମିତି କାର୍ଯ୍ୟକ୍ଷମ ଓ ବଜ୍ରସଦୃଶ ଟାଣ କରି ରଖିଥିଲେ ଯେ ଗୋଟା ଗୁଆ ସୁଦ୍ଧା ଭାଙ୍ଗି ଚୂନା କରି ଦେଉଥିଲେ । ତିନ୍ତୁଳି ବା କଞ୍ଚା ଆମ୍ବ ଚୋବାଇ ଖାଇଲେ ମଧ୍ୟ ତାଙ୍କ ଦାନ୍ତ ସିରିସିରି ହେଉ ନଥିଲା ।

ଆଦିମ ଜାତିମାନେ ମଧ୍ୟ ଦରପୋଡ଼ା ଦରସିଝା ମାଂସ ଖାଇ ପାରୁଥିଲେ ଏବଂ ଦାନ୍ତ ରୋଗ କ'ଣ ତାଙ୍କୁ ଜଣାନଥିଲା । ଏବେ କିନ୍ତୁ ଆଧୁନିକ ଯୁଗର ଦୁଗ୍‌ଧପୋଷ୍ୟ ସଭ୍ୟ ମଣିଷ ତରବରରେ ଅତି ସିଦ୍ଧ ନରମ, କୋମଳ ବା ତରଳ ସୁଆଦିଆ ଖାଦ୍ୟ ଗିଳି ଦେଉଥିବାରୁ

କ୍ରମେ ଦନ୍ତହୀନ ପ୍ରାଣୀରେ ପରିଣତ ହେବାକୁ ବସିଲାଣି ଏବଂ ଯେଉଁ ଏପେଣ୍ଡିସାଇଟିସ୍, କେନ୍‌ସାର(ପରିଶିଷ୍ଟ ଅନ୍ତର ବ୍ୟାଧି ଓ କର୍କଟ ରୋଗ) ରୋଗ ବଣୁଆଁ ଲୋକେ କେବେ ଜାଣି ନଥିଲେ ତାହା ଭିଟାମିନ୍ ଯୁଗର ସଭ୍ୟ ମାନବ ପକ୍ଷରେ ଏକ ଆତଙ୍କ ହୋଇ ଛିଡ଼ା ହେଲାଣି ।

ସୁଆଦିଆ ଟଫି ଚକୋଲେଟ ସଭ୍ୟତା ମଣିଷକୁ କ୍ରମେ କିପରି ପଙ୍ଗୁ, ଅକାମିକା, ରୁଗ୍ଣ ଅବଶ ଓ ଦୁର୍ବଳ କରି ଦେଉଛି ତହିଁର ଗୋଟିଏ ମାତ୍ର ନିଦର୍ଶନ ଦିଆଗଲା । ହୁଏତ ଅନେକ ଦେଶରେ ଏ ସଭ୍ୟତାର ଶତବର୍ଷ ମଧ୍ୟ ପୂର୍ତ୍ତି ହୋଇ ନାହିଁ । ମାତ୍ର କେତେ ବର୍ଷ ଆଗରୁ ଘରଣୀ ଓ ମାଆମାନେ ନିଜେ ନିଜେ ଢିଙ୍କିରେ ଚୂନା କୁଟି ପିଠା କରୁଥିଲେ, ଶିଳରେ ବିରି ବାଟି ଖସା ବଡ଼ି ଦେଉଥିଲେ ଏବଂ ନାନା କିସମର ଆମ୍ବ, ଲେମ୍ବୁ, କୋଳି, ତିନ୍ତୁଳି ଆଚାର କରି ବର୍ଷକ ଘର ଖରଚ ପାଇଁ ରଖି ଦେଉଥିଲେ ଏବଂ ଘର ତିଆରି ଚିଜ ବୋଲି ଗର୍ବ କରି ସାଇ ପଡ଼ିଶା ବନ୍ଧୁବାନ୍ଧବଙ୍କୁ ବାଣ୍ଟୁଥିଲେ । ଏବେ କିନ୍ତୁ ଅନେକ ଘରର ବୋହୂ ଝିଅ ପିଠା ଆଚାର, ବଡ଼ି ତରକାରୀ କିଛି କରି ଜାଣନ୍ତି ନାହିଁ । ଯିଏ ବା ଜାଣେ ତାକୁ ସେମାନେ ମୋଫସଲୀ ବୋଲି ତାଚ୍ଛଲ୍ୟ କରନ୍ତି । ଏବେ ବଜାରରୁ ଡବା ଡବା ବିସ୍କୁଟ୍, ପେକେଟ ପେକେଟ ପାମଡ଼ ବୋତଲ ବୋତଲ ଆଚାର ଏପରିକି ଟିଣ ଟିଣ ରନ୍ଧାମାଛ କିଣା ହୋଇ ଘରମାନଙ୍କୁ ଆସୁଛି । ପୂର୍ବେ ଯେଉଁ ବାଟୋଇଟି ଅହଲ୍ୟାବାଈ ଅମଳର ବୁଢ଼ା ଗଛ ମୂଳରେ ରୋଷେଇ କରି ଖାଉଥିଲା ଏବେ ସେ ହୋଟେଲରେ ଖାଇ ଦେଉଛି ।

କଳକବଜା ଯନ୍ତ୍ରପାତି ଆମକୁ କିମିତି ନିଷ୍କ୍ରିୟ ଓ ପରମୁଖାପେକ୍ଷୀ କରି ଦେଉଛି ତା'ର ପ୍ରମାଣ ସର୍ବତ୍ର ସୁଲଭ । ଆଫ୍ରିକା ଜଙ୍ଗଲରେ ଯେବେ ଝଡ଼ ତୋଫାନ ହୋଇ ବା ଅନ୍ୟ କୌଣସି ପ୍ରାକୃତିକ ବିପର୍ଯ୍ୟୟ ଘଟି ଘର ଛପର ଉଡ଼ି ଯାଉଥିଲା ସେତେବେଳେ ବାସିନ୍ଦାମାନେ ନିଜେ ନିଜେ ଲାଗିପଡ଼ି ଘଣ୍ଟାକ ଭିତରେ ଘର ପୁଣି ଛିଡ଼ା କରି ଦେଉଥିଲେ । ସରକାର ତାଙ୍କ ଘରତୋଳି ଦେବେ, ଖୁଆଇ ଦେବେ ବା ଚୂଳ କୁଣ୍ଡାଇ ଦେବେ ବୋଲି ସେମାନେ ଅପେକ୍ଷା କରୁ ନଥିଲେ । କିନ୍ତୁ ସଭ୍ୟ ଦେଶରେ ଯେବେ ନିଜ ଦୋଷରୁ ବା ଅସାବଧାନତାରୁ ଘର ପୋଡ଼ିଗଲା ତେବେ ଲୋକେ ଘର ଛପର ପାଇଁ ବର୍ଷ ବର୍ଷ ସରକାରୀ ସାହାଯ୍ୟ ଅପେକ୍ଷାରେ ନିଷ୍କ୍ରିୟ ହୋଇ ବସିଥାନ୍ତି; ପୂର୍ବେ ଯେପରି ପାଖ ପଡ଼ିଶା ବାଲ୍‌ଟି, ଟିଣ, ହାଣ୍ଡି ମାଠିଆ ଧରି ନିଆଁ ଲିଭାଇବା ପାଇଁ ତତ୍ପର ହୋଇ ବାହାରି ପଡୁଥିଲେ ଏବେ ସେମାନେ ତାହା ନ କରି ନିରୁପାୟ ହୋଇ ନିଆଁ ଲିଭାଳୀ ଦଳକୁ ଅପେକ୍ଷା କରି ଘର ପୋଡ଼ିର ଦୃଶ୍ୟ ଉପଭୋଗ କରନ୍ତି । ଏବେ ସହର ବା ଗାଁରେ ସେବାଦଳ ନାହିଁ । ରୋଗୀ ପାଇଁ ଏମ୍ବୁଲେନ୍‌ସକୁ ଅପେକ୍ଷା; ଅନାଥ ଶବସଂସ୍କାର ପାଇଁ ସରକାରୀ ମେହେନ୍ତର ଦଳର ଆବଶ୍ୟକ ।

ବୈଜ୍ଞାନିକ ସଭ୍ୟତା ଦିନକୁ ଦିନ ନୂଆ ଯନ୍ତ୍ରପାତି ଉଦ୍ଭାବନ କରି ଆମର ସମସ୍ତ କାମ କରି ଦେଉଛି ଓ ମଣିଷକୁ ପଙ୍ଗୁ ହେବାରେ ସାହାଯ୍ୟ କରୁଛି । ଦିନ ଥିଲା, ହସ୍ତଲିଖନ

ଏକ କଳା ବୋଲି ଧରାଯାଉଥିଲା ଏବଂ ଭଲ ଅକ୍ଷର ପାଇଁ ପରୀକ୍ଷାମାନଙ୍କରେ ସ୍ୱତନ୍ତ୍ର ନମ୍ବର ରଖାଯାଉଥିଲା । ମୁକ୍ତା ପରି ଅକ୍ଷର ଲେଖିବା ପାଠଶାଳାର ଛାତ୍ରମାନଙ୍କ ଆଦର୍ଶ ଥିଲା ଏବଂ ଅକ୍ଷମ ଛାତ୍ରର ଆଙ୍ଗୁଳି ଗଣ୍ଠି ମାଡ଼ରେ ଫୁଲି ଯାଉଥିଲା । ଲେଖନୀରେ ତାଳପତ୍ର ପୋଥିରେ ଗୋଲ ଗୋଲ ଅକ୍ଷର ଲେଖି ଲୋକେ ଆନନ୍ଦ ଓ ଗଉରବ ପାଉଥିଲେ । ଚାଉଳଟି ଏ ଦେହରେ ଛବି ବା ଗୀତଗୋବିନ୍ଦର ଶ୍ଳୋକ ଲେଖି ପ୍ରଦର୍ଶନୀରେ ରଖାଯାଉଥିଲା ଏବଂ ବିବୃଦ୍ଧିକାରୀ କାଚ ସାହାଯ୍ୟରେ ନିରୀକ୍ଷଣ କରି ଦର୍ଶକ ଯୁଗପତ୍ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇ କୁଶଳୀ କଳାକାରର ଭୂୟସୀ ପ୍ରଶଂସା କରୁଥିଲେ । ଏବେ ଟାଇପ୍‌ରାଇଟରର ବହୁଳ ପ୍ରଚଳନ ଏବଂ ବିଜ୍ଞାପନରେ କୁହାଯାଉଛି ''ଆପଣ ଆଉ କେତେ ଦିନ ନିଜ ହାତରେ ସେଇ ପୁରୁଣା ରୀତିରେ କାମ କରୁଥିବେ ?'' ଦିନ ଆସୁଛି ଯେବେ ସ୍କୁଲ କଲେଜରେ ପିଲାମାନେ ଟାଇପ୍‌ରାଇଟର ବ୍ୟବହାର କରିବେ ଏବଂ ହସ୍ତାକ୍ଷର ଗୋଟାଏ କଳା ବୋଲି ବିବେଚିତ ହେବନାହିଁ ଏବଂ ଆମ ଉତ୍ତରାଧିକାରୀମାନେ ନିଜ ହାତରେ ଦସ୍ତଖତ ମଧ୍ୟ କରି ପାରିବେ ନାହିଁ ।

ଦିନ ଥିଲା ଯେବେ ଭ୍ରମଣ ବା ଘୋଡ଼ାଚଢ଼ା ଲୋକଙ୍କୁ ଆନନ୍ଦ ଓ ପ୍ରଫୁଲ୍ଲତା ଦେଉଥିଲା ଏବଂ ବ୍ୟାୟାମ ସ୍ୱାସ୍ଥ୍ୟ ବୃଦ୍ଧିର କାରଣ ହେଉଥିଲା । କେତେ ବର୍ଷ ପୂର୍ବେ ରାସ୍ତାଘାଟ ସବାର ଓ ଯାତ୍ରୀ ପୂର୍ଣ୍ଣ ଥିଲା । ଯାତ୍ରୀ ସୁଆଙ୍ଗ, ତୀର୍ଥ ବାରୁଣୀକୁ ଲୋକେ ପଦବ୍ରଜରେ ଯାଉଥିଲେ । ଏପରିକି ପିଲାମାନେ ବଡ଼ବଡ଼ ଛୁଟିରେ ଦୂର ଦୂରାନ୍ତର ଘରକୁ ଚାଲି ଚାଲି ଯାଉଥିଲେ । ମୋ ଜେଜିବାପା ଚାଲି ଚାଲି ପୁରୀ ଓ ଗୟା ଯାଇଥିଲେ ଏବଂ ପୁରୀର ଶଙ୍ଖଟିଏ ଓ ଗୟାର ନାମାବଳିଟିଏ ଅଦ୍ୟାପି ତାଙ୍କ ତୀର୍ଥଯାତ୍ରାର ସ୍ମାରକୀ ହୋଇ ଆମ ଠାକୁର ଘରେ ଥୁଆ ହୋଇଛି । ଆମ ଗାଁରେ ସଙ୍ଗତି ସମ୍ପନ୍ନ ଅଶୀ ବର୍ଷର ଜନୈକ ବୃଦ୍ଧ ପ୍ରତିଦିନ ଆଠ ଦଶ ମାଇଲ ବା ତଦୂର୍ଦ୍ଧ୍ୱ ପଥ ଅତିକ୍ରମ କରି ଚୂଡ଼ା ଦହିକୁ ଯା'ନ୍ତି; ଘରେ ବସି ରହିବାକୁ ତାଙ୍କୁ ମୋଟେ ଭଲ ଲାଗେ ନାହିଁ । ଭ୍ରମଣର ସୁଆଦ ବା ଖୋଲା ହାୱାର ନିଶା ଆମର ନାହିଁ ।

ଲେଖା ଲେଖିରେ ଯିମିତି ପରିବର୍ତ୍ତନ ପଢ଼ାପଢ଼ିରେ ମଧ୍ୟ ସେହିପରି । ପୁରୁଣା ନଥି ପୋଥିପତ୍ର ଦେଖିଲେ ଆମେ ଆଶ୍ଚର୍ଯ୍ୟ ହେଉଁ ସେ କାଳର ବିଜୁଳିବତୀ ବିହୀନ ଅନ୍ଧକାର ଯୁଗର ଲୋକେ ସେ ସବୁ କିମିତି ଲେଖୁଥିଲେ ବା ପଢୁଥିଲେ । ଲେଖନ ଦ୍ୱାରା ତାଳପତ୍ରରେ ଲେଖା କାମ କେତେ ଧୈର୍ଯ୍ୟ ଓ ପରିଶ୍ରମ ଦରକାର କରେ ଏବଂ ଲେଖାର ଗତି କେତେ ମନ୍ଥର ତାହା ସହଜରେ ଅନୁମେୟ । ପୁରାଣ ଓ ମଧ୍ୟଯୁଗୀୟ ଲେଖାମାନ ଏତେ ସୂକ୍ଷ୍ମ ଓ ଅସ୍ପଷ୍ଟ ଯେ ତୀବ୍ର ଦୃଷ୍ଟି ସମ୍ପନ୍ନ ଚକ୍ଷୁ ମଧ୍ୟ ପରାଭବ ସ୍ୱୀକାର କରିବ । ତେଣୁ ବିନା ପ୍ରତିଚକ୍ଷୁରେ ସେ ସବୁ ଗ୍ରନ୍ଥ କିପରି ଲେଖାପଢ଼ା ହେଉଥିଲା ତାହା ଆମେ କଳ୍ପନା ମଧ୍ୟ କରିପାରୁନା । ମାତ୍ର ଚତୁର୍ଦ୍ଦଶ ଶତାବ୍ଦୀରେ ଚଷମାର ଆବିଷ୍କାର ଏବଂ ପ୍ରାଥମିକ ଅବସ୍ଥାରେ ସେ ସବୁ ନିଶ୍ଚୟ ଅତି ନିକୃଷ୍ଟ ଧରଣର ହୋଇଥିବ । ଗ୍ରୀକ୍‌ମାନେ ଦନ୍ତ ଦୃଷ୍ଟିହୀନ ବାର୍ଦ୍ଧକ୍ୟକୁ ଘୃଣା କରୁଥିଲେ କାରଣ ସେତେବେଳେ ଚଷମା ବା ନକଲି ଦାନ୍ତର ପ୍ରଚଳନ ନ ଥିଲା । କିନ୍ତୁ ଦୀର୍ଘଜୀବୀ ଜାତି ହୋଇ

ସେମାନେ ବିନା ଚଷମା ଓ ବିନା ନକଲି ଦାନ୍ତରେ ଲେଖାପଢ଼ା, ଖିଆପିଆ ସୁରୁଖୁରୁରେ ଚଳାଇ ପାରୁଥିଲେ କାରଣ ସେମାନେ ସଦା ସର୍ବଦା ଅଙ୍ଗ ପ୍ରତ୍ୟଙ୍ଗର ସଦ୍‌ବ୍ୟବହାର କରୁଥିଲେ । ମଫସଲର ଅଶୀ ନବେ ବର୍ଷର ବୁଢ଼ା କ୍ଷୀଣ ଦୀପ ଆଲୋକରେ ବିନା ଚଷମାରେ ତାଳପତ୍ର ରାମାୟଣ ଭାଗବତ ପଢ଼ିବାର କ'ଣ ଆପଣ ଦେଖି ନାହାନ୍ତି ?

ଜର୍ମାନୀ ପରି କେତେକ ଦେଶର ବହିପତ୍ର ପଢ଼ିବା ଏକ କଷ୍ଟସାଧ୍ୟ ବ୍ୟାପାର । କାରଣ ସେ ସବୁ ଦେଶରେ ବହିର ବଡ଼ ବଡ଼ ପୃଷ୍ଠା ଖୁବ୍ ଛୋଟ ଛୋଟ ଅକ୍ଷରରେ ମୁଦ୍ରିତ ହୋଇଥାଏ । ପୁଣି ଯେଉଁ କାଳି ବ୍ୟବହାର କରାଯାଏ ତାହା ମଧ୍ୟ ଚକ୍ଷୁକୁ ପ୍ରୀତିପ୍ରଦ ନୁହେଁ । ପୁଣି ଭାଷା ଇମିତି ଯେ ବାକ୍ୟ ସବୁ ଅଧପୃଷ୍ଠାଏ ଧରି ଲମ୍ୱିଥାଏ ଓ ବାକ୍ୟ ଶେଷକୁ ପୁଞ୍ଜାପୁଞ୍ଜା କ୍ରିୟା ଓ କ୍ରିୟାଂଶ । ପାଠକ ଯେତେ ମେଧାବୀ ଓ ପରିଶ୍ରମୀ ହେଲେ ବି ଜ୍ଞାନ ଅର୍ଜନ ପନ୍ଥା ଅତୀବ ଦୁର୍ଗମ । ଇଂରାଜୀ ଭାଷାରେ ମଧ୍ୟ ଏଲିଜାବେଥ୍‌ଙ୍କ ଯୁଗରୁ ଡକ୍ଟର ଜନସନ୍‌ଙ୍କ ଯୁଗ ପର୍ଯ୍ୟନ୍ତ ପ୍ରଚଳିତ ଗଦ୍ୟ ଲେଖାର ସୁଦୀର୍ଘ ବାକ୍ୟାବଳି ସହିତ ଆଧୁନିକ ସାମ୍ବାଦିକ ସୁଲଭ ସାହିତ୍ୟର ଭାଷା ତୁଳନା କଲେ ଜଣା ପଡ଼ିବ ପୂର୍ବେ ଅଧ୍ୟୟନ ଓ ଜ୍ଞାନ ସଂଗ୍ରହ କେତେ ଆୟାସସାଧ୍ୟ ଥିଲା । ଦଶକୁମାରଚରିତର ବାକ୍ୟାବଳି ବା ମଧୁବାବୁଙ୍କ "ଯେଉଁ ମେଘବୃନ୍ଦ ସୂର୍ଯ୍ୟର ଐନ୍ଦ୍ରଜାଳିକ ପ୍ରଭାବରେ ..." ପରି ସୁଦୀର୍ଘ ବାକ୍ୟ ନିଚୟ ଆୟତ୍ତକୁ ଆଣିବ କ'ଣ ସହଜ ବ୍ୟାପାର ? ଆଧୁନିକ ଯୁଗର ଗଦ୍ୟର ମାମୁଲି ରୀତି ସୁନ୍ଦର ବା ଗୁରୁ ଗମ୍ଭୀର ନ ହେଲେ ମଧ୍ୟ ସଦା ସୁସ୍ପଷ୍ଟ ଏବଂ ଜଟିଳତା ବିହୀନ । ଅବୋଧ, ଦୁର୍ବୋଧ, ଅସ୍ପଷ୍ଟ ବା ଦ୍ୱୈର୍ଥବୋଧକ ଶବ୍ଦ ବ୍ୟବହାର କରି ପାଠକକୁ ଅଯଥା ଆଘାତ ଦେବାକୁ ଆଧୁନିକ ଲେଖକ ପସନ୍ଦ କରନ୍ତି ନାହିଁ । ବହି ସବୁ ମଧ୍ୟ ବଡ଼ ବଡ଼ ସୁନ୍ଦର ଅକ୍ଷରରେ ଛପା ହେଉଛି ।

ଆଧୁନିକ ଯୁଗର ଜ୍ଞାନପିପାସୁକୁ ଆଉ ପରିଶ୍ରମ କରିବାକୁ ପଡୁନାହିଁ । କେବଳ ନିଷ୍କ୍ରିୟ ହୋଇ ଆରାମରେ ସେ ଜ୍ଞାନ ସଂଗ୍ରହ କରିପାରୁଛି, ପିଇପାରୁଛି । ସମୟ ଅପନୋଦନ ପାଇଁ ପଢ଼ିବା ଏକ ମନୋରଞ୍ଜକ ଅଭ୍ୟାସ ରୂପେ ଗଣା ଯାଉଛି । ଅଳସୁଆ ମନକୁ ପଢ଼ାପଢ଼ି କରି ଭାବିବା ଦାଉରୁ ରକ୍ଷା କରାଯାଉଛି । ରେଳଯାତ୍ରୀ ବା ଶ୍ରମିକ ଶ୍ରେଣୀ ପାଇଁ ଯେଉଁ ରୋମାଞ୍ଚକର ଗଳ୍ପ କାହାଣୀ ଉପନ୍ୟାସ ଲେଖା ଯାଉଛି ତାହା ପାଠକଙ୍କୁ ଦୈନିକ ଝଞ୍ଜାଳରୁ ମୁକ୍ତି ଦେବା ଲାଗି ଅଭିପ୍ରେତ । ଜୀବନର କଠୋରତା ପାଖରୁ ମନକୁ ଓଟାରି ନେବା ପାଇଁ ସେ ସବୁ ଥୋପ ; ଦୁଃଖ ଭୁଲାଇବା ପାଇଁ ମାଦକ ଏବଂ ଦିବାସ୍ୱପ୍ନ ପାଇଁ ଏକ ଉତ୍ତେଜକ । ଯେଉଁମାନେ ଖବର କାଗଜ ପଢ଼ନ୍ତି, ସେମାନେ ପଢ଼ନ୍ତି ଖେଳ ଖବର, ନାଚ ତାମସା ବିଜ୍ଞାପନ, ଘୋଡ଼ାଦୌଡ଼, ମାଲିମୋକଦ୍ଦମା, ଚାଞ୍ଚଲ୍ୟକର ହତ୍ୟା, ଚମକପ୍ରଦ ଦୁର୍ଘଟଣା ଏବଂ ସର୍ବୋପରି ଯୌନ ଆବେଦନ ଥିବା ଘଟଣାବଳୀ ଓ ଚିତ୍ର । ବୁଦ୍ଧିବୃତ୍ତି ବା ଚିନ୍ତାଧାରାର ସମୃଦ୍ଧି ସହିତ ଏ ସବୁର କୌଣସି ସଂପର୍କ ନାହିଁ । ଜ୍ଞାନ ବିଜ୍ଞାନ ପ୍ରତି ଯେଉଁମାନଙ୍କ ଆଗ୍ରହ ଥାଏ ସେମାନେ କେବଳ ତଥ୍ୟ, ଫଳାଫଳ ଉପରେ ନଜର ଦିଅନ୍ତି, କିପରି କଷ୍ଟସାଧ୍ୟ ଉପାୟରେ ସେସବୁ

ସଂଗୃହୀତ ହେଲା ତାହା ଜାଣିବା ପାଇଁ ସେମାନଙ୍କ ଧୈର୍ଯ୍ୟ ବା ଆଗ୍ରହ ନଥାଏ । ତେଣୁ ଖବରକାଗଜ ପୃଷ୍ଠା କ୍ଷୁଦ୍ର ଓ ଚାଞ୍ଚଲ୍ୟକର ଅତିରଞ୍ଜିତ ଘଟଣା ଓ ଚିତ୍ରରେ ଭରପୂର ; ବୈଜ୍ଞାନିକ ଆବିଷ୍କାର ଓ ତଥ୍ୟମାନ ମଧ୍ୟ ସ୍ୱାଦ୍ୟ  ଆକାରରେ ଦିଆ ଯାଇଥାଏ । ପୁଣି ଯେଉଁ ଛବି ଦିଆ ଯାଇଥାଏ ତାହା ଫଟୋଗ୍ରାଫ୍ । ତେଣୁ ଏ କ୍ଷେତ୍ରରେ ମଧ୍ୟ ଅଙ୍କନ ବିଦ୍ୟାର ଓ ଖୋଦେଇ କାରୁକଳାର ମୃତ୍ୟୁ ।

ଶିକ୍ଷା କ୍ଷେତ୍ରରେ ମଧ୍ୟ ସେହି ଦୁଗ୍ଧ ପୋଷ୍ୟତା । ଅବଶ୍ୟ କେତେକ ଶିକ୍ଷା ପଦ୍ଧତିରେ ଛାତ୍ରମାନଙ୍କୁ ସ୍ୱାବଲମ୍ବୀ କରିବାର ଚେଷ୍ଟା କରାଯାଉଛି କିନ୍ତୁ ଅଧିକାଂଶ କ୍ଷେତ୍ରରେ ଛାତ୍ର ପରମୁଖାପେକ୍ଷୀ । ମାତ୍ର କେତେ ବର୍ଷ ପୂର୍ବେ ଶୁଦ୍ଧ ସଂସ୍କରଣ ଅଭାବରେ ରସକଲ୍ଲୋଳ, ଲାବଣ୍ୟବତୀ, ବୈଦେହୀଶ ବିଳାସ ବା ସାରଳା ମହାଭାରତ ଅଧ୍ୟୟନ କରିବାକୁ ଚାହୁଁଥିବା ବିଦ୍ୟାର୍ଥୀକୁ ଅନେକ ପୋଥିପତ୍ର ମିଳାଇବାକୁ ପଡୁଥିଲା ଏବଂ ସେ ପରିଶ୍ରମ କରି ସମସ୍ତ ସନ୍ଦେହରୁ ମୁକ୍ତି ପାଇଥିଲା ବା ଜଟିଳ ପ୍ରଶ୍ନର ନିଜେ ନିଜେ ସମାଧାନ କରି ପାରୁଥିଲା । ଏବେ କିନ୍ତୁ ବିଶ୍ୱବିଦ୍ୟାଳୟ ଛାତ୍ର ନକଲି କିତାବଟିଏ ଆଗରେ ରଖି, ଯୋଡ଼ିଏ ତିନୋଟି ''ସହଚର'' 'ସମୀକ୍ଷା' ପାଖରେ ଥୋଇ, ଧୀର ମନ୍ଥର ଗତିରେ ଗଡ୍ଡଳିକା ପ୍ରବାହରେ ଡକା ଯାଇଥିବା ଅଧ୍ୟାପକଙ୍କ କ୍ଲାସ ନୋଟ୍ ସାହାଯ୍ୟରେ ମୋଟେ ମଥା ନ ଖଟାଇ ଅକ୍ଲେଶରେ ଜଟିଳକୁ ସରଳ କରିପାରୁଛି । ସର୍ବତ୍ର 'ସରଳ' 'ସହଜ' ବହିସବୁ ସୁଲଭ ମୂଲ୍ୟରେ ବିକ୍ରୀ ହେଉଛି ଏବଂ ମୂଳ ପୁସ୍ତକ ଦୋକାନକୁ ଆସିବା ପୂର୍ବରୁ ଏଇ 'ସରଳ' 'ସହଜ' ପୁସ୍ତକ 'ପ୍ରବୀଣ ଅଧ୍ୟାପକ ମଣ୍ଡଳୀ' ବା 'ଅଭିଜ୍ଞ ଅଧ୍ୟାପକ ଦ୍ୱୟ' ଲିଖିତ ହୋଇ ପିଲାଙ୍କୁ ଅଭୟ ଓ ଆଶ୍ୱାସନା ଦେଉଛି । ଫଳରେ ପାଠ୍ୟ ଓ ପାଠକ ମଧ୍ୟରେ ଯୁଗ ଯୁଗ ଧରି ଯେଉଁ ଗୌରବାବହ ମହାଭାରତ ଯୁଦ୍ଧ ଚାଲିଥିଲା ଚତୁର ଟୀକାକାର, ବିବେକବନ୍ତ ପ୍ରକାଶକ ଓ ସହୃଦୟ ଗୁରୁଦେବ ମିଳିମିଶି ତହିଁର ସମାଧାନ ଆଣିଦେଇଛନ୍ତି ଏବଂ କଲା ଅଧ୍ୟୟନର ମହିମା ଉପରେ ଏକ ସମାଧି ତୋଳି ଦେଇଛନ୍ତି ।

କ୍ରୀଡ଼ା କୌତୁକ ମଧ୍ୟ କ'ଣ  ଏ ସରଳୀକୃତ ପଦ୍ଧତିରୁ ବାଦ୍ ଯାଇଛି । ପଚିଶ ତିରିଶ ବର୍ଷ ପୂବେ ଗାଁରେ ବାଗୁଡ଼ି, ଦାଣ୍ଡିଆ, ଦଣ୍ଡ ବୈଠକ, ବାଡ଼ିଖେଳ, ଛଉନାଚ ପ୍ରଚଳିତ ଥିଲା । ପର୍ବ ପର୍ବାଣିରେ ବିବାହ ଉତ୍ସବରେ ଗାଁ ଗାଁ ଭିତରେ ଏଥିରେ ପ୍ରତିଯୋଗିତା ମଧ୍ୟ ଚାଲିଥିଲା । ଆଜିକାଲି ଏ ସବୁ ଖେଳ ନାହିଁ; ବଦଳରେ କେଉଁଠି କିମିତି ବିନ୍ତି, ଟୁଏଣ୍ଟିନାଇନ୍ ତାସ୍‌ଖେଳର ଆଡ଼୍ଡା ରହିଛି   ମାତ୍ର । ଟାଉଟରି ମାଲିମୋକଦ୍ଦମାରେ ଲୋକେ ବ୍ୟସ୍ତ:  ଖେଳକୁ ବେଳ କାହିଁ ? ଏକେତ ଅବିବେଚିତ ଜମି ଆବାଦ ଫଳରେ ଖେଳପଡ଼ିଆର ଅଭାବ, ସେଥିରେ ପୁଣି ଫୁଟବଲ୍ କ୍ରିକେଟ୍ ନାମ ଧଇଲେ ଅଭିଭାବକଙ୍କ ହୃତ୍‌ପିଣ୍ଡ ଧଡ଼ପଡ଼ ହୁଏ କାଳେ ପିଲାଙ୍କ ଗୋଡ଼ହାତ ଭାଙ୍ଗିଯିବ, ମୁଣ୍ଡ ଫାଟିଯିବ ବୋଲି । ପୂର୍ବେ ଇଂଲଣ୍ଡରେ ଖେଳାଳୀଙ୍କୁ ଦ୍ରୁତ ବୋଲିଂର ସମ୍ମୁଖୀନ ହେବାପାଇଁ ଏବଂ ତାଙ୍କ ଭୟଭୀତ ଦୂର କରିବା ପାଇଁ ଗୋଟାଏ ଉଚ୍ଚ ଜାଗାରୁ ଯନ୍ତ୍ର

ସାହାଯ୍ୟରେ ଜୋରେ ବଲ ଫୋପଡ଼ା ଯାଉଥିଲା । ପାହାଡ଼ ଉଠିବା ଏକ ଆନନ୍ଦଦାୟକ ଖେଳ ହେଲେ ବି ଆମେ ଅନ୍ୟମାନଙ୍କୁ ହିମାଳୟ ଉଠିବା ଭାର ଛାଡ଼ିଦେଇ ନିଜେ ସହଜ ରାସ୍ତା ଧରୁଁ, ଅର୍ଥାତ୍ ଟ୍ରେନ୍‌ରେ ଯାଇ ଦାର୍ଜିଲିଂ ପହୁଞ୍ଚିଯାଉଁ ।

ବର୍ତ୍ତମାନ ସମସ୍ତେ ଚାହୁଁଛନ୍ତି ସରଳ, ସହଜ ଓ ନିରାପଦ ଜୀବନଯାତ୍ରା । ସହର ବଜାରର ଗଛଡାଳ କାଳେ ଝଡ଼ ତୋଫାନରେ କେତେବେଳେ ଭାଙ୍ଗି କାହା ମୁଣ୍ଡରେ ପଡ଼ିଯିବ ବୋଲି ବର୍ଷକୁ ବର୍ଷ ସେ ସବୁ କଟା ଯାଉଛି । ନିଜ ଅବହେଳା ବା ଅସାବଧାନତା ଯୋଗୁଁ ମୃତ୍ୟୁ ଘଟିଲେ ମଧ୍ୟ ଜୀବନବୀମାର ବ୍ୟବସ୍ଥା କରାଯାଇଛି । ପ୍ଲାଟଫର୍ମରେ ପଡ଼ିଥିବା କଦଳୀ ଚୋପା ଦେଖି ନ ପାରି ଯେବେ କେହି ଖସଡ଼ି ପଡ଼ିଲା ତେବେ ରେଳବାଇର ଦୋଷ । ଆଖି ଆଗରେ କିଏ ରେଳଡବାରୁ ଯେବେ ସୁଟ୍‌କେଶ ଉଠାଇ ନେଲା ସେଥିପାଇଁ ବି ରେଳବାଇ ବିରୋଧରେ ମୋକଦ୍ଦମା କରି କ୍ଷତିପୂରଣ ଆଦାୟ କରି ଦେଉଛି । ମୋଟାମୋଟି ଆମ ଜୀବନର ଲକ୍ଷ୍ୟ ହେଲା ଆମେ ନିଜେ କିମିତି ସମସ୍ତ ସୁଖ ସୁବିଧା ପାଇବା, ଅନ୍ୟମାନେ ସବୁ ବାଧା ବିପଦ ବରଣ କରିବେ । ପର ଉପରେ ନିର୍ଭର କରିବା ଅଭ୍ୟାସଗତ ହୋଇଗଲେ ଆମର ଅବସ୍ଥା ଗଳ୍ପବର୍ଣ୍ଣିତ ପିମ୍ପୁଡ଼ିଙ୍କ ପରି ହେବ । ଦଳେ ପିମ୍ପୁଡ଼ିଙ୍କୁ କୁଆଡ଼େ ବରାବର ମୁହଁ ପାଖରେ ଖାଦ୍ୟ ଯୋଗାଇ ଦିଆ ହେଉଥିଲା । କର୍ମକ୍ଷମତା ଓ ପରିଶ୍ରମର ପ୍ରତୀକ ଏହି କୀଟଗୁଡ଼ାକ କ୍ରମେ ପରମୁଖାପେକ୍ଷୀ ହୋଇ ଏମିତି ଆଳସ୍ୟପ୍ରବଣ ହେଲେ ଯେ ଖାଦ୍ୟ ଅଳ୍ପ ଦୂରରେ ଥିଲେ ମଧ୍ୟ ସେମାନେ ନିଜେ ନ ଆଣି ନ ଖାଇ ଭୋକ ଉପାସରେ ମରିଗଲେ ।

ଏହା ହୁଏତ ସଭ୍ୟତାର ଯଥାର୍ଥ ଏବଂ ଅନିବାର୍ଯ୍ୟ ପରିଣାମ ହେବ ବୋଲି କୁହାଯାଇପାରେ । ମାତ୍ର ଏ ଧରଣର ଭ୍ରାନ୍ତି ଆମର ରହିବା ଉଚିତ ନୁହେଁ । କାରଣ ପ୍ରକୃତି ଦିନେ ନା ଦିନେ ଆମର ଏ ଅବିବେକିତାର ପ୍ରତିଶୋଧ ନେବ । ଯେଉଁ ଇନ୍ଦ୍ରିୟ ବା ଅଙ୍ଗପ୍ରତ୍ୟଙ୍ଗ ଯଥାଯଥ ବ୍ୟବହାର ନ କରି ଆମେ ପଙ୍ଗୁ କରିଦେବୁଁ ପ୍ରକୃତି ହୁଏତ ତାହା ଫେରାଇ ନେବ । ଆତ୍ମରକ୍ଷା ପାଇଁ ପ୍ରକୃତି ଯେଉଁ ଅସ୍ତ୍ରଶସ୍ତ୍ର ଆମକୁ ଦେଇଥିଲା ତାହା ସେ ଫେରାଇ ନେଉଛି ଏବଂ ଇତିହାସ ପାରମ୍ଭରୁ ଆମର ମାନସିକ ଶକ୍ତିରେ କିଛି ଯୋଗ କରିନାହିଁ । ବିପଦ ଝଡ଼ଝଞ୍ଜା ସହିତ ବୀରପରି ସଂଗ୍ରାମ କରିବା ଏବଂ ବିଦ୍ୟାବୁଦ୍ଧି ଖେଳାଇ ଜାଲ ବା ଧନ୍ଦା ଭେଦ କରିବାର ଯେଉଁ ଶକ୍ତି ସାର୍ମଥ୍ୟ ପ୍ରକୃତି ମଣିଷକୁ ଦେଇଛି ତାହା ଯେବେ ଆମର ଦରକାରରେ ନ ଆସେ ତେବେ ସେ ନିଶ୍ଚୟ ତାହା ଫେରାଇ ନେବ । ସୃଷ୍ଟିରେ ବା ସମାଜରେ ଯେବେ ପ୍ରଳୟ ବା କୌଣସି ବିପର୍ଯ୍ୟୟ ବା ବିଶୃଙ୍ଖଳା ଆସେ ତେବେ ହୁଏତ ସେ ସବୁ ଶକ୍ତି ଓ ପ୍ରବୃତ୍ତି ଆମେ ପୁଣି ଲୋଡ଼ି ବସିବୁ କିନ୍ତୁ ପାଇବୁ ନାହିଁ । ଏଇ ସଂକଟ ବେଳରେ ଦୁଗ୍‌ଧପୋଷ୍ୟ ସଭ୍ୟତାର ପୂର୍ଣ୍ଣାବସ୍ଥା ପ୍ରାପ୍ତ ମଣିଷକୁ ଦନ୍ତହୀନ, ଦୃଷ୍ଟିହୀନ, ଚଳତ୍ ଶକ୍ତିହୀନ, ଅସହାୟ, ଯନ୍ତ୍ରଚାଳିତ ଦୟନୀୟ ଜୀବ ଆକାରରେ ଦେଖିବାକୁ କ'ଣ ସୁଖ ଲାଗିବ ? ସେତେବେଳେ ହୁଏତ ଅନେକ ଲୋକ ବରଞ୍ଚ ଆଫ୍ରିକା ଜଙ୍ଗଲର ଜୁଲୁ ବା ଅନ୍ୟ କୌଣସି ସୁସ୍ଥ ସବଳ ଆଦିମ

ମଣିଷ ହେବାକୁ ଚାହିଁବେ ତଥାପି ଶକ୍ତି ସାମର୍ଥ୍ୟହୀନ ନ ପୁଂସକ ସଭ୍ୟମାନବ ବୋଲାଇବାକୁ ଗର୍ବ ମଣିବେ ନାହିଁ ।

ଆମ ଯୁବ ସମାଜରେ ପରିଶ୍ରମ କାତରତା ଏବଂ କାୟିକ ଓ ମାନସିକ ଶ୍ରମ ପ୍ରତି ଘୃଣା ଏବଂ ବିରକ୍ତି ବ୍ୟାପକ ରୂପେ ଦେଖା ଦେଇଛି । ସେମାନଙ୍କ ଧର୍ମ ମଧ୍ୟ ଏହି ଦୋଷରେ ପ୍ରଭାବିତ, ଦୁଷ୍ଟ । ସେମାନେ ଚାହାନ୍ତି ଅନ୍ୟାନ୍ୟ କ୍ଷେତ୍ରପରି ଧର୍ମ ନୀତିରେ ମଧ୍ୟ ଟଫିଚକୋଲେଟ୍ ପରି ସମସ୍ତ ଆଦର୍ଶ ଯୋଗାଇ ଦିଆଯାଉ ଯେପରି ଅନାୟାସରେ ତାହା ସେମାନେ ଗ୍ରହଣ କରି ପାରିବେ । କିନ୍ତୁ ବାହାରୁ ଯୋଗାଇ ଦିଆଯାଉଥିବା ଧର୍ମ କ'ଣ ଯଥାର୍ଥରେ ଧର୍ମ ପଦବାଚ୍ୟ ? ଧର୍ମର ଏ ପ୍ରକାର ଧାରଣା ଅତୀବ ଭ୍ରାନ୍ତ । କୃତୀ ଶିଳ୍ପୀ କଳାକାର ମାଇକେଲ ଏଞ୍ଜେଲୋ କହିଛନ୍ତି, ''ଚରମ ଉତ୍କର୍ଷ ଓ ପୂର୍ଣ୍ଣତା ଲାଭ ପାଇଁ ସୃଜନ ପ୍ରୟାସ ହିଁ ମାନବାତ୍ମାକୁ ପବିତ୍ର ଓ ଧର୍ମପରାୟଣ କରେ । ଭଗବାନ ହେଉଛନ୍ତି ସ୍ୱୟଂସିଦ୍ଧ, ସ୍ୱୟଂ ସଂପୂର୍ଣ୍ଣ, ତେଣୁ ପୂର୍ଣ୍ଣତା ପାଇଁ ସେ ପ୍ରୟାସ କରେ, ସେ ଭଗବତ୍ ସୁଲଭ ସଂପୂର୍ଣ୍ଣତା ଆଡ଼କୁ ଗତି କରେ ।'' ନିଉଟନ୍ କହୁଥିଲେ, ''ସାଧନା ହିଁ ପ୍ରତିଭା, ଧୈର୍ଯ୍ୟ ହିଁ ଭଗବାନ ।''

ଏଇଠି ମୁଁ କଲମ ବନ୍ଦ କରୁଛି କାରଣ ତେଣେ ଯୁବକମାନେ ମୋ ଆଡ଼କୁ ଅନାଇଁ ଟାହୁଲି ଟାପରା ଆରମ୍ଭ କରି ଦେଲେଣି ଏବଂ ମୁଁ ସ୍ପଷ୍ଟ ଶୁଣୁଛି ସେମାନଙ୍କ କଥା, ''ଥାଉ, ଥାଉ ; ଢେର ହେଲା, ଆଉ ହିତୋପଦେଶ ଶୁଣାନ୍ତୁ ନାହିଁ ; ଆମେ ବି ଆପଣଙ୍କ ବୟସରେ ଠିକ୍ ସିମିତି ଗୁଡ଼ାଏ ବକ୍ ବକ୍ ହେବୁଁ ଏବଂ ସେ ସବୁ ବକ୍ତୃତା ଛାପିବା ପାଇଁ ମଧ୍ୟ ଗୁଡ଼ାଏ ଲୋକ ବାହାରିବେ ।''



# ଚାଟୁ

ଆଜିକାଲି ଦେଶରେ ସାହିତ୍ୟ ଓ ସମ୍ବାଦପତ୍ରରେ ବଡ଼ବଡ଼ିଆଙ୍କୁ ଖୋସାମତି କରିବାର ନୂଆ ନୂଆ ଉପାୟ ସବୁ ଦେଖାଦେଇଛି । ଦୁନିଆଁ ଯେବେ ସାଧାସିଧା ଥିଲା ଖୋସାମତ ବି ସିଧାସଳଖ ଥିଲା । ମିଛକୁ ବି ଲୋକେ ସେତେବେଳେ ସତ୍ୟଠାରୁ ବଡ଼ ବୋଲି ଗ୍ରହଣ କରିବାରେ ଆପତ୍ତି କରୁ ନଥିଲେ । ପ୍ରାପ୍ତି ଆଶା ରଖି ଗରିବଟିଏ ଯେବେ ଧନିକର ଗୁଣଗ୍ରାମ ବଖାଣୁଥିଲା ସେ ତାଙ୍କୁ ରୂପରେ କନ୍ଦର୍ପ, ବିଦ୍ୟାରେ ବୃହସ୍ପତି, ଶୌର୍ଯ୍ୟରେ କାର୍ତ୍ତିକେୟ, ଧନରେ କୁବେର ବୋଲି ନାନା ତୁଳନା ଉପମା ସାହାଯ୍ୟରେ ଟେକାଟେକି କରୁଥିଲା । ସେଥିରେ କିନ୍ତୁ ଉଭୟପକ୍ଷର କୌଣସି କ୍ଷତି ହେଉ ନ ଥିଲା । ସ୍ତୁତିପାତ୍ର ବେଶ୍ ଜାଣୁଥିଲେ ଯେ ଯେଉଁସବୁ ଗୁଣଗ୍ରାମ ତାଙ୍କ ଉପରେ ଆରୋପିତ ହେଉଛି ତନ୍ମଧ୍ୟରୁ କିଞ୍ଚିତ୍ ତାଙ୍କ ପାଖରେ ନାହିଁ । ସେ ସବୁ ଗୁଣ କଳ୍ପନା-ପ୍ରସୂତ ଅତିଶୟୋକ୍ତି କାବ୍ୟ-ଛଟା । ଚାଟୁକାରୀ ମଧ୍ୟ ଜାଣୁଥିଲା ଯେ ସେ ଯାହା ବର୍ଣ୍ଣନା କରିଯାଉଛି ତାହା ଉପରଠାଉରିଆ, ସେଥିରେ ଆନ୍ତରିକତା ନାହିଁ, ଅଛି କେବଳ କୃତ୍ରିମତା । ଏତାଦୃଶ ଚାଟୁବାଣୀରେ ରାଜା ରାଜୁଡ଼ାଙ୍କ ମଥା ବିଗିଡ଼ି ଯାଉ ନ ଥିଲା ଅଥବା ତଦ୍ଦ୍ୱାରା ନୈତିକ ସ୍ଖଳନ ହେଲା ବା ହୀନଭାବ ପ୍ରକାଶ ପାଇଲା ବା ବୁଦ୍ଧି ଶକ୍ତିର ଅପମାନ ଅପଚୟ ହେଲା ବୋଲି ତୋଷାମୋଦୀମାନେ ମଧ୍ୟ ଭାବୁ ନଥିଲେ ।

ରାଜପ୍ରଶସ୍ତି କରିବାକୁ ଯାଇ ରାଜକବି କହୁଥିଲେ, ''ଭୋ ରାଜନ୍ ! ଆପଣ ଅସିମୁନରେ ତ୍ରିପୁର ଜିଣିଛନ୍ତି । ଆପଣ ମଧ୍ୟାହ୍ନ ସୂର୍ଯ୍ୟସଦୃଶ ତେଜୋଦୀପ୍ତ । ଆପଣଙ୍କ ତେଜବୀର୍ଯ୍ୟ ଏତେ ପ୍ରଚଣ୍ଡ ଜ୍ୟୋତିଃସମ୍ପନ୍ନ ଯେ ଚକ୍ଷୁଷ୍ମାନ୍‌ଗଣ ନବରପ୍ରବେଶକାଳରେ ଅନ୍ଧହେବା ଭୟରେ ସ୍ୱୀୟକରପୃଷ୍ଠଦ୍ୱାରା ନୟନଯୁଗଳକୁ ଆବୃତ କରି ଥାଆନ୍ତି । ଆପଣଙ୍କ ବ୍ୟତିରେକେ ପ୍ରାଣୀଗଣ ନିଃଶ୍ୱାସ ମାରି ପାରନ୍ତେ ନାହିଁ । ବାତ୍ୟାବିକ୍ଷୁବ୍ଧ ସମୁଦ୍ରର ଉତ୍ତାଳ ଲହରୀମାନ ଛାମୁଙ୍କର ପଦସ୍ପର୍ଶ କରିବାର ଆସ୍ପର୍ଦ୍ଧା ବା ସାହସ ରଖନ୍ତି ନାହିଁ; ଇତ୍ୟାଦି । ଆଧୁନିକ ଯୁଗର କବିବର ରାଧାନାଥ ତୋଷାମଦଛଳରେ କାବ୍ୟକବିତାର ପୃଷ୍ଠପୋଷକ ରାମଚନ୍ଦ୍ର ଭଞ୍ଜଙ୍କ ପ୍ରତି 'ମେଘାସନକୁଞ୍ଜବିହାର ରସିକ', 'ଶବ୍ଦଭେଦୀ ଯା' ର ବଜ୍ରନାଦୀ ନଳୀ' ଇତ୍ୟାଦି ପଦମାନ ବ୍ୟବହାର କରି 'ଅବାରିତ ଦାନବାରିପିଚ୍ଛିଳ ପ୍ରାଙ୍ଗଣ'ରେ କିପରି କଳି ଉତ୍ତାନେ ଖସଡ଼ି ପଡ଼ିଲା ତନ୍ମଧ୍ୟର ଇଙ୍ଗିତମୟ ବର୍ଣ୍ଣନା ଦେଇଛନ୍ତି । ଐତିହାସିକଗଣ ମଧ୍ୟ ପଛରେ ନ ପଡ଼ି ସ୍ତୁତି ପ୍ରତିଯୋଗିତାରେ ଯୋଗଦେଇ 'ମୟୂରାଣ୍ଡୋଦ୍ଭବ', 'ବଶିଷ୍ଠମୁନି-ପତିପାଳିତ' ବୋଲି ସେହି

'ଆଶାଯୀ-ଉତ୍କଳ-ଭଞ୍ଜ-କିଶୋର-ପାଦପ'ର ଏକ ଦୈବୀ ବଂଶାନୁବୃତ୍ତ ଓ ଐତିହ୍ୟର ଅବତାରଣା କରିଛନ୍ତି । ଏବେ ସୁଦ୍ଧା ଉତ୍କଳର ପଞ୍ଜିକାରଗଣ ଶ୍ରୀକୃଷ୍ଣଙ୍କ ଅଷ୍ଟୋତ୍ତର ଶତନାମନ୍ୟାୟରେ ଗଜପତି ମହାରାଜଙ୍କ ନାମଚମକ ନାହିଁ, ଯାହାର ନାଁ ଖବରକାଗଜରେ ବାହାରେ ନାହିଁ ; କିନ୍ତୁ ତାଙ୍କର ଅପାର୍ଥିବ ବଡ଼ପଣ ଅଛି – ତାହା ପରମ ଶାନ୍ତି, କରୁଣା ଓ ବିଷାଦର ବଡ଼ପଣ । ମୁଁ ସେହି ମହତ୍ତ୍ୱର ଝଲକ ପାଉଛି । ସେହି ହେଉଛି ଭଗବାନଙ୍କ ଛବି ।

କ୍ରମଶଃ ମୋର ମନେ ହେଲା ଯେ ମଲ୍‌ବେରୀ ଲେନ୍‌ର ଉଇଲିୟମ୍ ସିମ୍‌ସନ୍ କେବଳ ବ୍ୟକ୍ତିଗତଭାବରେ ଭଗବାନ୍ ନୁହଁନ୍ତି । ସେ ଗୋଟିଏ ବିଶିଷ୍ଟଗୁଣର ଆଲୋକପାତ କରୁଛନ୍ତି, ଯାହା ମୁଁ ଆଉ କେତେ ମଲ୍‌ବେରୀ ଲେନ୍, ଆଉ କେତେ ଲିଭିଙ୍ଗରୁମ୍, ଡ୍ରଇଂରୁମ୍‌ରେ ଦେଖିଛି । କେବଳ ଆମେରିକା ନୁହେଁ, ଭାରତରେ ଦେଖିଛି । ଭଗବାନଙ୍କ ରୂପ କ'ଣ ମୁଁ ଜାଣେ ନାହିଁ, ତାଙ୍କୁ ସଶରୀରେ ଦେଖିବାର ବିଡ଼ମ୍ବନା ମୋର ନାହିଁ; କିନ୍ତୁ ମୋର ଧାରଣା ହେଲା ଯେ ଯଦି ଭଗବାନଙ୍କୁ ଜୀବନ୍ତ କଳେବର ଦିଆଯାଏ ତାହାହେଲେ ସେ ଉଇଲିୟମ୍ ସିମ୍‌ସନଙ୍କ ପରି ହୋଇଥିବେ; କିମ୍ବା ହୁଏତ ସ୍ୱଦେଶର ସୀତାରାମ ଆୟାରଙ୍କ ପରି ବା ଜଗନ୍ନାଥ ପଟ୍ଟନାୟକଙ୍କ ପରି ବା .... ଏମାନେ ସମସ୍ତେ ମଧ୍ୟବିତ୍ତ । ବଡ଼ଲୋକର ଉଦ୍ଧତପଣ ଏମାନଙ୍କ ପାଖରେ ନାହିଁ, ଗରିବର ନୀଚତା, ମାଡ଼ିବସିବା ଢଙ୍ଗ ନାହିଁ । ତେଣୁ ଏମାନେ ଭଗବାନଙ୍କୁ ନିଜର କରି ପାରିଛନ୍ତି ଓ ସଂସାରର ଦୁଷ୍ଟ ଭାବରେ ସନ୍ତପ୍ତ ହେଉଛନ୍ତି । ସନ୍ତାପରୁ ସହାନୁଭୂତି, ତହିଁରୁ କରୁଣା ଓ ଶାନ୍ତିର କାମନା । ମୋର ମନେ ପଡ଼ିଲା ସୀତରାମ ଆୟାରଙ୍କ କଥା । ସେ ସେଣ୍ଟ୍ରାଲ୍ ସେକ୍ରେଟେରୀଏଟ୍‌ରେ କାମ କରନ୍ତି । ସେ ଦିନେ ମୋତେ କହିଥିଲେ ଯେ ତାଙ୍କର ଅବ୍ରାହ୍ମଣମାନଙ୍କ ପ୍ରତି ଆଦୌ ବିଦ୍ୱେଷ ନାହିଁ । ଅବ୍ରାହ୍ମଣମାନଙ୍କର ଦୋଷ ନୁହେଁ ଯେ ସେମାନେ ଛୋଟ କୂଳରେ ଜନ୍ମ ହୋଇଛନ୍ତି । ଭଗବାନ ତାଙ୍କୁ ସୁବୁଦ୍ଧି ଦେବେ, ନିଶ୍ଚୟ ଦେବେ । ପୁଣି ମନେ ପଡ଼ିଲା ଜଗନ୍ନାଥ ପଟ୍ଟନାୟକଙ୍କ କଥା । ସେ ତ୍ରିସନ୍ଧ୍ୟା କରନ୍ତି, ପାଠପଢୁଆ ପିଲାଙ୍କ ଅବାଧ୍ୟପଣ ତାଙ୍କୁ ବାଧେ, ପୁଅ ଶ୍ୱଶୁରଘରୁ ଯଥେଷ୍ଟ ଯୌତୁକ ଆଣିଲା ନାହିଁ ବୋଲି ସେ ସମୁଧିର ସମ୍ମାନ ହାନିପାଇଁ ଦୁଃଖିତ ହୋଇଥିଲେ । ମୋର ମନେ ଅଛି ଯେ ଥରେ ଠାକୁରଘରୁ ମଠାଲୁଗା ପିନ୍ଧି ପୂଜା ସାରି ଆସିଲାବେଳକୁ ସେ ଶୁଣିଲେ ଯେ ମୂଲିଆମାନେ କାମ ନ କରି, କାମ କରିଛନ୍ତି ବୋଲି କହୁଛନ୍ତି ଓ ପଇସା ମାଗୁଛନ୍ତି । ସେ ସହନଶୀଳ ବ୍ୟଥିତ ଚାହାଣିରେ ଆମଆଡ଼କୁ ଅନାଇଲେ ଓ କହିଲେ, – ଚାକରବାକର ମୂଲିଆମାନେ ଏତେ ମିଛ କହନ୍ତି କାହିଁକି ?

ସ୍ଥାନକାଳପାତ୍ର ନେଇ ସେହି ଭଗବାନଙ୍କର କେତେ ରୂପ । ମୁଁ ମୁଗ୍ଧ ହୋଇ ଚାହିଁ ରହିଲି ।

x x x

ସେହି କେତେମାସ ଭିତରେ ଅନେକ ଘଟଣା ଘଟିଗଲା । ଆମେରିକାର ଚାରିଆଡ଼େ ନିଗ୍ରୋ-ଗୋରା ସଂଘର୍ଷ । ପୁଲିସ୍ କୁକୁର, ଲୁହବୁହା ଗ୍ୟାସ୍, ଘରପୋଡ଼ି, ହତ୍ୟା କୌଣସିଟି ବାକୀ

ନଥିଲା । ମୁଁ ସବୁଥର ଖବରକାଗଜରେ ଏ ସବୁ ପଢ଼ିଲାବେଳେ ଉଇଲିୟମ୍ ସିମ୍ପସନ୍‌ଙ୍କୁ ସ୍ମରଣ କରେ ଓ ତାଙ୍କରି ଭାବର କାଣିଚାଏ ନେଇ ଦୁଃଖପ୍ରକାଶ କରେ । ଏ ଉତ୍‌ପାତ କ'ଣ ଚାଲିଥିବ ଏମିତି ?

କିନ୍ତୁ ଦିନେ ଗୋଟିଏ ନୂଆ ଧରଣର ସମ୍ବାଦ ଆସିଲା । ଖବରରେ ପ୍ରକାଶ ଯେ ରବିବାର ଦିନ ଦକ୍ଷିଣର ଗୋଟିଏ ନିଗ୍ରୋ ଚର୍ଚ୍ଚରେ, ପ୍ରାର୍ଥନା ସଭା ଚାଲିଥିବାବେଳେ ବୋମା ପଡ଼ିଛି । ବାର - ତେରବର୍ଷର ଚାରୋଟି ନିଗ୍ରୋ ଝିଅ ନିହତ ।

କେବଳ ଏତିକିରେବିଶେଷତ୍ୱ ନ ଥିଲା । ସାମ୍ବାଦିକ ଆଉ କିଛି ଲେଖିଥିଲେ, ଘଟଣାର ସଂପୂର୍ଣ୍ଣ ଦୃଶ୍ୟ ଦେଖାଇବା ପାଇଁ । ସେ ଲେଖିଥିଲେ ଯେ ବୋମା ପଡ଼ି ଚର୍ଚ୍ଚର ରଙ୍ଗିନ ଝରକା କାଚ ଗୋଟିଏ ଭାଙ୍ଗି ଯାଇଛି । ସେ କାଚରେ ଥିଲା ଯୀଶୁଖ୍ରୀଷ୍ଟଙ୍କର ଛବି, - ତାଙ୍କ ଚାରିପାଖରେ ପିଲାମାନେ ଘେରି ଯାଇ ତାଙ୍କ ଆଡ଼କୁ ହାତ ବଢ଼ାଇଛନ୍ତି । ଛବିରେ ଯୀଶୁଖ୍ରୀଷ୍ଟଙ୍କର ମୁହଁଟି ଭାଙ୍ଗି ଚୂନା ହୋଇ ଯାଇଛି, ବାକୀ ସବୁ ଅଛି ।

ମୋର କ୍ରୋଧ ଆସିଲା କାହା ଉପରେ ମୁଁ କହିପାରିବି ନାହିଁ ଓ ତା' ସାଙ୍ଗରେ ମୋର ଆଉ ଗୋଟିଏ ଅଦ୍ଭୁତ ଭାବ ଆସିଲା - ଯେ ଭଗବାନ୍ ମଧବିତ୍ତ ନୁହନ୍ତି । ତାହା ହୋଇଥିଲେ ଖ୍ରୀଷ୍ଟଙ୍କ ମୁହଁଟି ଅତୁଟ 'ଥାଆନ୍ତା, ସେ ବିଷାଦଭରା ଚାହାଣିରେ ଚାହିଁ ରହି ଥାଆନ୍ତେ ଓ ଶାନ୍ତିର କାମନା କରୁଥାଆନ୍ତେ । ପୂର୍ବରେ ଶହେଆଠ ଶ୍ରୀ ବ୍ୟବହାର କରୁଛନ୍ତି । ଯେପରି ଗୋଟାଏ ଦୁଇଟା ଶ୍ରୀ ତାଙ୍କୁ ଶ୍ରୀହୀନ କରିଦେଇଥାନ୍ତା ।

ଏବେ ରାମଚନ୍ଦ୍ର ନାହାନ୍ତି କି ଅଯୋଧ୍ୟା ନାହିଁ । ଅଛନ୍ତି ଗୁଡ଼ିଏ ଅସ୍ଥାୟୀ ଅବ୍ୟକ୍ତିକ ରାଷ୍ଟ୍ରନାୟକ ବା ପ୍ରଧାନମନ୍ତ୍ରୀ ଏବଂ ଦିଲ୍ଲୀ, ଲଣ୍ଡନ,ମସ୍କୋ, ୱାସିଂଟନ୍ ବା ପିଣ୍ଡି, ପିକିଂପରି ବିଭିନ୍ନ ବାଦର ପ୍ରତୀକ କେତୋଟି ରାଜଧାନୀ । ଦେଶକାଳର ବ୍ୟବଧାନ ସଙ୍କୁଚିତ ହେବାରେ ବିଭିନ୍ନ ରାଷ୍ଟ୍ରମଧରେ ସୁସମ୍ପର୍କ ପ୍ରତିଷ୍ଠା ଓ ଭାବର ଆଦାନ ପ୍ରଦାନ ଏକ ଅପରିହାର୍ଯ୍ୟ ରାଷ୍ଟ୍ରୀୟ ବ୍ୟାପାର ହୋଇଛି ଏବଂ ଏଥିପାଇଁ ମଧ ଚାଟୁ ଷଷ୍ଠଶୀଳ ରୂପେ ନିପାତନସିଦ୍ଧ ହୋଇଗଲାଣି । ଦରିଦ୍ର ଅଧମ ଦେଶଟିଏ ପ୍ରତିପତ୍ତିସମ୍ପନ୍ନ ଓ ବିଭବଶାଳୀ ରାଷ୍ଟ୍ରର ଦ୍ୱାରସ୍ଥ ହୋଇ ଚାଟୁବାକ୍ୟ ପ୍ରୟୋଗ କରି ଆଧୁନିକ ଓ ଉନ୍ନତ ଦେଶ ହେବାପାଇଁ ଆଗ୍ରହୀ । ବୃହତ୍ ରାଷ୍ଟ୍ରଟି ମଧ ଆନ୍ତର୍ଜାତିକ କ୍ଷେତ୍ରରେ କ୍ଷମତା ପ୍ରତିଷ୍ଠା ଓ ଭାରସାମ୍ୟ ରଖିବାପାଇଁ କ୍ଷୁଦ୍ର ରାଷ୍ଟ୍ରର ନୈତିକ ସମର୍ଥନ ଚାହୁଁଛି । ତେଣୁ ଦୁଇ ରାଷ୍ଟ୍ର ମଧରେ ଚାଟୁ (ଅନ୍ୟନାମ କୂଟନୈତିକ ସମ୍ପର୍କ) ରାଷ୍ଟ୍ରୀୟମର୍ଯ୍ୟାଦା ଓ ସ୍ୱୀକୃତି ଲାଭକରି ମହିମାନ୍ୱିତ ହୋଇଛି । ଦୁଇରାଷ୍ଟ୍ର ତରଫରୁ ପ୍ରକାଶିତ ମିଳିତ ଇସ୍ତାହାର-ପଂକ୍ତିର ମଧସ୍ଥଳରେ ଚାଟୁର ମୁଦ୍ରାଙ୍କନ ସୁସ୍ପଷ୍ଟ ।

ଆନ୍ତର୍ଜାତିକ କ୍ଷେତ୍ରରେ ଯାହା ଅନ୍ତର୍ଦ୍ଦେଶୀୟ ବ୍ୟାପାରରେ ମଧ ସେହି କଥା । ପ୍ରାପ୍ତି ଆଶାରେ ସୌହାର୍ଦ୍ଦପାଇଁ ମନ୍ତ୍ରୀ ମନ୍ତ୍ରୀ ମଧରେ ପରସ୍ପର ଚାଟୂକ୍ତି ଓ ସାର୍ଟିଫିକେଟ୍ ବିନିମୟ ଚାଉଳ ଗହମ ଆଦାନ ପ୍ରଦାନ ପରି ।

ଏବେ ରାଜ୍ୟ କହିଲେ ବୁଝାଏ ଗଣ ଓ ଗଣନାୟକ (କ୍ୱଚିତ୍ ଗଣପତି ବା ଗଣେଶ) ; ଶାସନ କହିଲେ ବୁଝାଏ ଗଣଙ୍କପାଇଁ ଗଣଙ୍କଦ୍ୱାରା ଗଣଙ୍କର ଶାସନ – ସମସ୍ତ କାରକ ଓ ବିଭକ୍ତିର ମୂଳାଧାର ଏଇ ଗଣ । ତେଣୁ ଗଣ ଓ ଗଣନାୟକ ମଧ୍ୟରେ ସୁସମ୍ପର୍କ (ତେଣୁ ଲୋକସମ୍ପର୍କ ବିଭାଗ ??) ନ ରହିଲେ ସୁଶାସନ ଅସମ୍ଭବ । ସେଥିପାଇଁ ଜନନାୟକ ଗଣପ୍ରାପ୍ତି (ଭୋଟ !) ଆଶାରେ ଜନଗଣମନ ପରିତୃପ୍ତ କରିବେ, ଚାଟୁକାରିତା ଦେଖାଇ କହିବେ ''ଆପଣମାନେ ଏ ରାଷ୍ଟ୍ରର ସର୍ବମୟ କର୍ତ୍ତା, ଆପଣଙ୍କ ମଧ୍ୟରୁ ପ୍ରତ୍ୟେକ ଜଣେ ଜଣେ ଗାନ୍ଧୀ, ଜବାହାରଲାଲ, ଝାନ୍‌ସୀର ରାଣୀ, ଚାନ୍ଦ, ବିବି'', ଜନଗଣ ମଧ୍ୟ ସେଇ ପ୍ରାପ୍ତି ଆଶାରେ (ଛଡ଼, ପରମିଟ୍, କୋଟା, କଣ୍ଟ୍ରୋଲ, ସରପଞ୍ଚତ୍ୱ) ସ୍ତୁତିଗାନ କରି ତୁହା ଦେବେ, ''ଜୟ ଜୟ ରାମ, ଜୟ ଜୟ ଭରତ, ଜୟ ରାମରାଜ୍ୟ'' ।

ଗଣତନ୍ତ୍ରରେ ରାଷ୍ଟ୍ରନାୟକ ଓ ଗଣଙ୍କ ମଧ୍ୟରେ ସୁସମ୍ପର୍କର ପ୍ରତିଷ୍ଠା, ନିୟନ୍ତ୍ରଣ, ଅଭିବୃଦ୍ଧି ହୁଏ ସମ୍ବାଦପତ୍ର ମାଧ୍ୟମରେ । ସେଥିପାଇଁ ତାକୁ ଚତୁର୍ଥ ଇଷ୍ଟେଟ୍ (ଭାରତରେ ତୃତୀୟ କହିଲେ ଚଳିବ) କୁହାଯାଏ । ଏହି ଦୌତ୍ୟ ବା ଦୂତୀର କାମ ସମ୍ପାଦନ କରିବେ ସାମ୍ବାଦିକ ଓ ସାହିତ୍ୟିକଗଣ । ଗଣ ଓ ଗଣନାୟକ ମଧ୍ୟରେ ପରସ୍ପର ପ୍ରତି ଅନୁରାଗ ସୃଷ୍ଟି କରିବାପାଇଁ ସେମାନେ ନିକୁଞ୍ଜ ସଞ୍ଚାରକରିବେ; କିନ୍ତୁ ସେମାନଙ୍କ ପାଦ ଫାଟି ପଡ଼ିବ ନାହିଁ, ଫତୁରିଖୋର ଆଖ୍ୟା ପାଇଲେ ମଧ୍ୟ ପ୍ରାପ୍ୟ (କାଗଜ କୋଟା, ବିଜ୍ଞାପନ, ସରକାରୀ ଗ୍ରାହକବୃଦ୍ଧି) ର କଦାପି ଊଣା ହେବନାହିଁ । ଲଳିତା ଉଭୟ ରାଧାକୃଷ୍ଣଙ୍କୁ ବଳିଯିବେ । ଚାଟୁ ବିଶ୍ୱମୟ ହେବ,ସର୍ବତ୍ର ସେଇ ଏକ ରୂପ ଏକ କର୍ମସୂଚୀ, ଅଭ୍ୟର୍ଥନା, ଅଭିନନ୍ଦନ, ମାଲ୍ୟାର୍ପଣ, ଫଟୋ, ପ୍ରତିକୃତି-ଉନ୍ମୋଚନ, ଭୂରିଭୋଜନ, ଉପଢ୍ୱୌକନ, ପ୍ରାର୍ଥନା ଓ ମନୋରଞ୍ଜନ ।

କିନ୍ତୁ ଏହି ଚାଟୁକ୍ଷେତ୍ରରେ ମଧ୍ୟ ବିରୋଧୀଦଳ ଥିବାରେ ସ୍ତବଗାନକାରୀଙ୍କୁ ବଡ଼ ସତର୍କତା ଓ ଚତୁରତା ଅବଲମ୍ବନ କରିବାକୁ ପଡୁଛି । ଆଧୁନିକ ଯୁଗର ଚାଟୁର ଏକ ପ୍ରଚଳିତ ରୀତି ହେଲା ପ୍ରଥମେ ଧନୀ ବା କ୍ଷମତାପନ୍ନ ବ୍ୟକ୍ତିଙ୍କର ଏକ ବିଶ୍ୱାସଯୋଗ୍ୟ ଚିତ୍ର ଦେବା ଏବଂ ପରେ ପରେ ସେହି ସାଧାରଣ ସ୍ୱାଭାବିକ ଗୁଣଗୁଡ଼ିକୁ ଅବିଶ୍ୱାସ୍ୟ ଅତିରଞ୍ଜନ କରି ବ୍ୟକ୍ତିବିଶେଷଙ୍କୁ ବିରାଟ କରି ତୋଳିବାର ଚେଷ୍ଟା କରିବା । ପ୍ରଥମରେ କୁହାଯିବ ଶ୍ରୀଯୁକ୍ତ କୁବେର ମହାପାତ୍ର ଜଣେ ବିଚକ୍ଷଣ ବୁଦ୍ଧିସମ୍ପନ୍ନ, କଳାପ୍ରିୟ, କ୍ରୀଡ଼ାପ୍ରବଣ ଓ ମେଳାପୀ ବ୍ୟକ୍ତି । ଚାଟୁର ବିଗତ ଯୁଗରେ ହୁଏତ ସ୍ତାବକ ଓ ଶ୍ରୀ ମହାପାତ୍ରଙ୍କୁ ବୁଧ, ବୃହସ୍ପତିଙ୍କ ସହିତ ତୁଳନା କରିଥାନ୍ତେ । ଏବେ ମଧ୍ୟ ତା' କରୁଥିଲେ ବରଂ ଭଲ ହୋଇଥାନ୍ତା । ନଚେତ୍ ଯଦି ସାଫ୍ ସାଫ୍ କୁହାଯାଇଥାନ୍ତା ଯେ ତାଙ୍କର ଅଜସ୍ର ଅର୍ଥ ଅଛି, ଯହିଁରୁ କିଛି ପ୍ରାପ୍ତି ଆଶା ମୋର ଥିବାରୁ ଏ ଯଶୋଗାନ କରୁଛି ତେବେ ମଧ୍ୟ ଭଲ ହୋଇଥାନ୍ତା । ସାମ୍ବାଦିକମାନେ ମଧ୍ୟ ମହାପାତ୍ରଙ୍କ ବନ୍ଧୁ ଶ୍ରୀପୁଞ୍ଜିପତି ଅଗରୱାଲଙ୍କୁ କନ୍ଦର୍ପ ସହିତ ତୁଳନା କରିଥିଲେ ଭଲ ହୋଇଥାନ୍ତା ମାତ୍ର ସେମାନଙ୍କ ମଧ୍ୟରେ କେହି ପୂର୍ବରୀତି ଅନୁସରଣ ନ କରି କୋଟିପତିଙ୍କ ନିହାତି ମାମୁଲି ଚାଲିଚଳଣ,

ବେଶଭୂଷା, ଆମୋଦ-ପ୍ରମୋଦ, କୁକୁର -ବିରାଡ଼ି ପ୍ରୀତି, ଉଦ୍ୟାନପ୍ରିୟତା ବା ଡାକ୍ତରଙ୍କ ପ୍ରତି ଅଶ୍ରଦ୍ଧାକୁ ଖୁବ୍ ବଡ଼କରି ଦେଖାନ୍ତି ଓ ତାଙ୍କୁ ଅତିମାନବ, ମହାମାନବ ଓ ମାନବଜାତିର ତ୍ରାଣକର୍ତ୍ତା ବୋଲି ଚିତ୍ରିତ କରିଥାନ୍ତି । ପ୍ରକୃତପକ୍ଷରେ ଏ ଶ୍ରେଣୀର ଲୋକେ ବୁଦ୍ଧିହୀନ, ଅପକର୍ମୀ ମାମୁଲି ଲୋକ ଦୈବାତ୍ ଯେଉଁମାନଙ୍କର କୁକୁର ବିରାଡ଼ି ବା ଉଦ୍ୟାନ ବା କ୍ରୀଡ଼ାପ୍ରୀତି ଓ ଡାକ୍ତରଙ୍କ ପ୍ରତି ଘୃଣାଭାବ ଅଛି । ପୂର୍ବେ ଚାଟୁକାରଗଣ ବଡ଼ଲୋକଙ୍କୁ ସାଧାରଣ ବୋଲି ଧରିନେଇ ସେମାନଙ୍କୁ ଅସାଧାରଣ ମହାମହିମ ବ୍ୟକ୍ତି ବା ଦେବତା କରୁଥିଲେ । ଆଜିର ଚତୁର ଚାଟୁକାର ସେମାନଙ୍କୁ ଅସାଧାରଣ ବୋଲି ଧରିନେଇ ତାଙ୍କର ଅତି ମାମୁଲି ଗୁଣକୁ ବଡ଼ କରି ଲୋକଙ୍କ ମନରେ ତାଙ୍କ ପ୍ରତି କୌତୂହଳ ପ୍ରକାଶ କରାଯାଉଛି ।

ଏବେ ଗୋଟିଏ ବହି ପଢ଼ିଲି ଯହିଁରେ ଜଣେ ପ୍ରଖ୍ୟାତ ସାମ୍ବାଦିକ ଛଅଜଣ କୋଟିପତିଙ୍କ ସହିତ ତାଙ୍କର ସାକ୍ଷାତ୍କାରର ବିବରଣୀ ଦେଇଛନ୍ତି । ଏଥିରେ ସେ କୌତୂକାବହ ଉପାୟରେ ସେମାନଙ୍କର ଗୁଣଗାନ କରିଛନ୍ତି । ସାମ୍ବାଦିକ ନଞର୍ଥବୋଧକ ବାକ୍ୟାବଳି ସାହାଯ୍ୟରେ ବାସ୍ତବକୁ ଏକ ରହସ୍ୟାବୃତ ଭୟ-ଭୀତିର କୁହେଳିରେ ଆବୃତ କରି ସ୍ତୁତିପାତ୍ରଙ୍କ ବିରାଟତ୍ୱ ପ୍ରତିପାଦନ କରିଛନ୍ତି । ମୁଁ ବେଶ୍ ଜାଣେ ସେମାନେ ସମସ୍ତେ ଯାହା କହନ୍ତି, ଯାହା କରନ୍ତି ବା ଯାହା ଭାବନ୍ତି ସେଥିରେ କିଛି ମାତ୍ର ବୈଶିଷ୍ଟ୍ୟ ନାହିଁ କିମ୍ବା ଯାହା କହନ୍ତି ନାହିଁ, କରନ୍ତି ନାହିଁ ବା ଭାବନ୍ତି ନାହିଁ ସେଥିରେ ମଧ କିଛି ଗୁରୁତ୍ୱ ନାହିଁ; ମାତ୍ର ସାମ୍ବାଦିକ ଜଣକ ସେମାନଙ୍କ ଜୀବନଦର୍ଶନ ଓ ରୁଚି ସମ୍ପର୍କରେ ଏକ ବିସ୍ମୟକର ଭୀତିପ୍ରଦ ଚିତ୍ର ଆଙ୍କିଛନ୍ତି ଏହି ନଞର୍ଥବୋଧକ ବର୍ଣ୍ଣନା ମାଧମରେ । ଯଥା ଶ୍ରୀଯୁକ୍ତ କୋଟିପତି ସାମଲ ମଦ୍ୟ ମାଂସ ସ୍ପର୍ଶ କରନ୍ତି ନାହିଁ, ରାଷ୍ଟ୍ରାୟତ୍ତ ବାଣିଜ୍ୟ ବା ଶିଳ୍ପର ଜାତୀୟକରଣରେ ତାଙ୍କର ଆସ୍ଥା ନାହିଁ, ମାର୍କସବାଦର ନୂତନ ଚୀନା ସଂସ୍କରଣର ପ୍ରଭାବ ତାଙ୍କ ଉପରେ ପଡ଼ିନାହିଁ, ଅଧ୍ୟାତ୍ମବାଦୀର ଜୀବନରେ ଅଦ୍ୱୈତବାଦର ପ୍ରଭାବ ସ୍ୱୀକାର କରନ୍ତି ନାହିଁ ; ସର୍ବୋପରି ଆଞ୍ଚଳିକ ଭାଷାର ଅଭିବୃଦ୍ଧିରେ ଜାତୀୟ ସଂହତି ବ୍ୟାହତ ହେବାର ଧାରଣା ମଧ ତାଙ୍କର ନାହିଁ । ଯେଉଁ ମେହେନ୍ତରାଣୀ ଏଇ ମୁହୂର୍ତ୍ତରେ ମଇଳା ସଫା କରୁଛି ତା'ସହିତ ମଧ ଏ କଥାଗୁଡ଼ିକ କ'ଣ ଯୋଗ କରାଯାଇ ପାରନ୍ତା ନାହିଁ ? ଯଥା-ଶ୍ରୀମତୀ ଚେମୀ ବେହେରାଣୀ ଶଙ୍କରାଚାର୍ଯ୍ୟଙ୍କ ତ୍ୟାଗଧର୍ମ ସମର୍ଥନ କରନ୍ତି ନାହିଁ ବା ବୁଦ୍ଧଦେବଙ୍କ ଅଲାତ ଚକ୍ରରେ ବିଶ୍ୱାସ କରନ୍ତି ନାହିଁ, ଇତ୍ୟାଦି । ଏ ରୀତିର ଚାଟୁରେ ସୁବିଧା ଏତିକି ଯେ ସ୍ତୁତିପାତ୍ରଙ୍କ ସମ୍ପର୍କରେ କିଛି ନ ଜାଣି ନ ଶୁଣି ସମ୍ପୂର୍ଣ୍ଣ ଅସଂଲଗ୍ନ ଓ ଅବାନ୍ତର କଥା ଗୁଡ଼ିଏ ଫୁଲେଇ କହିବାର ସୁବର୍ଣ୍ଣ ସୁଯୋଗ ଚାଟୁକାର ପାଆନ୍ତି ଓ ତଦ୍ଵାରା ନିଜର ବୁଦ୍ଧି ବୃତ୍ତିକୁ ତୀକ୍ଷଣତର, ତୀବ୍ରତର ଓ ସୂକ୍ଷ୍ମତର କରିବା ସଙ୍ଗେ ସଙ୍ଗେ ନିଜକୁ ବୁଦ୍ଧିଦୀପ୍ତ ମହାପୁରୁଷ ବୋଲି ଭାବି ଆତ୍ମଶ୍ଳାଘା ଲଭିଥାନ୍ତି । ତେବେ ସବୁବେଳେ ଗୁଣୀଗଣାଗ୍ରଗଣ୍ୟଙ୍କ ଉପରେ ଏ ସବୁ ବିବୃତି ଅଜାଡ଼ି ନ ଦେଇ ଅନ୍ତତଃ ନୂତନତ୍ୱ ପାଇଁ ମଝିରେ ଅନ୍ତତଃ ଉମା ହାଡ଼ିଆଣୀ ବା ନାକଫୋଡ଼ିଆ ମା' ଉପରେ ପ୍ରୟୋଗ କରିବା ଉଚିତ ।

ସମ୍ବାଦପତ୍ରରେ ବଡ଼ବଡ଼ିଆଙ୍କୁ ଟେକାଟେକି କରିବାର ଆଉ ଏକ ଉପାୟର ନମୁନା ନିଅନ୍ତୁ, ଆମ ଭାଷାରେ ଧୀର, ଉଦାର, ଶାନ୍ତ, ଶିଷ୍ଟ, ନମ୍ର, ବିନୀତ, ନୀରବ, ସରଳପ୍ରଭୃତି କେତେଗୁଡ଼ିଏ ଗୁଣସୂଚକ ଛୋଟ ଛୋଟ ଶବ୍ଦ ଅଛି । ଏ ବିଶେଷଗୁଡ଼ିକର ଆକୃତିଗତ କ୍ଷୁଦ୍ରତା ସତ୍ତ୍ୱେ ଗୁଣାତ୍ମକ ମହତ୍ତ୍ୱ ରହିଛି । ସରଳତାଠାରୁ ମହତ୍ ଗୁଣ ନାହିଁ, ବିନୟ ନମ୍ରତା ତହିଁର ପରବର୍ତ୍ତୀ ଭଲଗୁଣ, ନୀରବତା ଭଲ କି ମନ୍ଦ ହୁଏତ ତହିଁରେ ମତଦ୍ୱୈଧ ଥାଇପାରେ । ବିନୟ, ନମ୍ରତା, ସରଳତା ଯଥାର୍ଥରେ ରାଜକୀୟ ଗୁଣ ତେଣୁ ଚିନ୍ତାହୀନ ହୋଇ ସେସବୁ ଶବ୍ଦ ବ୍ୟକ୍ତିନିର୍ବିଶେଷରେ ଅର୍ପଣ ନ କରିବା ଭଲ । କାରଣ ପୃଥିବୀର ସାଧୁ ସନ୍ଥମାନେ ମଣିଷହୃଦୟରେ ଏ ସବୁ ଗୁଣର ଅଭ୍ୟୁଦୟଲାଗି ଆପ୍ରାଣ ଉଦ୍ୟମ କରି ଅନେକାଂଶରେ ବିଫଳ ହୋଇଛନ୍ତି; ମାତ୍ର ସାମ୍ବାଦିକମାନେ ଏହି କ୍ଷୁଦ୍ର ଶବ୍ଦରାଜି ଯଥାର୍ଥରେ ଉଦ୍ଧତ, ପେଞ୍ଚୁଆ, ଦୁର୍ବିନୀତ ଓ ଗୋଳସ୍ରଷ୍ଟାଙ୍କ ନାମ ସହିତ ବ୍ୟବହାର କରି ସେମାନଙ୍କୁ ସନ୍ନ୍ୟାସୀ, ତ୍ୟାଗୀ ରୂପରେ ଚିତ୍ରିତ କରିଥାନ୍ତି । ଆଡ଼ମ୍ବରମୟ କୋଟିପତିଙ୍କ ଦୈନନ୍ଦିନ ଜୀବନ, ଜନ୍ମ, ମୃତ୍ୟୁ, ବିବାହ ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣନାରେ ସେମାନେ ବିଚାରବିରହିତ ହୋଇ ଏ ଶବ୍ଦରାଜି ବ୍ୟବହାର କରନ୍ତି । ଭି. ଆଇ. ପି., ରାଜନୈତିକ ନେତା, କୋଟିପତି (ଏ ତିନୋଟି ସମାର୍ଥ ଶବ୍ଦ) ଙ୍କ ସମ୍ବନ୍ଧରେ ହୁଏତ ଆପଣ କାଗଜରେ ଦିନେ ଦେଖିବେ ଏମିତି ବାକ୍ୟସମୂହ । "ମାନନୀୟ ଶ୍ରୀଯୁକ୍ତ ଲକ୍ଷପତି ନାଏକ ସରଳ ସାଧାସିଧା ଖଦଡ଼ ଅଚକନଟିଏ ପିନ୍ଧି ଛୋଟ ଗୋଲାପକଢ଼ଟିଏ ବୋତାମଘରେ ଗୁଞ୍ଜି,ମୁଣ୍ଡର ଟୋପିକୁ ଈଷତ୍ ବକ୍ର କରି ଛୋଟ ହାତ ଦୁଇଟି ଏକତ୍ର କରି ବିନମ୍ର ବଦନରେ ଧୀରେ ମଞ୍ଚ ଉପରକୁ ଉଠି ବିରାଟ ଜନତା-ଜନାର୍ଦ୍ଦନଙ୍କୁ ଅଭିବାଦନ ଜଣାଇଲେ । ସଂକ୍ଷିପ୍ତ ବକ୍ତୃତା ପରେ ମାନନୀୟ ଶ୍ରୀନାଏକ ସାମାନ୍ୟ ଜଳଯୋଗ (ମାତ୍ର ଆଠ ଦଶଟି ରସଗୋଲା ଓ କିଛି ଫଳ !) କରିବା ପରେ ବନ୍ୟା-ରାକ୍ଷସପୀଡ଼ିତଙ୍କ ପ୍ରତି ସମବେଦନା ଜଣାଇ ଧୀର ପଦକ୍ଷେପରେ ସ୍ୱକୁଟୀର (ତ୍ରିତଳ ପ୍ରାସାଦ ?) ଅଭିମୁଖେ ପ୍ରସ୍ଥାନ କଲେ । ତା' ପୂର୍ବରୁ ସେ ପନ୍ଦରଜଣ ସେବିକା ଅଭିନୀତ ନିର୍ଦ୍ଦୋଷ ଏକାଙ୍କିକାଟିଏ ଓ ସଙ୍ଗୀତାଭିନୟ ଦେଖୁଥିଲେ । ଶ୍ରୀଯୁକ୍ତ ନାଏକ କ'ଣ ବନାରସାଛିଟ ବା ବାଘଛାଲ (ଜଣେ ଅଧେ ପିନ୍ଧିବାର ନଜିର ଥିଲେ ହେଁ) ପିନ୍ଧିଥାନ୍ତେ ? ନା' ଛୋଟ ଗୋଲାପକଢ଼ ନ ପିନ୍ଧି ପନ୍ଦର ଇଞ୍ଚ ବ୍ୟାସାର୍ଦ୍ଧର ତାଲିଆ ଫୁଲ ବା ଚରକି ବାଣ ଲଗାଇ ବିରାଜମାନ କରିଥାନ୍ତେ ? ନା ଛୋଟ ବକ୍ତୃତାକୁ ବଡ଼ କରି କହିବାର ଶକ୍ତି ତାଙ୍କଠି ଥିଲା ? ଆଶ୍ଚର୍ଯ୍ୟ କଥା ପଇସା ଦେଇ ଏ ସବୁ ଆମେ ପଢୁଁ ।

ଏସବୁ ବଡ଼ଲୋକ ଯେତେଦିନ ବଞ୍ଚିଥାନ୍ତି ତାଙ୍କ ଆଗମନ, ଜନ୍ମଦିବସ, ବିବାହଦିବସ (ବିଚ୍ଛେଦ ?) ରୌପ୍ୟ, ସୁବର୍ଣ୍ଣହୀରକ ଜୟନ୍ତୀର ଭୂରିଭୂରି ବର୍ଣ୍ଣନା ପାଠକଙ୍କୁ ତାରିଫ୍ କରିବାକୁ କୁହାଯାଏ । ତା'ପରେ ତାଙ୍କ ବାପା ମରନ୍ତି, ଯାହାଙ୍କୁ ମୂକ ସାଧକ, ନୀରବକର୍ମୀ ବୋଲି ଆଖ୍ୟା ଦିଆଯାଏ । ଆଉ କେତେକ ବର୍ଷ ପରେ ମା' ମରନ୍ତି ; ତାଙ୍କୁ ସ୍ୱାଧୀ, ପତିବ୍ରତା, ଧର୍ମପରାୟଣା, ବୋଲି ବର୍ଣ୍ଣନା କରାଯାଏ, ଯେପରିକି ମହୀୟସୀଙ୍କ ବ୍ୟକ୍ତିଗତ ଜୀବନ ସହିତ

ଅଙ୍ଗାଙ୍ଗୀ ସମ୍ପର୍କ ଥିଲା ସାମ୍ବାଦିକଙ୍କର । ଏ ସବୁ ସ୍ତୁତିବାଣୀର କୃତ୍ରିମତାରେ ପାଠକ ଯେତେବେଳେ ଏକାବେଳେକେ ଥକି ବିରକ୍ତ ହୋଇ ଯାଇଥାଏ ସେତିକିବେଳେ ଅତିମାନବଙ୍କ ଆକସ୍ମିକ 'ଅକାଳ' 'ଦେହାନ୍ତ' ହୁଏ । ମୃତ୍ୟୁ ସାଧାରଣ ଜୀବନରେ ବା ଅତିମାନବ ପକ୍ଷରେ ନିତ୍ୟନୈମିତ୍ତିକ ଘଟଣା, ହୁଏତ ଗୁରୁତ୍ୱପୂର୍ଣ୍ଣ ଘଟଣା ; କିନ୍ତୁ ଏଥର ପାଠକର ଆଉ ରକ୍ଷା ନାହିଁ । ଯେଉଁ ମହାତ୍ମାଙ୍କ ଜବୀଦଶାରେ ସାଦାସିଧା ଅଟକନ (ଯାହାର ଆକୃତି ପ୍ରକୃତି ନକ୍ସା ତିନିଜଣ ବିଶେଷଜ୍ଞଙ୍କଦ୍ୱାରା ଅନୁମୋଦିତ ଓ ଦେଶ ବିଦେଶର ଖ୍ୟାତିସମ୍ପନ୍ନ କାରିଗର ଦ୍ୱାରା ଯାହା ତିନି ମାସରେ ତିଆରି) ବା ଶାନ୍ତି କୁଟୀରର (ସାହାଜାହାନ ବାଦସା'ଙ୍କ କୀର୍ତ୍ତି ବୋଲି ଭ୍ରମ ହେବ) ଅର୍ଥହୀନ ପ୍ରଶସ୍ତି ଶୁଣି ସାରିବା ପରେ ପାଠକକୁ ପୁଣି ନିରାଡ଼ମ୍ବର ନୀରବ ଶେଷଯାତ୍ରା, ଭସ୍ମବିସର୍ଜନ, ସମାଧିକ୍ରିୟା ଓ ଅନ୍ତ୍ୟେଷ୍ଟିର ବିସ୍ତାରିତ ବିବରଣୀ ପଢ଼ିବାକୁ ପଡ଼େ । ମାସ ମାସ ଧରି ପତ୍ର-ପତ୍ରିକା ସବୁ ଜାତୀୟ-କବି-ଲେଖନୀ-ପ୍ରସୂତ ''ବିୟୋଗେ'', ''ପ୍ରୟାଣେ'' ପ୍ରଭୃତି ଶୋକଗୀତ ଦ୍ୱାରା ସ୍ଫୀତ ହୁଏ । ସର୍ବତ୍ର ସେଇ ନମ୍ରତା, ସରଳତା,ନୀରବତା, ତ୍ୟାଗର ସ୍ତୂପୀକୃତ ଶବ୍ଦରାଜିର ପୁନରାବୃତ୍ତି । ପାଠକର ମାନସିକ ପୀଡ଼ା ଓ ଅବସାଦର ସୀମା ନ ଥାଏ । ଆପଣମାନଙ୍କର ସ୍ପଷ୍ଟ ମନେ ଥିବ ଯେତେବେଳେ ଶ୍ରୀଯୁକ୍ତ ଚଉଧୁରୀଙ୍କର ମର (ଅମର ହୋଇଥିଲେ ଶ୍ମଶାନକୁ ନିଆଯା'ନ୍ତା କାହିଁକି ?) ଶରୀର ଶ୍ମଶାନକୁ ନିଆଗଲା, ସେତେବେଳେ ଖବରକାଗଜରେ ସମ୍ବାଦ ପରିବେଷିତ ହୋଇଥିଲା ଯେ ଦେଶ-ବିଦେଶର ଅନେକ ବିଶିଷ୍ଟ ନେତା ଶବାନୁସାରୀ ଶତାଧିକ ଯାନମାନଙ୍କରେ ବସିଥିଲେ ଏବଂ ଯେତିକି ଫୁଲମାଳ ମିଳିଥିଲା ତାହା ତିନିଟି ଟ୍ରକରେ ନିଆଯାଇଥିଲା । ଅଥଚ ଏହାକୁ ଆମେ କହିବୁ ନୀରବ, ନିରାଡ଼ମ୍ବର, ନିରାଭରଣ ଶୋଭାଯାତ୍ରା ? ଶବଯାତ୍ରାରେ କ'ଣ ତେଲିଙ୍ଗି ବାଜା ବାଜୁଥାନ୍ତା, ଶଙ୍ଖ ହୁଳହୁଳି ଦେଇ ଦେବଦାସୀଗଣ ବିବସ୍ତ୍ର ହୋଇ ଓଡ଼ିଶୀନୃତ୍ୟ ପରିବେଷଣ କରିଥାନ୍ତେ ? ରତିବିଳାପରେ ଯୁବତୀଗଣ ଚିତାଗ୍ନିରେ ଆତ୍ମୋତ୍ସର୍ଗ କରିଥାନ୍ତେ ? ବା ଶ୍ମଶାନରେ ଗୋଟାଏ ଫୁଟବଲ୍ ଖେଳର ଆୟୋଜନ ହୋଇଥାନ୍ତା ?

ମୃତ୍ୟୁ ସମକ୍ଷରେ ବି ଚାଟୁ ? ସର୍ବ ସାମ୍ୟବାଦୀ ଆଗରେ ଭେଦାଭେଦ, ତାରତମ୍ୟ ? ନେତା ହେଲେ 'ସ୍ୱର୍ଗାରୋହଣ' (ମୃତବ୍ୟକ୍ତିଙ୍କ ସ୍ୱର୍ଗରେ ବିଶ୍ୱାସ ନ ଥିଲେ ମଧ୍ୟ) 'ସଲିଳ ସମାଧି' ପ୍ରଭୃତି ଅଭିଜାତ୍ୟସୂଚକ ଶବ୍ଦର ପ୍ରୟୋଗ ସାଧାରଣ ଲୋକେ ମଲେ 'ଚିତ୍‌ପଟାଙ୍ଗ୍' 'ପୋଡ଼ିମଲେ', 'ବୁଡ଼ିମଲେ' ଇତ୍ୟାଦି ହୀନିମାନିଆ ଶବ୍ଦର ବ୍ୟବହାର ! ଜଣେ କାହିଁକି ଆଖିଡ଼ିମା ଓଲଟାଇ ଦାନ୍ତନିକୁଟି ମରିବ ଅନ୍ୟଜଣେ କାହିଁକି ପ୍ରଶାନ୍ତ ବଦନରେ ଦରସ୍ମିତ ଫୁଟାଇ ଇହଲୀଳା ସାଙ୍ଗ କରିବ ? (ସ୍ୱର୍ଗତ ଜନୈକ ପୁଲିସ ଆଇ.ଜି.ଶବ ଦେଖିଲାମାତ୍ରେ ଓହ୍ଲାଇ ପଡ଼ି ଅନାମଧେୟର ମଧ୍ୟ ଆତ୍ମା ପ୍ରତି ଶ୍ରଦ୍ଧା ଅର୍ପଣ କରିବାବିଧି ଯାବଜ୍ଜୀବନ ପାଳନ କରିଥିବାର ମୁଁ ନିଜେ ଜାଣେ)

ସାମ୍ବାଦିକମାନେ ନିରର୍ଥକ ଶବ୍ଦରାଜି ବ୍ୟବହାର କରନ୍ତି କ'ଣ ସମ୍ବାଦପତ୍ରର କଳେବର ବୃଦ୍ଧି ପାଇଁ ନା ଚାଟୁପାଇଁ ? ନା' ତରବରରେ ଲେଖିବାର ଅଭ୍ୟାସ ଯୋଗୁଁ ଚାଟୁ ପ୍ରକୃତିଗତ

ହୋଇଯାଏ ? ନା ଏ ସବୁ ଶବ୍ଦ ପ୍ରୟୋଗ ଦୂରଭିସନ୍ଧିମୂଳକ ? ସରଳ (ପୁଣି ସେଇ ଶବ୍ଦ) ପାଠକଙ୍କ ପଇସାରେ ଧନିକଠାରୁ ସ୍ୱାର୍ଥ-ସାଧନ ଲାଗି ?

ଜାପାନରେ କୁଆଡ଼େ କାହାରିକୁ ଅନୁରୋଧ କଲାବେଳେ ବାକ୍ୟର ପ୍ରତିଶବ୍ଦ ପୂର୍ବରେ ସମ୍ମାନସୂଚକ ଶବ୍ଦ ବ୍ୟବହାର କରାଯାଇଥାଏ । ଯଥା - ମହାଶୟ, ଦୟାକରି ମାନନୀୟ ଟେବୁଲ ଉପରୁ ମାନନୀୟ ଛତାଟିକୁ ଆଣନ୍ତୁ ; ମାନନୀୟ ବନ୍ଧୁ ମହାଶୟ, ମାନ୍ୟବର ଗ୍ଲାସରେ ମାନନୀୟଙ୍କର ମୁନ୍ଦିଏ ପୂରାଇ ଆଣିବେକି ? ଦିନେ ହୁଏତ ଆମେ ଖବରକାଗଜରେ ପଢ଼ିବୁଁ ସୁଧୀ ସାହିତ୍ୟିକ ସାମ୍ବାଦିକ ଡକ୍ଟର ଚାଟୁ ସେନାପତିଙ୍କ 'ସ' ଅନୁପ୍ରାସର ଲେଖା ''ସରଳପ୍ରାଣ ମାନ୍ୟବର ସହସ୍ର-କୋଟି ସୁବୁଦ୍ଧି ସଫେଦ୍ ଆସନରେ ସୁରଙ୍ଗଠାଣିରେ ବସି ସରଳ ସମସ୍ୟାକୁ ସରଳତର କରି ସାବଲୀଳ ରୀତିରେ ସରସହୃଦୟାଙ୍କୁ ବୁଝାଇ ସୁନମ୍ର ବଦନରେ ମୂକ ଅଭିବାଦନ ଜଣାଇ .... ଖବରକାଗଜ ପୋପାଡ଼ି ଦେଇ ଆପଣ କ'ଣ କହି ପାରିବେ ମାନ୍ୟବର ସମ୍ପାଦକ ମହାଶୟ ! ଧନ୍ୟବାଦ ବିଦାୟ, ନମସ୍ତେ'' ?



# ତର୍କ ବିତର୍କ

ଗ୍ରହାନ୍ତରରୁ ବା ଚନ୍ଦ୍ରାଲୋକରୁ ଯେବେ କେହି ପୃଥିବୀପୃଷ୍ଠକୁ ଆସି ଜାଣନ୍ତେ ମଣିଷ କିପରି ସୃଷ୍ଟି ଆରମ୍ଭରୁ ଅବିରଳ ତର୍କବିତର୍କ (ଅବଶ୍ୟ ପୃଥିବୀର ସମସ୍ତ ଦେଶରେ ଏ ସ୍ୱାଧୀନତା ନାହିଁ ) କରିବାରେ ଲାଗିଛି, ତେବେ ସେମାନେ ପରସ୍ପର ମଧ୍ୟରେ ଏଇ ମର୍ମରେ କଥାବାର୍ତ୍ତା ହୁଅନ୍ତେ – ''ଦେଖ, ମଣିଷଗୁଡ଼ାକ ତ ବଡ଼ ବିଚିତ୍ର ଜୀବ ! ଯୁକ୍ତିତର୍କ, ବାକ୍‌ବିତଣ୍ଡା ଏମାନଙ୍କୁ କ'ଣ ଏତେ ଭଲ ଲାଗେ ! ଆବାଲ୍ୟରୁ ଯୁକ୍ତିତର୍କ କରୁଛନ୍ତି, ତେବେ ସୁଦ୍ଧା ମନ ମାନୁନାହିଁ ! ଏ ତର୍କବିତର୍କରେ ପୁଣି ଲାଭ କ'ଣ ? ଜଣେ କ'ଣ ଅନ୍ୟର କଥା ମାନି ଯାଉଛି ବା ନିଜର ମତ ବଦଳ କରୁଛି ? ନିଜ ନିଜର ଯାହା ମତ, ସିଦ୍ଧାନ୍ତ, ବିଶ୍ୱାସ ବା ଧାରଣା ତାହା ମଣିଷ ସହଜାତ ବୁଦ୍ଧି ବଳରେ ଆପେ ଆପେ ଅଜ୍ଞେୟ ପନ୍ଥାରେ ପାଏ କିନ୍ତୁ ଯୁକ୍ତିତର୍କ ଦ୍ୱାରା ସେ ସବୁ ଅନ୍ୟ ଉପରେ ଲଦିବାର ଚେଷ୍ଟା କରେ କାହିଁକି ? ଯେଉଁ ଯୁକ୍ତି ତା' ନିଜ ମନରେ ମୋଟେ ରେଖାପାତ ନ କରନ୍ତା, ପତିଆରା ନ ଆଣନ୍ତା ତାହାକୁ ତାତି ଲାଲ ହୋଇ ଅନ୍ୟ ଉପରେ ବୃଥା ସେ ଚାପେ କାହିଁକି ? ଫେର୍ ଏସବୁ ବୁଝି ସମଝି ମଧ୍ୟ ତର୍କବିତର୍କ ଜରିଆରେ ମଣିଷ ଅନ୍ୟକୁ ନିଜମତରେ ଦୀକ୍ଷିତ କରିବାର ଆଶାରଖେ । ଏହା ଅବଶ୍ୟ ମଣିଷ ଜାତିର ଆଶାବାଦୀତାର ଚରମ ନିଦର୍ଶନ । ଏଥିପାଇଁ ଏ ଦୁନିଆର ଜୀବଙ୍କୁ ସାଧୁବାଦ ଓ ସ୍ୱାଗତ ସମ୍ଭାଷଣ ଜଣାଇବା ଉଚିତ ।''

ଧରନ୍ତୁ ଆପଣଙ୍କ ନିଜ କଥା । ହୁଏତ ଆସି ଦରବୁଢ଼ା ହେଲେଣି । ପିଲାଟି ଦିନରୁ ଆଜି ଯାକେ କେତେ ହଜାର ତର୍କବିତର୍କରେ ଯୋଗ ଦେଇ ନ ଥିବେ ! ଶିଶୁ ଅବସ୍ଥାରେ ଧାଇମା' ସଙ୍ଗରେ ବହେ ଝଗଡ଼ିଥିବେ ଏବଂ ମନେ ମନେ ସବୁଥର ଜିଣିଥିବେ । କିନ୍ତୁ ଧାଇମାକୁ ପଚାରିଥିଲେ ସେ କ'ଣ ତୁମର ଜୟ ମାନିଥାନ୍ତେ ? ତା'ପରେ ବୟସ ବଢ଼ିଲାରୁ କକାଖୁଡ଼ୀ, ଅଜା ଆଈ ସାଙ୍ଗରେ ସିମିତି କେତେ ଯୁଝିଥିବେ ଏବଂ ପ୍ରତିଥର ହୁଏତ ମନେ ମନେ ସେମାନଙ୍କୁ ଚିତ୍‌ପଟାଙ୍ଗ କରିଥିବେ କିନ୍ତୁ ଆପଣଙ୍କ ଯୁକ୍ତି ସେମାନଙ୍କ ମନରେ କଅଣ ଟିକିଏ ହେଲେ ଦାଗ ଆଙ୍କିଥିବ ? ସ୍କୁଲରେ ମଧ୍ୟ ତର୍କ ପ୍ରାଙ୍ଗଣରେ ବୀରପରି ତର୍କଯୁଦ୍ଧକୁ ଝାସ ଦେଇଥିବେ, କିନ୍ତୁ କେହି କେବେ ମରିବାର ବା କ୍ଷତବିକ୍ଷତ ହେବାର ଦେଖିଛନ୍ତି ? କଲେଜ ଜୀବନରେ ଧର୍ମ–ରାଜନୀତି–ସାହିତ୍ୟ–ଦର୍ଶନର ଯୁକ୍ତିବାଣ ଫୁଟାଇ ହୁଏତ କାନ୍ଥ ଫଟାଇ ଦେଇଥିବେ କିନ୍ତୁ କେହି ସମକାଳୀନ ପ୍ରତିପକ୍ଷ ଆପଣଙ୍କ ବିଜୟ ବୈଜୟନ୍ତୀ ଉଡ଼ିବାର

ଦେଖି ନ ଥିବ । ପରବର୍ତ୍ତୀ ଜୀବନରେ ସତ୍ୟର ପ୍ରତିଷ୍ଠାପାଇଁ, ସଂସ୍ଥାପନପାଇଁ, ପ୍ରସାରପାଇଁ କଳ୍କି ଅବତାର ସାଜି ନିଜ ଘରେ ; ପରଘରେ, ଅଫିସରେ, ଦାଣ୍ଡଘାଟରେ, ତର୍କ ତରବାରୀ ଅଭିଜ୍ଞ ଖେଳୁଆଡ଼ ପରି ବୁଲାଇଥିବେ କିନ୍ତୁ ମ୍ଳେଚ୍ଛନିବହ–ନିଧନ ହୋଇ ନ ଥିବେ ବା ଧର୍ମ ସଂସ୍ଥାପନ ବା ନବଯୁଗ ପ୍ରତିଷ୍ଠା ସମ୍ଭବ ହୋଇ ନ ଥିବ । ଯେବେ ଏ ସବୁ ମିଛ ବୋଲି ଭାବୁଛନ୍ତି, ତେବେ ଛାତିରେ ହାତଦେଇ ମାତ୍ର ତିନିଜଣଙ୍କ ନାମ କୁହନ୍ତୁ ଯେଉଁମାନଙ୍କୁ ଯୁକ୍ତିତର୍କ ବଳରେ ଆପଣଙ୍କ ପଟକୁ ଆଣିପାରିଛନ୍ତି ଗଲା ଚାଳିଶ ପଚାଶ ବର୍ଷ ଭିତରେ । ଯେବେ କହିପାରିବେ ତେବେ ବାସ୍ତବିକ ଆପଣ ଭାଗ୍ୟବାନ, ଧନ୍ୟବାଦର ପାତ୍ର ।

ଏସବୁ କଥା କହି ସୂଚନା ଦିଆ ଯାଉନାହିଁ ଯେ ମଣିଷ କେବେ ନିଜର ମତ ପରିବର୍ତ୍ତନ କରେ ନାହିଁ । ମଣିଷ ମତ ପରିବର୍ତ୍ତନ କରେ ; କିନ୍ତୁ ଅନ୍ୟର ଯୁକ୍ତି ବଳରେ ସଚରାଚର ତାହା କରେ ନାହିଁ । ଧରନ୍ତୁ ମୁଁ ନାବାଳକ ଅବସ୍ଥାରୁ ଆପେ ଆପେ ଅନ୍ୟର ପ୍ରରୋଚନାରେ ନ ପଡ଼ି ସମାଜବାଦୀ ହେଲି । କାହା ଯୁକ୍ତିତର୍କ ଶୁଣି ମୁଁ ଯେମିତି ବିଡ଼ି ସିଗାରେଟ ପିଇବା ଶିଖିନାହିଁ, ସିମିତି କାହା କଥାରେ ପଡ଼ି ମୁଁ ସମାଜବାଦୀ ହୋଇନାହିଁ । ଏହା ସତକଥା । କିପରି, କାହିଁକି ମୁଁ ଏ ରାଜନୈତିକ ମତବାଦ ଗ୍ରହଣ କଲି ତାହା ମୋର ଅଜ୍ଞେୟ । ମାତ୍ର ସଙ୍ଗେ ସଙ୍ଗେ ମୁଁ ସମାଜବାଦ ସପକ୍ଷରେ ନାନାଯୁକ୍ତି ବାଢ଼ି ବନ୍ଧୁବାନ୍ଧବ ସାଙ୍ଗ ସାଥୀଙ୍କୁ ବ୍ୟତିବ୍ୟସ୍ତ ଉତ୍ୟକ୍ତ କରିବାରେ ଲାଗିଲି । ଯୁକ୍ତିଗୁଡ଼ାକ ହୁଏତ ଭାରି ଟାଣୁଆ କିନ୍ତୁ ସେହି ସବୁ ଯୁକ୍ତି ମାତ୍ର ଦୁଇମାସ ପୂର୍ବରୁ ମୁଁ ନିଜେ ହସି ଉଡ଼ାଇ ଦେଇ ଥାଆନ୍ତି । ବନ୍ଧୁ ବିଚାରାଏ ମୋତେ ବିତର୍କରୁ ନିବର୍ତ୍ତାଇବାପାଇଁ ବହୁ ଚେଷ୍ଟା କଲେ ମାତ୍ର ପାରିଲେ ନାହିଁ । ଯୁକ୍ତିର ସୁଅ ଏଡ଼ାଇବା ପାଇଁ, ଯୁକ୍ତିର ଗତି ବଦଳାଇବା ପାଇଁ ମଧ୍ୟ ଯତ୍‌ପରୋନାସ୍ତି ଉଦ୍ୟମ କଲେ, ସବୁ ବ୍ୟର୍ଥ ହେଲା । ମୋତେ ଜଣାପଡୁଥାଏ ସେମାନେ ଯିମିତି ଜଳିଯାଉଥିବା ଗୁଡ଼ାଏ ଦରପୋଡ଼ା ନିଆଁଖୁଣ୍ଟା, ଯୁକ୍ତିବଳରେ ସେମାନଙ୍କୁ ଚୂଲିରୁ ଉଦ୍ଧାର କରିବା ମୋର ପବିତ୍ର ଓ ପରମ କର୍ତ୍ତବ୍ୟ । ମୁଁ ସେମାନଙ୍କୁ ବହୁତ ଟଣାଟଣି ଭିଡ଼ାଓଟରା କଲି ସତ, ସେମାନେ କିନ୍ତୁ ହସି ହସି ପୋଡ଼ି ପାଉଁଶ ହେବାକୁ ଖୁସି ହେଲେ, ପସନ୍ଦ କଲେ । ମୋ ହାତ ଏଣେ ତାତିରେ ଜଳିପୋଡ଼ି ଯନ୍ତ୍ରଣା ପାଉଥାଏ ।

ଜାତୀୟତା କ୍ଷେତ୍ରକୁ ଆସନ୍ତୁ । ଛାଏଁ ଛାଏଁ ନିଜ ମନକୁ ମୁଁ ଜାତୀୟବାଦୀ ହୋଇଛି, କାହାରି ପ୍ରରୋଚନା ବା ଯୁକ୍ତିରେ ନୁହେଁ । ମୋର ଧାରଣା ଥିଲା ଯେ ସାହେବମାନେ ଯେଣୁ ଆମ ଦେଶ ଶାସନ କରୁଛନ୍ତି ସେମାନେ ଅବଶ୍ୟ ଭାରତର ହିତ ଚିନ୍ତାରେ ଅହରହ ବ୍ୟସ୍ତ ଥିବେ, ଦିନରାତି ତାଙ୍କୁ ନିଦ ମାତ୍ରୁ ନଥିବ । କିପରି କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ ଉନ୍ନତି କଲେ ଯୋଜନା କରି ଅଳ୍ପଦିନରେ ବହୁଦିନ ଧରି ଅବହେଳିତ ରାଜ୍ୟକୁ ସଭ୍ୟ, ଆଧୁନିକ ଦେଶରେ ପରିଣତ କରି ହେବ; ସେଇ ଚିନ୍ତା ତାଙ୍କୁ ଘାରିଥିବ; ମାତ୍ର ତତ୍କାଳୀନ କମିଶନର ପୋଲିସ ସାହେବଙ୍କ ଚାଲିଚଳନ, ରୀତିନୀତି ଆଚାର ବ୍ୟବହାରରୁ ଜଣାଗଲା ଯେ ସେମାନଙ୍କ ମୁଣ୍ଡ

ନିଜ ସୁଖ ସୁବିଧା ଚିନ୍ତାରେ ବିଲାତର ମଙ୍ଗଳ ଚିନ୍ତାରେ ଭରପୁର, ଆମ ଦେଶ କଥାର ସେଠି ସ୍ଥାନ ନାହିଁ । ବରଞ୍ଚ ଓଲଟି ସେମାନେ ଭାବୁଛନ୍ତି ଯେ କଳାଲୋକଙ୍କ ବୋଝ ଭଗବାନ ତାଙ୍କ ଉପରେ ଲଦି ଦେଇଛନ୍ତି । ମୋର ହୃଦବୋଧ ହେଲା ଯେତେ ଦୁଃଖକଷ୍ଟ ହେଉନା କାହିଁକି ଗୋଟାଏ ଦେଶ ସେହି ଦେଶର-ବିଚାରବନ୍ତ ନିଷ୍ଠାପର ଲୋକଙ୍କ ଦ୍ୱାରା ଶାସିତ ହେବା ଉଚିତ । ଏହାହିଁ ଜାତୀୟତାବାଦର ମୂଳବୀଜ । ମାତ୍ର ପରେ ଯେତେବେଳେ 'କାରା କବିତା' ଓ 'ବନ୍ଦୀର ଆତ୍ମକଥା' ପଢ଼ିଲି, ସେତେବେଳେ ତାହାର ପୂର୍ଣ୍ଣ ବିକାଶ ହେଲା । ସେ ଏକ ବିଚିତ୍ର ଅନୁଭୂତି, ଅବର୍ଣ୍ଣନୀୟ ଅତୀନ୍ଦ୍ରିୟ ଅଭିଜ୍ଞତା । ମାତ୍ର ବିନା ତର୍କବିତର୍କରେ ଯିମିତି ଏ ଅବବୋଧ ଜନ୍ମିଛି ମୁଁ ସିମିତି ଆରମ୍ଭ କରିଦେଲି, ''ଭାଇ ଓ ଭଉଣୀମାନେ'' ବଢ଼ିମା ନୁହେଁ, ମୋ ଯୁକ୍ତି ଗୁଡ଼ାକ ଏଡ଼େ ତୀକ୍ଷଣ ଏବଂ ଲକ୍ଷ୍ୟ ଏତେ ଅଭ୍ରାନ୍ତ ଯେ ହାତୀ ପରି ଜାନୁଆରର ମୋଟା ଚମଡ଼ା ଅନାୟାସରେ ଭେଦି ଯାଇଥାନ୍ତା । କିନ୍ତୁ ଆଶ୍ଚର୍ଯ୍ୟ କଥା ମୋ ବନ୍ଧୁମାନଙ୍କୁ ତାହା ମୋଟେ ସ୍ପର୍ଶ ମଧ କଲା ନାହିଁ । ମଣିଷଙ୍କ ଚମଡ଼ା ସତରେ କ'ଣ ଏତେ ଯୁକ୍ତିତର୍କ ପ୍ରତିରୋଧକ ।

ଏଥିର ପ୍ରକୃଷ୍ଟ ପ୍ରମାଣ ମିଳିବ ସରକାରୀ ବେସରକାରୀ ବିତର୍କର ଇତିହାସରେ । ଉଦାହରଣ ନିଅନ୍ତୁ ଜାତିସଂଘର କାଶ୍ମୀର ବିତର୍କ । କୃଷ୍ଣମେନନ ବା ଚଗଲାଙ୍କ ସୁଦୀର୍ଘ ଐତିହାସିକ ବକ୍ତୃତାରାଶିରେ ଅଭିଭୂତ ହୋଇ, ପରାଭବ ମାନି, ପ୍ରତ୍ୟୁତ୍ତର ଦାନରୁ ଜାଫ୍ରୁଲା ବା ଜଲଫିକର ଆଲି ଭୁଟୋ କ'ଣ ବିରତ ହୋଇଥିଲେ ନା କାଶ୍ମୀର ବିବାଦର ପରିସମାପ୍ତି ହେଲାବୋଲି ଘୋଷଣାକରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ଶୁଣାଯାଏ ଗାନ୍ଧିଜୀଙ୍କ ଯୁକ୍ତିର ପ୍ରଭାବକୁ ଭୟକରି ଇଲିଂଟନ ଲଙ୍ଗୁଳୀ ବାବାଜୀ ସହିତ ସାକ୍ଷାତ କରିବେ ନାହିଁ ସଂକଳ୍ପ କରିଥିଲେ । ଧରନ୍ତୁ ଦୈବାତ୍ ଦୁହିଁଙ୍କ ଭେଟ ହୋଇଥାନ୍ତା ଓ ଯୁକ୍ତତର୍କ ମଧ ଚାଲିଥାନ୍ତା । ସାହେବ  କ'ଣ ଗାନ୍ଧିଜୀଙ୍କ କଥାର ଯୁକ୍ତିଯୁକ୍ତତା ବୁଝି 'ଭାରତ ସ୍ୱାଧୀନ' ବୋଲି ଘୋଷଣା କରି ବିଲାତକୁ ଫେରି ଯାଇଥାନ୍ତେ ? ତାଙ୍କ ଦେଶର ଲୋକେ ସେ କ୍ଷେତ୍ରରେ ତାଙ୍କୁ ପାଗଳ ବୋଲି କ'ଣ ଆଖ୍ୟା ଦେଇ ନଥାନ୍ତେ ? ଭାରତୀୟ କଂଗ୍ରେସ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱକାଳ ତର୍କ ବିତର୍କ ପରେ ଯେଉଁ ମାଇଲ ମାଇଲ ପ୍ରସ୍ତାବ ବିଭିନ୍ନ ସଭା ସମିତିରେ ଆଗତ କଲେ ସେ ସବୁର ଯୁକ୍ତିଯୁକ୍ତତାରେ ଇଂରେଜ ସରକାର କ'ଣ କଳାଲୋକଙ୍କ ଆଡ଼କୁ ଢଳି ଭାରତ ଛାଡ଼ି ଚାଲିଗଲେ ?

ଲୋକସଭା, ରାଜ୍ୟସଭା ଓ ବ୍ୟବସ୍ଥାପକ ସଭାରେ କ'ଣ ହେଉଛି ଆଖି ପକାନ୍ତୁ । ଦ୍ୱିବେଦୀ ବା ମିଶ୍ରଙ୍କ ଯୁକ୍ତି ଅକାଟ୍ୟ ବୋଲି ଶାସ୍ତ୍ରୀ ବା ତ୍ରିପାଠୀ କ'ଣ ମନ୍ତ୍ରୀତ୍ୱ ଛାଡ଼ି ସନ୍ନ୍ୟାସ ଧର୍ମ ଗ୍ରହଣ କଲେ ? ନା ନନ୍ଦା, ପଟ୍ଟନାୟକଙ୍କ  ଯୁକ୍ତି ଶୁଣି କାମାଥ ବା ଦାସ କଂଗ୍ରେସ ଦଳରେ ଯୋଗଦେଲେ ? ପୁରାଣ ଇତିହାସର ଶ୍ରୀକୃଷ୍ଣ ବା ଡ଼ିମୋସ୍ଥିନିସଙ୍କଠାରୁ ଆରମ୍ଭ କରି ଆଜିଯାକେ କିଏ ଭଲା ବିରୋଧୀ ଦଳର ଯୁକ୍ତି ମାନିନେଇ ମତାନ୍ତର ବା ଧର୍ମାନ୍ତର ଗ୍ରହଣ

କରିଛି ? ନିରୀଶ୍ୱରବାଦୀ ଓ ଅଧ୍ୟାତ୍ମବାଦୀଙ୍କ ମଧ୍ୟରେ ଯେତେ ଯେତେ ତୁମୁଳ ସଂଗ୍ରାମ ହୋଇଯାଇଛି ସେଥିରେ ହୁଏତ ତର୍କ ନଦୀ ସେମାନଙ୍କ ରକ୍ତରେ ଲାଲ ହୋଇଯାଇଥାନ୍ତା, ମାତ୍ର ଉଭୟପକ୍ଷ ସୁସ୍ଥ ଶରୀରରେ ସ୍ୱ ସ୍ୱ ମତ ଧରି ବିପରୀତ ମାର୍ଗରେ ପ୍ରସ୍ଥାନ କରିଛନ୍ତି । ଘଟଣା ଚକ୍ରରେ ପଡ଼ି ମୁଁ ନିରୀଶ୍ୱରବାଦୀ ହେଲି, ମାତ୍ର ପରେ ପରେ ବନ୍ଧୁବାନ୍ଧବଙ୍କ ମୁଣ୍ଡରୁ ଈଶ୍ୱର-ଭୂତ ଛଡ଼ାଇବାପାଇଁ ତର୍କ ବିତର୍କର ଗୁଣିଗାରିଡ଼ି ଏତେ ଉତ୍ସାହ ଓ ନିଷ୍ଠା ସହିତ ପ୍ରୟୋଗ କଲି ଯେ ଅବଶେଷରେ ବନ୍ଧୁହୀନ ଅବସ୍ଥାକୁ ଆସିଗଲି ମାତ୍ର ଅପରପକ୍ଷଙ୍କୁ ଈଶ୍ୱର-ବିମୁକ୍ତ କରି ପାରିଲି ନାହିଁ ।

ଥରେ ଥରେ ମୁଁ ଭାବେ ଫୁଟବଲ୍ ଖେଳରେ ବା ମୁଷ୍ଟି ଯୁଦ୍ଧରେ ଯେପରି ହାରଜିତ୍ ବିଚାର କରିବା ପାଇଁ ଜଣେ ଜଣେ ରେଫ୍‌ରୀ ଥାଆନ୍ତି, ତର୍କବିତର୍କମାନଙ୍କରେ ମଧ୍ୟ ସେହିପରି ବିଚାରକ ବା ମଧ୍ୟସ୍ଥ ରହିବା ଉଚିତ୍ । ତାହାହେଲେ ଜଣାପଡ଼ନ୍ତା ତର୍କ ପଡ଼ିଆରେ କିଏ କାହାକୁ ଗୋଲ୍ ଦେଲା ବା ଚିତ୍‌କଲା । ପ୍ରଚଳିତ ବ୍ୟବସ୍ଥାରେ ଦୁହେଁ ଦୁହିଁଙ୍କୁ ଜିତୁଛନ୍ତି, ଅନ୍ତତଃ ପରସ୍ପରକୁ ଏକାବେଳକେ ପରାସ୍ତ କଲେବୋଲି ଭାବୁଛନ୍ତି । ମାତ୍ର ମଧ୍ୟସ୍ଥ ବା ବିଚାରକ ଥିଲେ କେବଳ ଯେ ହାରଜିତ୍ ଜଣାପଡ଼ନ୍ତା ତାହା ନୁହେଁ, ଯିଏ ହାରିଗଲା ତା' ନାକ ଘଷି ତାକୁ ବିଚ୍ ଦାଣ୍ଡରେ ଟିଣ ପିଟି "ହାରୁଆ ବା ପାତୁଆ" ବୋଲି ଘୋଷଣା କରାଯାଇ ବିଜେତାର ଧର୍ମ ବା ମତ ଗ୍ରହଣ କରିବାକୁ ବାଧ୍ୟ କରାଯାଆନ୍ତା ।

ତାହେଲେ କ'ଣ ସଭା ସମିତିରେ, ବ୍ୟବସ୍ଥା ସଭାରେ ଯେତେଯେତେ ଉକ୍ତି ପ୍ରତ୍ୟୁକ୍ତି, ତର୍କ ବିତର୍କ ଚାଲେ ତା'ର କୌଣସି ମୂଲ୍ୟନାହିଁ ? ଅବଶ୍ୟ ଅଛି, ଦଳର ମୁଖିଆ ବା ନେତା ବା ବଡ଼ବଡ଼ିଆଙ୍କ ସିନା ମତ ବଦଳେ ନାହିଁ, ଦଳ ଭିତରେ ଯେଉଁ ଜଣେ ଦୁଇ ଜଣ ଗୋବିଚାରୀ ଥାଆନ୍ତି, ସେମାନଙ୍କ ମନ ତରଳ ଓ ଛାପନେବା ଅବସ୍ଥାରେ ଥାଏ । ସେମାନେ ତାଙ୍କ ମନର ଦୁଆର ଝରକା ଖୋଲା ରଖିଥାଆନ୍ତି । ମତବାଦୀ, ମତାନ୍ଧମାନେ ସେମାନଙ୍କୁ ବୋକା, ନିଜତ୍ୱହୀନ, ଅସ୍ମିତାଶୂନ୍ୟ ବୋଲି ଭାବନ୍ତି । ସତରେ ଯୁକ୍ତିସମ୍ମତ କଥାଶୁଣି ଯେଉଁ ଗୋବିଚାରୀ ଦଳାନ୍ତରୀ ହୁଏ ତାକୁ ରାଜନୈତିକ ଦଳ କେଡ଼େ ସନ୍ଦେହ ଚକ୍ଷୁରେ ନ ଦେଖନ୍ତି । ମାତ୍ର ତର୍କବିତର୍କର କରାମତି ଓ ଭବିଷ୍ୟତ ପ୍ରତି ଯେଉଁମାନେ ଆସ୍ଥାବାନ ସେମାନେ କିନ୍ତୁ ଏହି ଗୋଠଛଡ଼ା ଧର୍ମଦ୍ରୋହୀଙ୍କୁ ସମ୍ମାନାର୍ହ ବୋଲି ବିବେଚନା କରନ୍ତି କାରଣ ଏହି ସାଦା ସିଧା ସରଳ ଲୋକମାନେ ନିଜର ପୂର୍ବମତ ବା ପୂର୍ବଧାରଣା ଅପେକ୍ଷା ବୁଦ୍ଧିସମ୍ମତ ଯୁକ୍ତିକୁ ଉଚ୍ଚସ୍ଥାନ ଦିଅନ୍ତି, ଅନ୍ତତଃ ଏତକ ସ୍ୱୀକାର କରିବାର ସେମାନଙ୍କର ସତ୍ ସାହସ ଅଛି ଯେ ସେମାନେ ଅନ୍ୟର ବଳିଷ୍ଠ ଯୁକ୍ତି ଦ୍ୱାରା ପରାଭୂତ ହୋଇଛନ୍ତି, ସେମାନେ ସେମାନଙ୍କ ଅତୀତକୁ ମୋଟେ ଭୟ କରନ୍ତିନାହିଁ । ଖାତିର୍ କରନ୍ତି ନାହିଁ, ବରଂ ୧୯୪୨ରେ ଯାହା କହୁଥିଲେ ୧୯୬୭ରେ ତାହାକୁ ମୂଲ୍ୟହୀନ ବୋଲି ଅନୁଭବ କରି ସୁଖୀ ହୁଅନ୍ତି । ତାଙ୍କ ବିରୋଧୀମାନଙ୍କର ସେ ଧାରଣା ନାହିଁ । ଓଲଟି ସେମାନେ କୁହନ୍ତି "ଦେଖ, କେତୁଟା ଟଙ୍କାପାଇଁ ବୋକାଟା ନିଜ ଦଳ

ଧର୍ମ ଛାଡ଼ିଦେଲା !'' କେତେବେଳେ କେମିତି ହୁଏତ ଏ ଅଭିଯୋଗ ସତ ହୋଇଥାଏ କିନ୍ତୁ ବିରୋଧୀମାନେ ସତମିଛ ବିବେଚନା ନକରି ଏ ମନ୍ତବ୍ୟ କରିଥାନ୍ତି ।

ଦୁନିଆଁରେ ଯେତେକାଳ ଏମିତି କେତେଜଣ ତରଳମତି, ସରଳ ପ୍ରାଣ ଲୋକ ଥିବେ; ସେତେଦିନ ତର୍କବିତର୍କର ମର୍ଯ୍ୟାଦା, ଯଥାର୍ଥ୍ୟ ରହିଥିବ । ବିରାଟ ଶ୍ରୋତୃମଣ୍ଡଳୀରେ ଏମିତି କେତେଜଣ ଲୋକ ଅବଶ୍ୟ ଥିବେ । ମାତ୍ର ଆମେ ସେକଥା ନଭାବି ପାଖ ଆଖରେ ଥିବା ପ୍ରତ୍ୟେକ ଲୋକଙ୍କୁ ରୋବିଚାରୀ ଭାବି – (ଯିମିତି ଡନ୍ କୁଇକ୍‌ସୋଟ ବାୟୁ ଚାଳିତ ମିଲ୍‌କୁ ରାକ୍ଷସ ବୋଲି ଭାବିଥିଲା) – ଅଚାନକ ଆକ୍ରମଣ କରି ହାସ୍ୟାସ୍ପଦ ହେଉଁ । ଭୁଲିଯାଉଁ ଯେ ଶ୍ରେଷ୍ଠ ତର୍କଗୁରୁ ଜ୍ଞାନଗୁରୁ ଧର୍ମଗୁରୁ ଉଭୟ ସକ୍ରେଟିସ୍ ଓ ଶ୍ରୀକୃଷ୍ଣ ଯୁଗପତ୍ ସଶ୍ରୁଆସି ଆକ୍ରମଣ କରିଥିଲେ ମଧ୍ୟ ତିଳେ ହେଲେ ସେମାନଙ୍କୁ ସ୍ଥାନଚ୍ୟୁତ କରିପାରି ନଥାନ୍ତେ । ବେଳେ ବେଳେ ମୂର୍ଖାମିରେ ଆମେ ଏହି ମୂଢ଼ଙ୍କ ସହିତ ଝଗଡ଼ି ବସୁଁ, କିନ୍ତୁ ବରଂ ପଥରକୁ ଲହୁଣୀ କରିହେବ ଯା'ଙ୍କୁ ଯୁକ୍ତିରେ ତରଳ ବା ନରମ କରିହେବ ନାହିଁ । ସେମାନଙ୍କ ମନ ଏମିତି ଭ୍ରାନ୍ତିରେ ବୁଡ଼ି ରହିଛି ଯେ ସେମାନେ କୌଣସି କଥା ବିଶ୍ୱାସ କରିବେନାହିଁ ଯେ ପର୍ଯ୍ୟନ୍ତ ତାହା ପୂରାପୂରି ସତ ନ ହୋଇଛି । ତଥାପି କଅଣ ତାର୍କିକର ଚେଷ୍ଟାର ବିରାମ ଅଛି । ତାଙ୍କ ଚିତ୍କାରକୁ ଆମେ ଗର୍ଜନରେ ବୁଡ଼ାଇ ଦେବାକୁ ଚାହୁଁ; ମାତ୍ର ପାରୁନା, ବିତର୍କର ପ୍ରବଳ ତୋଫାନରେ ତାଙ୍କର ଭ୍ରାନ୍ତ ପତାକା ଛିନ୍ନବିଚ୍ଛିନ୍ନ କରି ଭୂପତିତ କରିବାକୁ ଚାହୁଁ, ସବୁ ଚେଷ୍ଟା ବ୍ୟର୍ଥ ହୁଏ । ପରେ ଯେବେ ଆମେ ପ୍ରକୃତିସ୍ଥ ହେଉଁ, ଆମର ଚେତା ଫେରେ, ଥଣ୍ଡା ପଡ଼ୁଁ; ସେତେବେଳେ ଜାଣୁଁ ଆମେ ନିଜେ କେଡ଼େ ବୋକା ଏବଂ ମନେ ପକାଉଁ ସେହି ସେହି ଧର୍ମାନ୍ଧଙ୍କ କଥା ଯେ କି ସଡ଼କ ଉପରେ ଛିଡ଼ା ହୋଇ ଶ୍ରୋତା ନଥିଲେ ମଧ୍ୟ କେବଳ ବତୀଖୁଣ୍ଟକୁ ସମ୍ବୋଧନ କରି ଧର୍ମ ପ୍ରଚାର କରୁଥିଲେ ।

ଆଚ୍ଛା ! ଆମେ ଅନ୍ୟଙ୍କୁ ଯିମିତି ଆଖିରେ ଦେଖୁଛୁଁ ସେମାନେ ଆମକୁ ହୁଏତ ସେମିତି ଆଖିରେ କ'ଣ ଦେଖୁ ନଥିବେ ? ମୁଁ ତ ନିଜେ ଅନ୍ୟର ଯୁକ୍ତି ତର୍କ ଶୁଣିବାକୁ ପ୍ରସ୍ତୁତ ନୁହେଁ, ଅନ୍ତତଃ ଯେତେଦିନ ଅନ୍ୟ ସବୁ ଯୁକ୍ତି ବାଦ୍ ଦେଇ କେବଳ ତାଙ୍କର ଯୁକ୍ତି ଠିକ୍ ବୋଲି ଲୋକେ ମୋ ଆଗରେ ବାଢୁଛନ୍ତି । ତଥାପି ଏମିତି କିଏ ବିତର୍କ ପ୍ରିୟ ବନ୍ଧୁ ଅଛନ୍ତି ଯେ ଜୀବଦ୍ଦଶାରେ ବିପକ୍ଷକୁ ପରାଭୂତ କରିବାର ଆଶା ଛାଡ଼ି ଦେଇଛନ୍ତି ? ଅନ୍ତତଃ ଯେତେଦିନ ପୃଥିବୀରେ ଜଣେ ଲୋକ ବଞ୍ଚିଛି ସେତେଦିନ ଯଥାର୍ଥ ତାର୍କିକ ତାକୁ ସମ୍ଭାବିତ ଧର୍ମାନ୍ତରୀରୂପେ ଅବଶ୍ୟ ଗ୍ରହଣ କରି ଚାଲିଥିବ । ସେଦିନ ଜଣେ ଉତ୍ସାହୀ ତରୁଣ ଅଶୀତି ବର୍ଷର ଏକ ବୃଦ୍ଧ କୃପଣଙ୍କ ଆଗରେ ସାମ୍ୟବାଦର ମହିମା ଓ ନୈତିକ ସୌନ୍ଦର୍ଯ୍ୟ ବୁଝାଇ ସାରା ସନ୍ଧ୍ୟା ବିତାଇଦେଲେ । ପୁଣି ସେଦିନ ଗୋଟାଏ ମଦ ଭାଟିରେ ଜଣେ ଖୋଲା ବାଣିଜ୍ୟପନ୍ଥୀ ଗୋଟାଏ ପେଶାଦାର ଜୁଆଡ଼ି ଆଗରେ ଆନ୍ତର୍ଜାତିକ ଖୋଲା ବାଣିଜ୍ୟର ଆବଶ୍ୟକତା ବିଷୟରେ ଦୀର୍ଘ ବକ୍ତୃତାଟିଏ ଦେଉଥିଲେ; ଯଦିଓ ଶ୍ରୋତା ''ଆଉ ବୋତଲେ ଆଣ'' ବୋଲି କେତୋଟି

ଶବ୍ଦ ଉଚ୍ଚାରଣ କରି ପାରୁନଥିଲେ । ପ୍ରକୃତ ପକ୍ଷରେ ଆମ ମତର ସମର୍ଥନକାରୀଙ୍କୁ ଆମେ ଉପଯୁକ୍ତ ଭାବି ସାରା ଜୀବନ କଟାଇଦେଉଁ ଏବଂ ଆହୁରି ଆନନ୍ଦର କଥା ମଧ୍ୟ) ଯେ ଜଣେ ସୁଦ୍ଧା ଭୋଟଦାତା ନପାଇଲେ ମଧ୍ୟ ଆମେ ଭୋଟ ଭିଖାରୀ ହେବାରୁ ବା ପ୍ରଚାର କାର୍ଯ୍ୟରୁ ବିରତ ହେଉନା ।

ତାହେଲେ କ'ଣ ଯେତେ ଯୁକ୍ତିତର୍କ, ବାଦ ବିସମ୍ବାଦ, ଝଗଡ଼ାଝାଟି ବ୍ୟକ୍ତିଗତ ଦୈନନ୍ଦିନ ଜୀବନରୁ ଆରମ୍ଭ କରି ଆନ୍ତର୍ଜାତିକ ସର୍ବସାଧାରଣ ସ୍ତର ପର୍ଯ୍ୟନ୍ତ ଲାଗି ରହିଛି ସେସବୁ ଅଯଥା,ବୃଥା ଏବଂ ମୂଲ୍ୟହୀନ ? ନା, ନା, ନିଶ୍ଚୟ ନୁହେଁ । ପ୍ରଥମତଃ ଏହି ବାକ୍ୟୁଦ୍ଧ ଫଳରେ ତର୍କପ୍ରିୟ ବାବଦୂକର ମେଜାଜ ଉଜ୍ଜ୍ୱଳ ଓ ନିର୍ମଳ ରହେ; ଯାହା ଫଳରେ ସେ ତା'ର ମତ ବା ସିଦ୍ଧାନ୍ତମାନ ପ୍ରାଞ୍ଜଳ ରୂପେ ଅନ୍ୟ ଆଗରେ ଉପସ୍ଥାପନ ଓ ବ୍ୟାଖ୍ୟା କରିପାରେ । ଦ୍ୱିତୀୟତଃ ଏହିସବୁ ତର୍କ ବିତର୍କ ଜରିଆରେ ମଣିଷର ଚିନ୍ତାଧାରା, ଭାବ ରାଶି ଗଗନ ପବନରେ ଖେଳି ବୁଲନ୍ତି ଏବଂ ରହସ୍ୟାବୃତ ଓ ଅଜ୍ଞେୟ ପନ୍ଥାରେ (ଯୁକ୍ତି ତର୍କ ବଳରେ ନହେଲେ ମଧ୍ୟ) ଲୋକଙ୍କୁ ପ୍ରଭାବିତ (ସଂକ୍ରମିତ ?) କରି ସେମାନଙ୍କ ମତ ବା ଧର୍ମ ପରିବର୍ତ୍ତନରେ ନିୟାମକ ହୋଇଥାନ୍ତି । ସର୍ବୋପରି ବିତର୍କ ଗୋଟିଏ ଭାରି ସୁନ୍ଦର ମଉଜିଆ ଖେଳ, ଅବସର ବିନୋଦକ । ସେଇଥିପାଇଁ ତ ଜଣେ ରେଫ୍‌ରି ବା ମଧ୍ୟସ୍ଥ କଥା କହୁଥିଲି । ତା'ହେଲେ ନିଶ୍ଚୟ ଜଣା ପଡ଼ିଥାନ୍ତା ଗଲା ଶନିବାର ସନ୍ଧ୍ୟାରେ ଆମ ଘରେ ଶ୍ରୀଯୁକ୍ତ ବ୍ୟକ୍ତି ସ୍ୱାଧୀନ ଶତପଥୀ ଓ ଶ୍ରୀଯୁକ୍ତ ସାମ୍ୟବାଦୀ ମିଶ୍ରଙ୍କ ମଧ୍ୟରେ ଯେଉଁ ତୁମୂଳ ତର୍କ ମଲ୍ଲ ଯୁଦ୍ଧ ଅନୁଷ୍ଠିତ ହେଲା ଓ ଉଭୟ ପକ୍ଷ ଧୂଳି ଧୂସରିତ ହେଲେ ସେ ଭିତରେ ଜିତାପଟ କାହାର ହେଲ ।



# ଗୋଟାଏ କୁକୁରକୁ କେନ୍ଦ୍ର କରି

ଥଣ୍ଡା ବୋଲି ଥଣ୍ଡା ଏମିତି ଥଣ୍ଡା ସେ ରାତିଟା । ସାମନାର କାଲୁଆ ପବନ କରତି ଦେଉଥାଏ ନାକକାନକୁ ।

୦° । ବସ୍ ଛିଡ଼ା ହେଲା ଷ୍ଟେସନରେ । ଆଲୁଅ ଅନ୍ଧାରରେ ଛାପ ଛାପକିଆ ବସ୍ ଷ୍ଟେସନଟି । ଯାତ୍ରୀ ଉଠିଲେ ତିନିଜଣ । ଜଣେ ପୁରୁଷ, ଦୁଇଜଣ ସ୍ତ୍ରୀ । ତିନିହେଁ ଯାକ ମହିଳା ସିଟ୍‌ରେ ବସିଗଲେ । ଠିକ୍ ବତୀଟାର ତଳେ ।

ତରୁଣୀଟିର ଛାତିରେ ଉଷୁମ ଶୀତତ୍ରାଣ, କୋଳରେ ଛୋଟ କୁଣ୍ଢେଇ ପରି କୁକୁରଟିଏ । ସମସ୍ତଙ୍କ ଆଖି ପଡ଼ିଲା ଆଗନ୍ତୁକା ଉପରେ ।

କଣ୍ଡକ୍ଟର ଆସିଲା । ଭଡ଼ା ପଇସା ନେଇ ଟିକଟ ଦେଇଛି ନ ଦେଇଛି ତା' ଆଖି ପଡ଼ିଲା ତରୁଣୀ କୋଳର ସେଇ କଉଡ଼ିଆଖିଆ କୁକୁର ଉପରେ । ଗଣ୍ଡଗୋଳର ସୂତ୍ରପାତ ହେଲା ବୋଲି ମୁଁ ବେଶ୍ ଅନୁମାନ କରି ପାରିଲି ।

ସଂଘର୍ଷ ବା କଳି ତକରାଳର ଗୋଟାଏ କିଛି ସୁଯୋଗ ସେ ଯେପରି ଖୋଜୁଥିଲା ପାଇଗଲା । କଣ୍ଡକ୍ଟରଟି ସେହି ଶ୍ରେଣୀର କର୍ମଚାରୀ ଯାହାଙ୍କ ମନ ସବୁବେଳେ ବିରକ୍ତି ଓ ଅସନ୍ତୋଷରେ ବିଷାକ୍ତ ହୋଇଯାଇଛି ଏବଂ ପ୍ରତି କଥା ଓ କାମରେ ଯେପରି ଅଶେଷ ତାର ଆପତ୍ତି ରହିଛି ଦୁନିଆଁ ବିରୋଧରେ; ବିଶେଷତଃ ଏଇ ଯାତ୍ରୀଗୁଡ଼ାକ ଉପରେ । କାରଣ ସେ ଯେତେବେଳେ ବାହାର ଥଣ୍ଡାରେ ଠିଆ ହୋଇଯାଏ ଏମାନେ ସମସ୍ତେ ଭିତରେ ଉଷୁମ ଓ ଆରାମରେ ବସି କରି ଯାଆନ୍ତି ।

''ଭିତରେ କୁକୁର ଯିବନାହିଁ; ବାହାରକୁ ଆଣନ୍ତୁ ।'' ଖଟାଳିଆ ମୁହଁ କରି କଣ୍ଡକ୍ଟର ଆରମ୍ଭ କଲା ।

କୁକୁର କୋଳରେ ଧରି ବସିଥିବା ତରୁଣୀଟି ବୋଧହୁଏ ଏପରି ଏକ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଆଗରୁ ପ୍ରସ୍ତୁତ ଥିଲେ ଏବଂ ପ୍ରଶ୍ନର ଜବାବ୍ କ'ଣ ହେବ ତାହା ମଧ୍ୟ ପୂର୍ବରୁ ଯେପରି ଠିକ୍ କରି ସାରିଥିଲେ । ତେଣୁ ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, 'କୁକୁର ବାହାରକୁ ନେବି ନାହିଁ ।''

''ମୁଁ କହୁଛି, ଆପଣ ଅଲବତ୍ କୁକୁର ବାହାରକୁ ଆଣିବେ ।''

''ଏ ପାଗରେ ମୁଁ ମୋତେ ବାହାରକୁ ଯିବି ନାହିଁ; ଥଣ୍ଡାରେ ମରିବି ନା କ'ଣ ?''

''ନାଁ ନାଁ ତୁ ମୋଟେ ବାହାରକୁ ଯିବୁ ନାହିଁ, ଦେଖାଯାଉ ସେ କ'ଣ କରୁଛି । ବାଡ଼ କଫି ଧରିନବ ଯେ'', ସଙ୍ଗିନୀ ଜଣକ କହିଲେ ।

''ବାଜେ କଥା କାହିଁକି ଶୁଣୁଛ ?'' ପୁରୁଷ ଜଣକ କହିଲେ ।

କଣ୍ଡକ୍ଟର ସଜୋରରେ ଠଂ କରି ଘଣ୍ଟି ବଜାଇ ଦେଲା । ବସ୍ ବନ୍ଦ । ଇଞ୍ଜିନର ବିଫଳ କ୍ରନ୍ଦନ ତୋଫାନିଆ ରାତିର ଶବ୍ଦ ଭେଦ କରି ଶୁଭୁଥାଏ ।

''କୁକୁର ଯେ ପର୍ଯ୍ୟନ୍ତ ବାହାରକୁ ଅଣା ନ ଯାଇଛି ସେ ପର୍ଯ୍ୟନ୍ତ ବସ୍ ଏଠାରୁ ଇଞ୍ଚେ ଆଗେଇବ ନାହିଁ ।'' ଏତକ କହି କଣ୍ଡକ୍ଟର ତଳକୁ ଓହ୍ଲାଇ ଆସି କୁକୁର ବାହାରକୁ ନ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଲାଗିଲା । ଜୀବନରେ ଏହା ତା'ର ଏକ ପରମ ମୁହୂର୍ତ୍ତ । ଆଇନ ତା' ସପକ୍ଷରେ ଏବଂ ବସ୍‌ର ସବୁ କ୍ରୋଧାନ୍ୱିତ ଯାତ୍ରୀ ତା'ର ହୁକୁମତଳେ । ତା' ନିଜର ରୁଷ୍ଟ ଆତ୍ମା ଖେଳ ଖେଳିବା ପାଇଁ ଛୁଟି ପାଇଗଲା ଯିମିତି ।

ଏଣେ ଭିତରେ ଗଣ୍ଡଗୋଳ ବଢ଼ି ଚାଲିଛି । କିଏ କହୁଛି, ''ଲୋକଟାର ଲଜ୍ଜା ନାହିଁ ।'' ଆଉ କିଏ କହୁଛି, ''ମିଲିଟାରୀ ମେଜାଜ ତାର'', ପୁଣି ପାଟି ଭିତରୁ ଶୁଭୁଛି, 'ଡାକ ପୋଲିସ''ଚାଲ କମପ୍ଲେନ୍ କରିବା', 'ଭଡ଼ା ୱାପସ ଦେଉ', 'ଠିକ୍ କଥା, ଭଡ଼ା ଫେରାଉ ''। ଜଣାଗଲା ସମସ୍ତେ ଯିମିତି ସେଇ ତରୁଣୀ ଓ ତା' କୋଳର ସେଇ ଛୋଟ କୁକୁରଟି ସପକ୍ଷରେ ।

କୁକୁରଟି କୋଳର ଉଷୁମରେ ଥାଇ ବୁକୁଳୁକୁ ମିଟିମିଟି ଆଖିରେ କ୍ଷୀଣ ଆଲୁଅ ଆଡ଼କୁ ଚାହୁଁଥାଏ । ବୁଝେ ନାହିଁ ଯେ ସମସ୍ତ ଗଣ୍ଡଗୋଳ ତା'ରି ପାଇଁ ।

କଣ୍ଡକ୍ଟର ଦରିଜା ପାଖକୁ ଆସିବାରୁ ଜଣେକ ଯାତ୍ରୀ ନୋଟ ବହିଟିଏ ପକେଟରୁ ବାହାର କରି ତା'ର ପିତୃ ଶ୍ରାଦ୍ଧ କରିବା ଉଦ୍ଦେଶ୍ୟରେ ପଚାରିଲେ, ''ବାବୁ, ତୁମର ନମ୍ବର କେତେ ?'' ମୋଟେ ବିଚଳିତ ନହୋଇ କଣ୍ଡକ୍ଟର କହିଲା, 'ଏଇ ନିଅ ।' ଆର ଜଣେ ଯାତ୍ରୀ ସାହାସ କରି କହିଲେ, ''ଭଡ଼ା ପଇସା ଫେରସ୍ତ ଦିଅ । ତୁମେ କରାର କରିଛ ଆମକୁ ନେବ ବୋଲି; ରାତିଯାକ କ'ଣ ଏଇଠି ପକାଇ ରଖିବ ?''

କଣ୍ଡକ୍ଟର ରୁକ୍ଷ ଗଳାରେ କହିଲା, ''ଭଡ଼ା ୱାପସ୍ ମିଳିବ ନାହିଁ ।''

ଦୁଇ ତିନିଜଣ ଯାତ୍ରୀ ଅନନ୍ୟୋପାୟ ହୋଇ ବାସ୍‌ରୁ ଓହ୍ଲାଇ ଅନ୍ଧାରରେ ଅଦୃଶ୍ୟ ହୋଇଗଲେ । ଏଣେ କଣ୍ଡାକ୍ଟର ବୁଲିପଡ଼ି ଡ୍ରାଇଭର ପାଖକୁ ଗଲା । ଏବଂ ତା' ସଙ୍ଗରେ ହସି ହସି କଥାବାର୍ତ୍ତା କରିବାକୁ ଲାଗିଲା ।

ଆଉ ଗୋଟିଏ ବସ୍ - ବୋଧ ହୁଏ ଶେଷ ବସ୍-ସାଏଁ କରି ପାଖ ଦେଇ ଚାଲିଗଲା । ଯାତ୍ରୀମାନେ ତାକୁ ଅଟକାଇବା ପାଇଁ ଯେତେ ହୁରିଚିତ୍କାର କଲେ ବି ସେଥିପ୍ରତି ସେ ବସ୍‌ଟି ମୋଟେ ଖାତିରି କଲା ନାହିଁ ।

''ଭିତରେ ଭିତରେ ତାଙ୍କର ମେଣ୍ଟ ଅଛି, ସମସ୍ତେ ପାଜି ସୟତାନ ।'' ଜଣେକ ଯାତ୍ରୀ ମନ୍ତବ୍ୟ ପ୍ରକାଶ କରି ନୀରବ ହେଲେ ।

ଆଉ ଜଣେ ସଜୋରେ ବସ୍‌ର ଘଣ୍ଟି ବାରମ୍ବାର ବଜାଇଲେ । ଡ୍ରାଇଭର ଆସି ଦରଜା ପାଖରେ ଛିଡ଼ା ହେଲା । ଭଦ୍ରଲୋକ ପଚାରିଲେ, "କିଏ ଏ ବସ୍‌ର କଣ୍ଡକ୍ଟର ?" କାହା ମୁହଁରୁ କିଛି ଜବାବ ନାହିଁ; କେହି ବି ପାଖକୁ ଆସିଲେ ନାହିଁ । ଭଦ୍ରଲୋକ ଆତ୍ମଗ୍ଲାନିରେ ନିଜ ବାହୁଛାତିରେ ବାଡ଼େଇ ହୋଇ ମୁଣ୍ଡରୁ କେରାଏ ଅଧେ ଚୂଳ ଛିଣ୍ଡାଇ ନିଜ ଜାଗାରେ ପୁଣି ବସିଲେ, କୌଣସି ଆଶାଭରସା କେଉଁଆଡୁ ନ ପାଇ ।

ଜଣେ ପୋଲିସ୍ କର୍ମଚାରୀ ବୁଲାବୁଲି କରୁକରୁ ବସ୍‌ର ଦରିଜାରୁ ଉଙ୍କି ଭିତରକୁ ଅନାଇଲେ । ଏକାବେଳକେ ପଚିଶି ପଚାଶ ଲୋକଙ୍କ ମୁହଁରୁ ଆପତ୍ତି ଅଭିଯୋଗର ତୋଫାନ ତାଙ୍କ ଉପରକୁ ମାଡ଼ିଆସିଲା । ମୁରୁମୁରୁ ହୋଇ ସେ କହିଲେ, "ମୁଁ କ'ଣ କରିବି ? ଆଇନ୍ ତା' ସପକ୍ଷରେ ।" ଯାତ୍ରୀଙ୍କୁ ଆଶ୍ୱାସ ଦେବା ପାଇଁ କଣ୍ଡକ୍ଟରଙ୍କୁ ଚାହିଁ କହିଲେ, "ତୁମ ନାମ ଓ ନମ୍ବର ଭଦ୍ରଲୋକମାନଙ୍କୁ ଦେଇ ଦିଅ ।"

" ମୁଁ କେତେବେଳୁଁ ଯାଚିଲିଣି । ନେଉଛି କିଏ ?"

ପୋଲିସ କର୍ମଚାରୀ ନାଟକୀୟ ରୀତିରେ 'ଓ !' କହି କେତେ ପାହୁଣ୍ଡ ପଛକୁ ଯାଇଁ ରାସ୍ତା ଉପରେ ଛିଡ଼ାହେଲେ । ଦୁଇ ତିନିଜଣ କନେଷ୍ଟବଲ ମଧ୍ୟ ତାଙ୍କ ସାଙ୍ଗରେ ଯୋଗ ଦେଲେ । ହସାହସି ଗପଗୁଜବ ଚାଲିଲା ସେମାନଙ୍କର ।

କୁକୁରଟି ସିମିତି ଆଖି ଜୁଳୁଜୁଳୁ କରୁଥାଏ ଆଲୁଅକୁ ଅନାଇଁ । କଣ୍ଡାକ୍ଟର ତେଣେ ରାସ୍ତାରେ ଏପଟ ସେପଟ ହେଉଥାଏ । ଯିମିତି ଟ୍ରାଫଲଗାର ଯୁଦ୍ଧ ବିଜୟ କରି ନେଲସନ୍ ଜାହାଜର ଉପର ମହଲାରେ ପଇଁତରା ମାରୁଛନ୍ତି ।

ହଠାତ୍ ବାହାରର ଜୋର ବତାସର ସ୍ୱରକୁ ବୁଡ଼ାଇ ଦେଇ ଜନୈକା ତରୁଣୀଙ୍କ ଗଳାସ୍ୱର ଶୁଭିଲା । ବସ୍‌ରୁ ତଳକୁ ଡେଇଁ ପଡ଼ି ତର୍ଜନ ଗର୍ଜନ କରି ସେ ସିଧା ଚାଲିଲେ କଣ୍ଡାକ୍ଟର ଆଡ଼କୁ ଯିମିତି ତାକୁ ଏକାବେଳକେ ନିଃଶେଷ କରିଦେବେ । କଣ୍ଡାକ୍ଟର ପାଖକୁ ଭିଡ଼ିଗଲେ ବୀର, ରମଣୀ ପରି ସେ, କିନ୍ତୁ ନିଶ୍ଚଳ, ଶୀତରାତି ପରି ଥଣ୍ଡା, ରାସ୍ତାର ପଥର ପରି ଟାଣ । ଚଣ୍ଡିମୂର୍ତ୍ତି ସେଠାରୁ ଚାଲିଲେ ପୋଲିସ ତ୍ରିମୂର୍ତ୍ତିଙ୍କ ଆଡ଼କୁ । ସେମାନେ ବି ସିମିତି ତିନୋଟି ପଥର ମୂର୍ତ୍ତି ପରି ଛିଡ଼ା ହୋଇ ବସ୍ ଭିତର ନାଟକାଭିନୟ ଉପଭୋଗ କରୁଥାନ୍ତି । ତରୁଣୀ ନିଷ୍ଫଳ ଅଭିଯାନରୁ ଫେରି ସିଧା ଚାଲିଲେ ତାଙ୍କ 'ଇୟେ' ଙ୍କ ପାଖକୁ । ଏଇ 'ଇୟେ' ଏ ପର୍ଯ୍ୟନ୍ତ ନିର୍ବାକ ହୋଇ ତାଙ୍କ 'ଇୟେ' ଙ୍କ କ୍ରୋଧାଗ୍ନିର ପ୍ରଜ୍ୱଳନ ଦୃଶ୍ୟ ଉପଭୋଗ କରୁଥିଲେ । ଦାମ୍ଭିକା ମାଲିକାଣୀଙ୍କ ଡାକ ଶୁଣି ସେ ଚମକି ଉଠିପଡ଼ିଲେ ଏବଂ ଦୁହେଁ ଅନ୍ଧକାରରେ ମିଳାଇଗଲେ ।

ଅନ୍ୟ ଯାତ୍ରୀମାନେ ତାଙ୍କ ଦେଖାଦେଖି ଯେଝା ରାସ୍ତା ଧଇଲେ । ବସ୍ କ୍ରମେ ଖାଲି ହେବାକୁ ବସିଲା । ଯେଉଁ ବୀର ତରୁଣ କଣ୍ଡାକ୍ଟରଙ୍କ ନାମ ନମ୍ବର ଟିପିବାକୁ ଚାହୁଁଥିଲେ ଏବଂ ଦରକାର ହେଲେ ରାତି ଯାକ ବାସରେ ପଡ଼ିରହି ତାକୁ ଜବଦ୍ କରିବେ ବୋଲି ବାରମ୍ବାର ହୁଙ୍କାର ଛାଡୁଥିଲେ ସେ ମଧ୍ୟ ଅବସର ଦେଖି ଖସି ପଳାଇଲେ ।

ସାଙ୍ଗରେ କୁକୁର ନେଉଥିବା ଦଳଟିଏ ଭିତରେ ବହୁତ ଯନ୍ତ୍ରଣା ଓ ଅପମାନ ଭୋଗି ଆତ୍ମସମର୍ପଣ କରିବା ଅବସ୍ଥାରେ ପହଞ୍ଚିଲେଣି । ''ମୁଁ ଉପରକୁ ଯାଉଛି କାଖତଳେ କୁକୁରକୁ ଜାକି ।'' ତରୁଣୀ କହିଲେ ''ନା, ନା, ମୁଁ ଯିବି, ତୋର ଶର୍ଦ୍ଦି କାଶ ଅଛି, ସନ୍ନିପାତ ଧରିଯିବ ଥଣ୍ଡାରେ,'' ଅନ୍ୟ ମହିଳାଟି କହିଲେ । ''ମୁଁ ତେବେ ଯାଉଛି'', ତରୁଣଙ୍କ ଗଳାସ୍ୱର । ତରୁଣୀ କାହାକଥା ନ ଶୁଣି କହିଲେ, ''ମରିବି ତ କୁକୁର ସହିତ ମରିବି । ମୁଁ ଯାଉଛି ।'' କୁକୁରକୁ କାଖତଳେ ଜାକି ସେ ଉପରକୁ ଉଠିଲେ । ଶିଡ଼ି ଦେଇ କିଛି ଦୂର ଯାଇଛନ୍ତି କି ନାହିଁ କଣ୍ଡକ୍ଟର ଫେରି ଆସିଲା; ଘଣ୍ଟି ଦେଲା । ବସ୍ ଚାଲିଲା । ମୁହଁଟାକୁ ଖଟାଳିଆ କରି ଜୟଲାଭର ଗୌରବ ସେ ଉପଭୋଗ କରୁଥାଏ । ଯାତ୍ରୀମାନେ କିନ୍ତୁ ତାକୁ ମୁହେଁ ମୁହେଁ ଅଶିଷ୍ଟ ଭାଷାରେ ଗାଳିଗୁଲଜ କରୁଥାନ୍ତି ।

ଖଣ୍ଡେ ଦୂର ଯାଇଛି କି ନାହିଁ ବସ୍ ବନ୍ଦ । ଇଞ୍ଜିନ୍‌ର ଗୋଳମାଳ । କଣ୍ଡାକ୍ଟର ଗଲା ଡ୍ରାଇଭର ପାଖକୁ ସାହାଯ୍ୟ କରିବା ପାଇଁ । ବହୁତ ସମୟ ଧରି ଠୁକ୍ ଠାକ୍ ଚାଲିଲା । ଏ ଅବସରରେ କୁକୁରକୁ ପୁଣି କାଖତଳେ ଧରି ତରୁଣୀ ଚୁପେ ଚୁପେ ଓହ୍ଲାଇ ତଳରେ ତାଙ୍କ ପୂର୍ବ ସ୍ଥାନରେ ବସିଗଲେ ।

ଇଞ୍ଜିନ୍ ଠିକ୍ ହେଲା ପୁଣି ବେଲ୍ ଦିଆଗଲା । ଗାଡ଼ି ଚାଳିଲା । କିନ୍ତୁ ମୁହୂର୍ତ୍ତକ ପରେ କଣ୍ଡାକ୍ଟରର ଆଖି ପଡ଼ିଲା ପୁଣି ସେଇ କୁକୁର ଉପରେ । ଠଂ କରି ଜୋରରେ ଘଣ୍ଟି ବାଜିଲାରୁ ଡ୍ରାଇଭର ବୁଲି ପଡ଼ି କଣ୍ଡାକ୍ଟରକୁ ଚାହିଁଲା । କଣ୍ଡାକ୍ଟର ଆଙ୍ଗୁଳି କୁକୁର ଆଡ଼କୁ ଦେଖାଇଲା । ଗାଡ଼ି ବନ୍ଦ; ଝଗଡ଼ା ଯେଉଁ ରୀତିରେ ଚାଲିଥିଲା ମୂଳରୁ ତହିଁର ପୁନରାବୃତ୍ତି ହେଲା । ପୂର୍ବ ରୀତିରେ କଣ୍ଡାକ୍ଟର ରାସ୍ତାରେ ଟହଲମାରିଲା; ଡ୍ରାଇଭରବନେଟ୍ ଉପରେ ବାଜା ବଜାଇବାକୁ ଲାଗିଲା । କୁକୁର ମିଟିମିଟି କରି ଆଲୁଅକୁ ଚାହିଁଲା; ତରୁଣୀ ପୁଣି ଉପରକୁ ଯିବାକୁ ଅସମ୍ମତ ହେଲେ ଏବଂ ଶେଷରେ ଉପାୟ ନ ଦେଖି ଉପରକୁ ଉଠିବାକୁ ପୁଣି ପ୍ରସ୍ତୁତ ହେଲେ ।

ମୁଁ ଶେଷ ଯାତ୍ରୀ ଓହ୍ଲାଇଲା ବେଳେ ମୋତେ ଶୁଣାଇ ଶୁଣାଇ କଣ୍ଡାକ୍ଟର କହିଲା ''ଆଇନ ଯାହା ତାହା ସିନା ମୁଁ କରିବି । ଆଇନ୍ ଛାଡ଼ି ଯେ କାମ କରିବ ସେ ଅବଶ୍ୟ ଦଣ୍ଡ ଭୋଗିବ ।'' ସେ ଯୁଦ୍ଧଟାଏ ଜିଣିଛି ଅନ୍ୟ ପାଖରେ ବାହାଦୂରୀ ପ୍ରକାଶ ନ କଲେ ଆତ୍ମସନ୍ତୋଷ ଆସିବ କିପରି ?

ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ବୁଲିପଡ଼ି କହିଲି, ''ଦେଖ ଭାଇ, ସବୁ କଥା ମୁଁ ଦେଖିଛି, ଶୁଣିଛି, ବୁଝିଛି । ଆଇନ ଅଛି, ଆଇନର ଦରକାର ମଧ୍ୟ ଅଛି । କିନ୍ତୁ ତା ବୋଲି ଆଇନ୍‌ଆଇନ୍ ଭିତରେ କ'ଣ ତଫାତ୍ ନାହିଁ ? କେତେ ଆଇନର କଡ଼ା ପ୍ରୟୋଗ ମଧ୍ୟ ସ୍ଥଳ ବିଶେଷରେ କରାଯାଇପାରେ । ଧର ରାସ୍ତାର ନିୟମ କାନୁନ, ସେ ଆଇନକୁ ଯେବେ କେହି ନ ମାନେ ତେବେ ହୁଏତ ଲୋକଙ୍କ ଜୀବନ ଯିବ, ଗୋଡ଼ହାତ ଭାଙ୍ଗିବ, ଧନ ସମ୍ପତ୍ତି ନଷ୍ଟ ହେବ । କିନ୍ତୁ ଆଉ କେତେଗୁଡ଼ିଏ ଆଇନ ଅଛି ସେ ସବୁ କେବଳ ଆମକୁ ବାଟ ଦେଖାଇବା

ପାଇଁ, ଉପଦେଶ, ନିର୍ଦ୍ଦେଶ ଦେବା ପାଇଁ ଅଭିପ୍ରେତ । ସାଧାରଣ ବୁଦ୍ଧି ଜ୍ଞାନ ପ୍ରୟୋଗ କରି ଆମେ ସେସବୁ ଆଇନ୍ କେତେବେଳେ କଡ଼ାକଡ଼ି ପ୍ରୟୋଗ କରିପାରୁଁ, ସ୍ଥଳବିଶେଷରେ ଆଖି ବୁଜି ଦେଇପାରୁଁ । କୁକୁର ବସ୍‌ରେ ନେବା ଆଣିବା ନିୟମଟି ଏହି ଶ୍ରେଣୀର ନିୟମ । ଆଇନ ତ ତୁମ ହାତର ଚାବୁକ ହୋଇନାହିଁ ଯେ ତୁମେ ଇଚ୍ଛାମୁତାବକ ଯାତ୍ରୀମାନଙ୍କୁ ତା ଦ୍ୱାରା ପ୍ରହାର କରି ଚାଲିଥିବ ବା ଭୟଭୀତ କରାଉଥିବ । ଏ ସବୁ ଆଇନ୍ କାନୁନ୍ ଜରୁରୀ ପରିସ୍ଥିତି ପାଇଁ ତୁମର ହାତରେ ଏକ ଅଧିକାର, କ୍ଷମତା ଆକ୍ଷରିକ ପ୍ରୟୋଗ ନ କରି ଯାତ୍ରୀମାନଙ୍କ ସୁଖସୁବିଧା ପାଇଁ ତାତ୍ପର୍ଯ୍ୟଟିକକ ପ୍ରୟୋଗ କଲେ କ'ଣ ଉଦ୍ଦେଶ୍ୟ ସାଧନ ହୁଅନ୍ତା ନାହିଁ ? ଆଜି ତୁମେ ଆଇନକୁ ବଞ୍ଚାଇଲ କେତେଗୁଡ଼ିଏ ଯାତ୍ରୀଙ୍କ ସୁଖସୁବିଧା ଜଳାଞ୍ଜଳିଦେଇ । ଟିକିଏ ସଦ୍‌ଭାବ, ସଂପ୍ରୀତି, ସହାନୁଭୂତି ସହିତ ଏଥର ଆଇନ ବ୍ୟବହାର କର, ଦେଖିବ ସେଇ ଆଇନ କେଡ଼େ ସୁନ୍ଦର କାମ ଦେବ ।''

ମୋର ଏଇ ଛୋଟ ବକ୍ତୃତାର ହିତୋପଦେଶ କଣ୍ଡାକ୍‌ଟର ବନ୍ଧୁର ମନକୁ ବୋଧହୁଏ ପାଇଲା କାରଣ ମୁଁ ଚାଲି ଯାଉଥିଲାବେଳେ ହାତଯୋଡ଼ି ବିନମ୍ର ସ୍ୱରରେ କହିଲା, ''ଆଜ୍ଞା, ନମସ୍କାର ।''



# ଶିକ୍ଷା ସଂସ୍କାରର ଗୋଟାଏ ଦିଗ

ଏବେ ସମସ୍ତଙ୍କର (ମୋର ନୁହେଁ, ମୋର ସହକର୍ମୀ ବନ୍ଧୁମାନଙ୍କର ହୁଏତ) ବଦ୍ଧମୂଳ ଧାରଣା ଯେ ଏକ ନୂଆ ଦୁନିଆଁ ଉଦ୍ଭବ ହୋଇଛି; ଅତଏବ ଆମର ସକଳ ଜୀବନପଦ୍ଧତି, ସାମାଜିକସଂସ୍ଥା ଓ ଅନୁଷ୍ଠାନ ନୂଆ କରି ଗଢ଼ାଯିବା ଦରକାର । ମୁଁ ବି ସେମାନଙ୍କ ସହିତ ଏକମତ ହୋଇ ଭାବୁଛି ଆଉ କିଛି ନ ହେଲେ ମଧ ଆମ ଧନୀ ସମାଜର ପିଲାପିଲିଙ୍କ ଶିକ୍ଷାପଦ୍ଧତିରେ ବହୁ ଦିନ ଧରି ଅବହେଳିତ ଏକ ନୂତନ ସଂସ୍କାରର ଏକାନ୍ତ ଆବଶ୍ୟକତା ଆସିଛି ।

ପ୍ରସ୍ତାବିତ ଏ ନୂତନ ସଂସ୍କାରଟି ହେଲା ଧନିକର ସନ୍ତାନ ସନ୍ତତି ଅଧ୍ୟୟନ କରୁଥିବା ଶିକ୍ଷାନୁଷ୍ଠାନମାନଙ୍କରେ ଗୋଟାଏ ନୂଆ ପାଠ୍ୟର ଅବତାରଣା । ଜୀବନରେ ବହୁ ସମୟରେ ପ୍ରଚଳିତ ପାଠ୍ୟକ୍ରମମାନଙ୍କରେ ଏ ପାଠ୍ୟର ଏକାନ୍ତ ଅଭାବ ଯୋଗୁଁ ଆମେ ଅନୁତାପ, ଅନୁଶୋଚନା କରିଛୁଁ ଯେ ଏତେ ମୂଲ୍ୟବାନ ବିଦ୍ୟାଟି ହାସଲ କରିବାପାଇଁ ଆମକୁ କୌଣସି ସୁବିଧାସୁଯୋଗ ଦିଆଗଲା ନାହିଁ । ସେତକ ହୋଇଥିଲେ ଜୀବନର ସନ୍ଧିକ୍ଷଣମାନଙ୍କରେ ସେ ବିଦ୍ୟାଟି ଆମର ଅତିମାତ୍ରାରେ ଉପକାରରେ ଲାଗିଥାନ୍ତା । ତେଣୁ ଆଜି ଯେତେବେଳେ ଜୀବନର ନାନା କ୍ଷେତ୍ରରେ ନାନା ପରିବର୍ତ୍ତନର ପ୍ରଚଳନ କରିବାର ଯୁଗ ଓ ସୁଯୋଗ ଆସିଛି ସେତେବେଳେ ଆସନ୍ତୁ, ସମସ୍ତେ ମନପ୍ରାଣ ଦେଇ ଅଣ୍ଟା ଭିଡ଼ି ଏ ନୂଆ ପାଠଟି ଜାତୀୟ ଶିକ୍ଷାକ୍ଷେତ୍ରରେ ପୂରାଇବା ଯିମିତି କି ଶାଳ ପୂଜା ପରି ବଢ଼ି ଉଠୁଥିବା ଧନୀକୁଳର ଯୁବ ବଂଶଧରମାନଙ୍କ ପରମ କଲ୍ୟାଣ ସାଧିତ ହୋଇପାରିବ । ଏ ନୂଆ ପାଠଟି ହେଲା ଠକେଇ ବା ଜାଲିଆତି ବିଦ୍ୟା ।

ସଫଳ ଜୀବନର ମୂଳମନ୍ତ୍ର ବୋଲି ଏ ବିଦ୍ୟା ଜଗତରେ ସ୍ୱୀକୃତି ହୋଇ ସାରିଛି । ଏ ବିଦ୍ୟାର କୁହୁକରେ ମଣିଷ ନିମିଷକେ ଅସୀମ ପ୍ରଭୁତ୍ୱ, ଅଜସ୍ର, ଧନସମ୍ପତ୍ତି ଓ ଅପରିମିତ ପଦମର୍ଯ୍ୟାଦା ପାଇ ପାରୁଛି ଏବଂ ଏ ବିଦ୍ୟାବଳରେ ଶକ୍ତି ଓ ଅର୍ଥ ଉପାର୍ଜନ କରୁଥିବା ବ୍ୟକ୍ତିଙ୍କୁ ବଡ଼ ଲୋକ ବୋଲି ଉପାଧି ଦିଆଯାଉଛି ।

ଏ ଠକେଇ ବିଦ୍ୟାଟି ହେଲା ଯଥାର୍ଥରେ ଆଦ ବିଦ୍ୟା । ଏ ପାଠଟି ଯାହାଦେଇ ହୁଏ ନି ତା'ର ସାରା ଜୀବନର କପାଳ – ଲେଖ ହେଲା ଗଧଖଟଣି ଏବଂ ଅଜ୍ଞାତ ବାସ । ତଥାପି (କି ଆଶ୍ଚର୍ଯ୍ୟ!) ଏ ମହାବିଦ୍ୟାଟି ଦେଶର ମହାବିଦ୍ୟାଳୟମାନଙ୍କରେ ଆଜିଯାକେ ପାଠ୍ୟ ହୋଇନି । ସେଇଥିପାଇଁ ସିନା ଉଜ୍ଜ୍ୱଳ ଭବିଷ୍ୟତ୍ ଗଢ଼ିବାର ସମ୍ଭାବନା ଓ ସାମର୍ଥ୍ୟ ଥାଇମଧ ଅନେକେ ଜୀବନରେ ଚିତ୍‌ପଟାଙ୍ଗ ହେଉଛନ୍ତି ଏବଂ ବାଟ ଘାଟ ଗଳିକନ୍ଦିମାର ଛତରା ଅକ୍ଷରଶୂନ୍ୟ

ଭଟ୍ଟାଚାର୍ଯ୍ୟମାନେ ଉଚ୍ଚଶିକ୍ଷିତଙ୍କୁ ସହଜରେ ଟପି ଯାଇ ଗାଦ ମାଡ଼ି ବସୁଛନ୍ତି । କାରଣ ତଥାକଥିତ ପାଠ ନ ଥିଲେ ମଧ୍ୟ ସେମାନଙ୍କ ପାଖରେ ଶାଠ (ଶଠର ପାଠ) ର ପ୍ରାଚୁର୍ଯ୍ୟ ରହିଛି ।

ଛାତିରେ ହାତ ରଖି କହନ୍ତୁ ଦେଖି ପାଠ୍ୟ ଆକାରରେ ଏ ବିଦ୍ୟାର ଚିହ୍ନ ବର୍ଣ୍ଣ କେଉଁଠି ସ୍କୁଲ କଲେଜରେ ଦେଖିଛନ୍ତି କି ? ଆପଣ ଅବଶ୍ୟ ସ୍ୱୀକାର କରିବେ ଯେ ପାଠ୍ୟକ୍ରମରୁ ଏହାକୁ ପୁରାପୁରି ବାଦ୍ ଦିଆଯାଇଛି । ମୁଁ ମାନୁଛି ଯେ ଫୁଟାଣି,ବାହାଦୁରୀ, ପ୍ରୌଢ଼ିବା ଆଡ଼ମ୍ବର ଆଦି ଯେଉଁ ଅଳଙ୍କାର ଜୀବନକୁ ଭୂଷିତ ଓ ଜାଜ୍ୱଲ୍ୟମାନ କରେ ତହିଁରୁ କିଛି କିଛି ମୋଟାମୋଟି ଭାବରେ ଶିକ୍ଷା ଦିଆଯାଇଛି । ପୁଣି ଏ କଥା ବି ମୁଁ ମାନିବାକୁ ପ୍ରସ୍ତୁତ ଯେ ମିଥ୍ୟାମନୋବୃତ୍ତିର ଶିକ୍ଷା ଓ ପ୍ରସାର ମାମୁଲି ବିଷୟରୂପେ ଶିକ୍ଷାନୁଷ୍ଠାନମାନଙ୍କରେ ରହିଛି ; କିନ୍ତୁ ମୁଁ ଦୃଢ଼ତାର ସହିତ ଅସ୍ୱୀକାର କରିବି ଯେ କୁତ୍ରାପି ଜୁଆ ଚୋରି ଜାଲିଆତି ପାଠ୍ୟ ହୋଇଛି । ସେତିକି ତ୍ରୁଟି ଅବହେଳା ଯୋଗୁଁ, ଅପ୍ରାପ୍ତବୟସ୍କ ଅବସ୍ଥାରେ ଧନୀ ସନ୍ତାନଟିର ଯେଉଁ ବିଦ୍ୟାର ପ୍ରାଥମିକ ସୋପାନ ସହିତ ସର୍ବାଦୌ ପରିଚୟ ଆବଶ୍ୟକ ତା'ରି ଅଭାବରେ, ବିଚରା ସଙ୍ଗତିସମ୍ପନ୍ନ ବିବାହିତ ଯୁବକଟି ଜୀବନର ପ୍ରାରମ୍ଭରେ ଜୋର ଶକ୍ ବା ଚମକଟାଏ ପାଇ ଆଉ ଉଧାଇ ପାରୁ ନାହିଁ ।

ଏତାଦୃଶ ଅବହେଳା ଦେଶପକ୍ଷରେ ବିଶେଷତଃ ଧନୀସମାଜ ପକ୍ଷରେ ତୀବ୍ର ଲଜ୍ଜା ଓ ନିନ୍ଦାର ବିଷୟ । ଅକ୍ଷମଣୀୟ ଅପରାଧ ମଧ୍ୟ । ଉଦାହରଣଟିଏ ନିଅନ୍ତୁ । ଜୀବନର ପ୍ରତ୍ୟେକ କାର୍ଯ୍ୟ ବା କାରବାରର ସ୍ୱାଭାବିକ ଅୟମାରମ୍ଭ ହୁଏ ଗୋଟିଏ ମୌଖିକ ପ୍ରତିଶ୍ରୁତିରୁ ଯେଉଁ ପ୍ରତିଶ୍ରୁତିଟି ପରେ ଅବଶ୍ୟ ଲିଖିତ ଆକାରରେ ବା କାର୍ଯ୍ୟକଳାପ ଜରିଆରେ ଅସ୍ୱୀକାର କରାଯିବ । ଆପଣ କାହାରିକୁ ପ୍ରତିଶ୍ରୁତିଟିଏ ଦିଅନ୍ତି ତାହା ପୂରଣ ନ କରିବା ପାଇଁ ମନେ ମନେ ଠିକ୍ କରି । ଯେବେ କାହା ଆଗରେ ଆପଣ ଦୀର୍ଘ ବର୍ଣ୍ଣନା ବା ବିବୃତିଟିଏ ଦେଉଛନ୍ତି ପରେ ବାସ୍ତବତା ଯେ ତାକୁ ମିଥ୍ୟା ବୋଲି ପ୍ରମାଣ କରିଦେବ ଏହା ଆପଣ ବେଶ୍ ଜାଣନ୍ତି । ଅର୍ଥାତ୍ ଏ ସ୍ଥଳରେ ଆପଣ ଶପଥ, ଅଙ୍ଗୀକାର ଜରିଆରେ ମଣିଷର ଏକ ସ୍ୱାଭାବିକ ମନୋବୃତ୍ତି ଚରିତାର୍ଥ କରିବା ସଙ୍ଗେ ସଙ୍ଗେ ସେହି ପ୍ରତିଶ୍ରୁତିକୁ ସ୍ୱାର୍ଥସାଧନରେ ସଫଳ ପ୍ରୟୋଗ ମଧ୍ୟ କରି ପାରିଲେ । ଜାଣିବ ଏହାକୁ ସତ ବୋଲି ମାନୁଛନ୍ତି ତେବେ କାହାକୁ (ସପ୍ତାହରେ ଅଧଘଣ୍ଟାଏ ହେଲେ ମଧ୍ୟ) ଶିକ୍ଷାନୁଷ୍ଠାନ ଖୋଲିବା ଏବଂ ଏକ ନିର୍ଦ୍ଦିଷ୍ଟ ବୟଃସୀମା ଉହାହରଣ ଜରିଆରେ ବିଦ୍ୟାଟି ଶିକ୍ଷା ଆରମ୍ଭ କରି ନ ଦେବୁ ? ତେବେ ଆମ ପିଲାମାନେ ଜାଣିପାରିବେ କିପରି ଭବିଷ୍ୟତରେ ନିଜକୁ ପ୍ରତିଶ୍ରୁତି ହାବୁଡ଼ରୁ ରକ୍ଷା କରିପାରିବେ ଏବଂ (ଯାହା ଆହୁରି ବେଶୀ ଦରକାର) ଓଲଟି ନିଜେ ନିଜେ ଅନ୍ୟକୁ ବିଶ୍ୱାସଯୋଗ୍ୟ ଭଣ୍ଡ ପ୍ରତିଶ୍ରୁତିମାନ ଦମ୍ଭ ଓ ସାହସ ସହିତ ଦେଇ ନିଜ ଜୀବନକୁ ସାଫଲ୍ୟମଣ୍ଡିତ କରିପାରିବେ । ସେମାନେ ଶିକ୍ଷାକାଳରେ ଶିଖିବେ ପ୍ରତିଶ୍ରୁତିର ନାନା ରୂପ, ବିଭାଗ ଯଥା : – ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ହଓ୍ୱାଇ ପ୍ରତିଶ୍ରୁତି, ଟାଣୁଆ ପ୍ରତିଶ୍ରୁତି, ବ୍ୟକ୍ତିଗତ ପ୍ରତିଶ୍ରୁତି, ବିଶ୍ୱାସ୍ୟ ପ୍ରତିଶ୍ରୁତି, ମନଭୁଲାଣିଆ ପ୍ରତିଶ୍ରୁତି, ଅକାଟ୍ୟ ପ୍ରତିଶ୍ରୁତି ଓ ଅଲଭ୍ୟ ବା ଅଭାବନୀୟ ପ୍ରତିଶ୍ରୁତି ଇତ୍ୟାଦି ।

ଆହୁରି କେଡ଼େ ଦୁଃଖର କଥା ଦେଖନ୍ତୁ ଆମେ ଅତି ପ୍ରୟୋଜନୀୟ ପାଠଟି ତ ପଢ଼ାଉ ନାହୁଁ ତହିଁର ଓଲଟା ଦିଗ ମଧ୍ୟ ପିଲାଙ୍କୁ ଦେଖାଉ ନାହୁଁ । ଅନ୍ତତଃ ମୁଁ ଯେଉଁ ଅନୁଷ୍ଠାନ ସହିତ ସଂପୃକ୍ତ ସେଠି ମିଛ କହିବାର ମିତବ୍ୟୟିତା ଉପରେ ଆଦୌ ଗୁରୁତ୍ୱ ଦିଆଯାଏ ନାହିଁ !

ଖାଣ୍ଟି ସତ କଥା ଯେ ଅପ୍ରାପ୍ତବୟସ୍କଙ୍କ ଅପରିପକ୍ୱ ବା କଞ୍ଚା ମନକୁ ପ୍ରକୃତି ସ୍ୱଭାବସିଦ୍ଧ ଉପାୟରେ ମିଥ୍ୟା ଆଡ଼କୁ ଅବଶ୍ୟ ଆକର୍ଷଣ କରିବ ; କିନ୍ତୁ ଦୟାମୟୀ ପ୍ରକୃତି – ମାତାର ଏ ଅକୁଣ୍ଠ ନୈସର୍ଗିକ ଅବଦାନର ଯଥାଯଥ ପ୍ରୟୋଗ, ଉପଯୋଗ ବା ପରିଚାଳନା ବିନା ମଣିଷର ମିଥ୍ୟା କହିବା ଶକ୍ତିର ଅପଚୟ ଘଟୁଛି । ଦେଖନ୍ତୁ ଦୁନିଆରେ ଯୁବକ–ଯୁବତୀମାନେ କେତେ ମିଛ ଭଣ୍ଡ କଥା କହି ନ ବୁଲୁଛନ୍ତି । ସେତେବେଳେ ଆପଣାର ବଡ଼ ବଡ଼ ସାଙ୍ଗସାଥୀ ବନ୍ଧୁବାନ୍ଧବଙ୍କୁ ନେଇ ବଡ଼ତି; ଆଉ କେତେବେଳେ ଅବା ନିଜ ନିଜ ପାରିବାର ପଣିଆଁ ବା ବାହାଦୂରୀ ଉପରେ ବଡ଼ ବଡ଼ ବକ୍ତୃତା; କିନ୍ତୁ ସେହି ମିଛରୁ ଫୁଟାଣିରୁ ତାଙ୍କୁ ପଇସାଏ ଅବା ମିଳୁଛି ? ଅଥଚ ଏଇ ପଇସାକମେଇବା, ଜମାଇବା ପାଇଁ ମଣିଷ ଏ ଦୁନିଆଁକୁ ଆସଛି, ବଞ୍ଚୁଛି ମଧ୍ୟ । ଧରନ୍ତୁ କ୍ଲାସଟାଏ (ହପ୍ତାରେ ମାତ୍ର ଅଧଘଣ୍ଟାଏ ଖୁବ୍ କମ ହେଲେ ବି ସବୁ କଥାର ଆରମ୍ଭ ବୋଲି ଗୋଟାଏ କଥା ଅଛି) ଖୋଲି ଦେଇ ପ୍ରକୃତିଦତ୍ତ କହିବା ପ୍ରବୃତ୍ତିକୁ ଠିକ୍ ପ୍ରଣାଳୀରେ ଯଦି ବାଟ କଢେଇ ଦିଅନ୍ତି କେଡ଼େ ମହତ୍ ସଂସ୍କାରଟାଏ ଶିକ୍ଷାକ୍ଷେତ୍ରକୁ ଆସି ନ ଯାନ୍ତା !

ଯୁବକମାନଙ୍କ ସମକ୍ଷରେ ବରାବର ଉଦାହରଣ ଟେକି ଧରିବା ସମସ୍ତ ଶିକ୍ଷାର ଅପରିହାର୍ଯ୍ୟ ଅଙ୍ଗ । ଶିକ୍ଷକ ମହାଶୟ ପ୍ରଥମେ ପିଲାଙ୍କ ଆଗରେ ଗପଟିଏ କହନ୍ତୁ ଯେଉଁ ପ୍ରକାର ଭଣ୍ଡ ଗପ ଧନୀ–ସନ୍ତାନ ନିଜ କରାମତି, ଚଲାକିର ପ୍ରମାଣ ଉଦ୍ଦେଶ୍ୟରେ କହିଥାଏ । ଗପଟି କହି ସାରି ପୂଜ୍ୟ ଗୁରୁଦେବ ବୁଝାଇ ଦିଅନ୍ତୁ କିମିତି ଏତେଗୁଡ଼ାଏ କଞ୍ଚା ମିଛରୁ କିଛି ଫାଇଦା ମିଳୁନି ଏବଂ ସଙ୍ଗେ ସଙ୍ଗେ କହି ଦିଅନ୍ତୁ ଯେ ସେତିକି ମିଛ ଠିକ୍ ବାଟରେ ନେଇ କାହା ଆଗରେ ମିଥ୍ୟା ବର୍ଣ୍ଣନାଟିଏ ଦେଇଥିଲେ ବା ଖୋସାମତି କରିଥିଲେ ଗୁଡ଼ାଏ ଟଙ୍କା ମିଳି ଯାଇଥାନ୍ତା । ସୁଧୀ ଶିକ୍ଷକ ମହୋଦୟ ତାଙ୍କ ଅଧୀନରେ ଥିବା ସ୍ନେହୀ ଛାତ୍ରବର୍ଗଙ୍କୁ ସମ୍ବୋଧନ କରି କହନ୍ତୁ "ଦେଖ ପିଲେ ! ଘୋଡ଼ା ଚଢ଼ାରେ ତୁମେ ବାହାଦୂର, ଏଇ କଥା ପ୍ରମାଣ କରିବା ପାଇଁ ଯେତେ ଶବ୍ଦ ବ୍ୟବହାର କର ସେତିକି ଶବ୍ଦ ବ୍ୟବହାର କରି ତୁମେ ବିକିବାକୁ ଯାଉଥିବା ଘୋଡ଼ାର ଗୁଣ ଗାଇ ପାରିଥାନ୍ତ । ଘୋଡ଼ାର ଗୁଣ ଗାଇଥିଲେ ତା'ର ଦାମ ବଢ଼ି ଯାଇଥାନ୍ତା; କିନ୍ତୁ ତୁମ ଘୋଡ଼ା ଚଢ଼ାର କରାମତି ପାଇଁ ବଜାର କାହିଁ ? ନିଜ ଆଭିଜାତ୍ୟ, ବଂଶଗାରିମା ଗାଇ ଯେତେ ଯେତେ ମିଛ କହି ସେତିକି ମିଛ ବିକିବାକୁ ଚାହୁଁଥିବ ଚିଜ ଉପରେ ଖଟାଅ । ସହଜରେ ବୁଝି ପାରିବ ପ୍ରଥମ କ୍ଷେତ୍ରରେ ପଣ୍ଡ ପରିଶ୍ରମ କଲ ଦ୍ୱିତୀୟ ପନ୍ଥାରେ ପକେଟ୍ ଗରମ ହେଲା ତେଣୁ କହୁଛି ବତ୍ସଗଣକୁ ! ଯେବେ ମିଛ କହୁଁ କହୁଁ ଜାଣିଲି ଯେ ସେ ମିଛରେ କିଛି ଲାଭ ହେବ ନାହିଁ । ତେବେ ତତ୍ଦଣ୍ଡେ ନିଜକୁ ସମ୍ଭାଳି ନିଅ । କିଛି କହିବାକୁ ଯିବା ପୂର୍ବରୁ ଏକ, ଦୁଇ କରି ଦଶ ପର୍ଯ୍ୟନ୍ତ ଗଣ ଏବଂ ମନକୁ ସ୍ଥିର କରି ଭାବ

ଏମିତି କ'ଣ ମିଛ ଅଛି ଯାହା କହିଲେ ମିଛ କହିବାର ପ୍ରାକୃତିକ କଷ୍ଟ ଉପଶମ ହେବା ସଙ୍ଗେ ସଙ୍ଗେ ପକେଟକୁ ବା ଏକାଉଣ୍ଟ ବହିକୁ କିଛି ମୋଟା ମାଲ ଆସିବାର ସମ୍ଭାବନା ଥିବ ।

ମୁଁ ବେଶ୍ ଅନୁମାନ କରିପାରୁଛି କେହି ସୁଧୀ ଏଇଠି ଆପତ୍ତି ଉଠାଇ ପ୍ରଶ୍ନ ପଚାରିବେ – ଯେବେ କଳ୍ପିତ ଏହି ସଂସ୍କାରଟି ପ୍ରବର୍ତ୍ତନ କରାଯାଇ ଆଧୁନିକ ବେପାର ଓ ବ୍ୟାପାରରେ ଗୃହୀତ ମୂଳ ନୀତିଟି ସର୍ବତ୍ର ସମସ୍ତଙ୍କୁ ଶିଖାଇ ଦିଆଯାଏ ତେବେ କ'ଣ ଉଦ୍ଦେଶ୍ୟ ପଣ୍ଡ ହୋଇଯିବ ନାହିଁ ? କାରଣ ପୂର୍ବରୁ ସମସ୍ତେ ସତର୍କ ହୋଇ 'ଶଠେ ଶାଠ୍ୟଂ' ନୀତି ଅନୁସରଣ କରିବେ ଏବଂ ବହିର୍ଜଗତରେ କେବଳ ସଂଘର୍ଷ ଓ ପ୍ରତିଯୋଗିତା ଲାଗି ରହିବ ଏବଂ ଠକିକଟା ସବୁବେଳେ ଗଣ୍ଠିକଟାକୁ ପରାସ୍ତ କରୁଥିବ । ମୋ ମତରେ କିନ୍ତୁ ସୁଧୀ ବନ୍ଧୁଙ୍କର ଯୁକ୍ତିଟି ସବୁ ଶିକ୍ଷା କ୍ଷେତ୍ରରେ ସମାନ ପ୍ରଯୋଜ୍ୟ; ସର୍ବତ୍ର ବଳବାନ୍ ହାତରେ ଦୁର୍ବଳର ପରାଜୟ ଓ ନିଧନ । ମୋର ଅସଲ ଅଭିପ୍ରାୟ ହେଲା ଏ ଡିପାର୍ଟମେଣ୍ଟରେ ଧନୀ – ସନ୍ତାନମାନଙ୍କର ଜ୍ଞାନର ପରିସରର ଅଭିବୃଦ୍ଧି କରିବା ଯେପରି କି ଜୀବନ ପଥର ଅଧାଅଧିରେ କେହି ଅନୁଶୋଚନା କରିବାର ଅବକାଶ ନ ପାଆନ୍ତି ଯେ ଏ ବିଦ୍ୟା ହାସଲ କରିବାର ସୁବିଧା ସୁଯୋଗ ନ ପାଇ ସେ ଦୁର୍ଗତି ଭୋଗୁଛନ୍ତି । ସେମାନେ ଯେପରି ବେଶ୍ ହୃଦୟଙ୍ଗମ କରନ୍ତି ଯେ ନିଜ ଅବହେଳାରୁ ତାଙ୍କର ଏ ଦୁର୍ଦ୍ଦଶା । ସେମାନେ ଯିମିତି କେବେ କହି ନ ପାରନ୍ତି ଯେ ଯେଉଁ ହିତୈଷୀମାନଙ୍କ ଉପରେ ପୁଣ୍ୟ ପବିତ୍ର ଦାୟିତ୍ୱଟିଏ ନ୍ୟସ୍ତ କରାଯାଇଥିଲା ସେମାନେ ତାହା ନିଷ୍ଠାସହିତ ପୂରଣ କଲେ ନାହିଁ । ପଚାଶବର୍ଷ ବୟସ୍କ ଧନୀସନ୍ତାନଟିଏ ଯିମିତି କହେ, 'ମୋତେ ସମସ୍ତ ସୁବିଧା ସୁଯୋଗ ମିଳିଥିଲା; ମୋର ପୂଜ୍ୟ ଗୁରୁଦେବ ଗଣ (ଡ଼କ୍ଟର ଦାସଙ୍କୁ ଏଥିରେ ବଳିଯିବ କିଏ ?) ଅହୋରାତ୍ର ମୋତେ ସତ୍ୟ ଓ ସାଧୁତାର କୁଫଳ ବିଷୟରେ ଅବହିତ କରୁଥିଲେ ଏବଂ ନିରୀହ,ବିଧବା ଓ ଶିଶୁଙ୍କ ସର୍ବନାଶ କରି କିପରି ସହଜରେ ସମାଜର ଶୀର୍ଷସ୍ଥାନ ଦଖଲ କରିପାରିବ ସେ ସମ୍ବନ୍ଧରେ ବହୁ ଅୟାସ କରି ଉପଦେଶ ଓ ଉଦ୍‌ବୋଧନମାନ ଦେଉଥିଲେ । ଆଜି ଯେବେ ଦୀନ ହୀନ ଅକିଞ୍ଚନ ହୋଇ ପୁସ୍ତକ – ପ୍ରକାଶକମାନଙ୍କ ଭଡ଼ାଟିଆ ହୋଇ ଦିନ କାଟୁଛି ତେବେ ଦୋଷ ପୁରାପୁରି ମୋର ।'' ସତକଥା କହିଲେ ବର୍ତ୍ତମାନ ଦେଶର ଅବସ୍ଥା ଯାହା ସେଥିରେ ଯେବେ କେହି ପ୍ରଚଳିତ ସିଲାବସ୍‌ରେ ଉଚ୍ଚଶିକ୍ଷିତ ହୋଇ ପ୍ରୁଫ୍‌ରିଡ଼ର,ଲେଖକ,ଶିକ୍ଷକ ବା ଅଧ୍ୟାପକ ହୋଇଛି ସେ ନିଶ୍ଚୟ ମନେ ମନେ ଭର୍ତ୍ସନା କରୁଛି ସେଇ ଗୁରୁଜନ ଓ ଅଭିଭାବକମାନଙ୍କୁ ଯେଉଁମାନେ ଏ ବିଦ୍ୟାରେ ତାଙ୍କୁ ଅଜ୍ଞ, ଅନଭିଜ୍ଞ ରଖି ନିରାଶ୍ରୟ କରି ଦୁନଆଁରେ ଛାଡ଼ି ଦେଇଛନ୍ତି ।

ମୋର ଯେଉଁ ସହଧର୍ମୀ ଶିକ୍ଷାବିତ୍‌ଗଣ ଶିକ୍ଷାବିଜ୍ଞାନର ପରିସର ବୃଦ୍ଧି ପାଇଁ ସଦା ଧ୍ୟାନ ଦେଇଛନ୍ତି ସେମାନେ ଏ ନୂତନ ପାଠ୍ୟର ଅନ୍ତର୍ଗତ ଅଙ୍ଗମାନଙ୍କର ସୁସ୍ପଷ୍ଟୀକରଣ ଅବଶ୍ୟ ଚାହିଁବେ । ମୋର ବିଶ୍ୱାସ ସେମାନେ ଦେଇ ସାରିଲେଣି ଈପ୍‌ସିତ ସୁବିଧାସୁଯୋଗର ପରିବ୍ୟାପ୍ୟମାନ ଦିଗ୍‌ବିଜୟ । ମୋର ଚିନ୍ତାଧାରା ସେମାନଙ୍କ ହତାଶ ପ୍ରାଣରେ ନୂଆ ଜାଗରଣ ଓ ଉନ୍ମାଦନା ବୋଧହୁଏ ଆଣି ଦେଲାଣି । ସେମାନେ ମୋତେ ନିଶ୍ଚୟ ପଚାରିବେ କାହିଁକି ମୁଁ

ଗୁଣ୍ଡାମି ଦଗାବାଜି, ଏକାଧିକାର, ଘୁଷ୍, ଧମକଚମକ, ହଟଚମଟ ଓ ଧର୍ମଦ୍ରୋହ, ମିଥ୍ୟା ଶପଥ ଆଦ ବିଷୟଗୁଡ଼ିକ ପାଇଁ ସ୍ୱତନ୍ତ୍ର କ୍ଲାସର ବ୍ୟବସ୍ଥା କରିନାହିଁ ।

ଉଚିତ ପ୍ରଶ୍ନ । ଏ ସବୁର ବ୍ୟବସ୍ଥା ଜରୁର ହେବ; କିନ୍ତୁ ସେ ସବୁ ଉପର କ୍ଲାସ ପିଲାଙ୍କପାଇଁ । ସେ ସବୁର ବିଚାର ପରେ । ତେବେ ମୁଁ ଭାବୁଛି ସେ ସବୁ ସ୍ୱତନ୍ତ୍ର ଅନୁଷ୍ଠାନମାନଙ୍କ ଦାୟିତ୍ୱରେ ଛାଡ଼ି ଦେଲେ ବୋଧ ହୁଏ ଭଲ ହୁଅନ୍ତା; ବିଶେଷ କରି ସେଇ ସେଇ ଅନୁଷ୍ଠାନ ହାତରେ ଯେଉଁଠି 'ମୁଖଷ୍ଟ' ବା 'ଗିଳାବିଦ୍ୟା' ଶିକ୍ଷା ଦିଆଯାଏ । ଧମକଚମକ ବିଦ୍ୟା ବା ଗାଳିଗୁଲଜ କରି ଡରେଇହରେଇ ଲୋକଙ୍କୁ ଜବଦ କରିବା ବିଦ୍ୟାଟି ସାମରିକ ବିଜ୍ଞାନର ପାର୍ଶ୍ୱଆକ୍ରମଣ କୌଶଳ ସଦୃଶ । ନେପୋଲିଅନ ଏ ପ୍ରସଙ୍ଗରେ କହିଛନ୍ତି "ପାର୍ଶ୍ୱ ଆକ୍ରମଣ କଲାବେଳେ ସର୍ବଦା ସତର୍କ ରହିବା ଉଚିତ କାରଣ ତୁମେ ଯାହା କରୁଛ ଶତ୍ରୁ ମଧ ଅପର ପାର୍ଶ୍ୱରୁ ତୁମ ଉପରେ ସେଇଆ କରିପାରେ"। ବଡ଼ ଉପାଦେୟ, ସାରଗର୍ଭକ କଥାଟି । କାରଣ ଶତ୍ରୁର କଡ଼ ଦେଇ ଆକ୍ରମଣ କରି ଆମ ନିଜ ରାସ୍ତାଟି ତା ଆଡ଼କୁ ଲମ୍ବାଇ ଦେଉଁ ଏବଂ ଶତ୍ରୁ ସୁବିଧା ପାଏ ଓଲଟି ଆମରି ପାର୍ଶ୍ୱଦେଇ ଆମକୁ ଅତର୍କିତରେ ପଛଆଡୁ ଆକ୍ରମଣ କରିବାକୁ । ଧମକ ଚମକ ବିଦ୍ୟାରେ ମଧ ସେଇ କଥା ହେବ । ଏ ବିଦ୍ୟାର ସଫଳ ପ୍ରୟୋଗ କରି ତୁମେ ପୁରସ୍କାରଟି (ମନ୍ତ୍ରୀଦପ୍ତରର ବଡ଼ ପ୍ରାଶାସନିକ ଚାକିରି ବା ଅନ୍ୟ ସିମିତି କିଛି) ଆଣିବାକୁ ଯାଉଛ ହଠାତ୍ ଦେଖିବ ପଛପଟୁ ତୁମ ଉପରେ ଜୋର ମାଡ଼ଟାଏ ବସିଛି ଓ ସବୁ ଓଲଟ ହୋଇ ତୁମର କଳ୍ପନା ଜଳ୍ପନା ଫସରଫାଟି ଯାଇଛି ।

ତୁମକରେ କହିଲେ କୁସା, ପେଞ୍ଚପାଞ୍ଚ, ଧମକ ଚମକ ଭୟଭୀତ କରିବା ବିଦ୍ୟାଟି ଶିକ୍ଷା ଦେବା ବା ଶିକ୍ଷା କରିବା ଏକ ଦୁରୁହ, ଜଟିଳ ପ୍ରକ୍ରିୟା । ତେଣୁ ତରବର ହୋଇ ତାକୁ ଶିଖିବା ପ୍ରୟାସ ଏକ ଅପଚେଷ୍ଟା ମାତ୍ର । ସେଥିପାଇଁ ତାକୁ ମାମୁଲି ପାଠ୍ୟକ୍ରମର ଅନ୍ତର୍ଗତ କରିବାରେ ମୋର ଦ୍ୱିଧାଭାବ ଆସୁଛି । ତଥାପି ଏ ଦୁଃସାଧ ବିଦ୍ୟାର ଅ ଆ କ ଖ ଓ ସ୍ଥୁଳ ଧାରଣା ଦେବାର ଚେଷ୍ଟା କରି ପାରିଲେ ଭଲ ହୁଅନ୍ତା ବୋଲି ଭାବୁଛି । ସେଥିପାଇଁ ହୁଏ ତ ଜଳଚର ପ୍ରାଣୀ ଥିବା ଜଳାଶୟ ନିକଟକୁ ପରିଦର୍ଶନ ଓ ପର୍ଯ୍ୟଟନଛଳରେ ପିଲାମାନଙ୍କୁ ନେବାକୁ ପଡ଼ିପାରେ । କାରଣ ଜାତୀୟ ଜୀବନର ଅବିକଳ ଅନୁକରଣକାରୀ କୁଳୀରକ (କଙ୍କଡ଼ା)ମାନଙ୍କ ମଜର ଗତିବିଧି ଓ ଅପୂର୍ବ ରଣକୌଶଳ ଓ ବିଚିତ୍ର କ୍ରିୟାକଳାପ ସେଇଠି ଦେଖିବାକୁ ମିଳିଛି । ସେଇଠି ଗୁରୁମହାଶୟ ବଟୁମାନଙ୍କ ଦୃଷ୍ଟି ଯୋଡ଼ିଏ କଙ୍କଡ଼ା ପରସ୍ପରକୁ ଆକ୍ରମଣ ଓ ପ୍ରତି ଆକ୍ରମଣ କରୁଥିବା ଦୃଶ୍ୟ ପ୍ରତି ଆକର୍ଷଣ କରିବେ । ସ୍ୱଚକ୍ଷୁ-ସମକ୍ଷରେ ଶିଷ୍ୟବୃନ୍ଦ ଦେଖିବେ କିପରି ପାର୍ଶ୍ୱ ଆକ୍ରମଣ କରି ଗୋଟିଏ ଅପରଟିକୁ ଜଳାଶୟର ଅନ୍ୟପାର୍ଶ୍ୱକୁ ଗୋଡ଼ାଇ ନେଇ ଷଣ୍ଢୁଆସି ଗୋଡ଼ରେ ଜାବୁଡ଼ିବାକୁ ଚେଷ୍ଟା କରୁଛି ଏବଂ ଅନ୍ୟାଟି ଅପରଠାରୁ ପାରୁ ପର୍ଯ୍ୟନ୍ତ ନିଜକୁ ରକ୍ଷା କରି ତା ପାଳି ପଡ଼ିଲାରୁ ଶତ୍ରୁକୁ ଓଲଟି ଆରପାରିକୁ ଗୋଡ଼ାଇ ନେଇଯାଇଛି । ଗୁରୁଦେବ ସେଇଠି ତାରସ୍ୱରରେ କହିବେ, " ଦେଖ ଦେଖ ପିଲେ ! ଏ ଜୀବ ଦୁଇଟିର ଅଦ୍ଭୁତ କ୍ରିୟାକାଣ୍ଡ । ଦିନ ଆସିବ ଯେବେ ଲୋକସଭାକୁ ଯାଇ ଦେଶସେବା

କରିବା ପାଇଁ ତୁମକୁ ବି ଡକରା ଆସିବ । ସେଠି ତୁମେ ଯାହା କରିବ ତହିଁର ଜୀବନ୍ତ ଜ୍ୱଳନ୍ତ ପ୍ରାଗଭାସ ତୁମ୍ଭେମାନେ ଏ ଉଦାହରଣରୁ ପାଇବ । ତେଣୁ ବତ୍ସଗଣ ! ଦୁହିଁଙ୍କ ଗତିବଧି ଭଲ କରି ଲକ୍ଷ୍ୟ କର ଓ ମନେ ରଖ ।''

ପିଲେ ଅବଶ୍ୟ ଭୁଲିଯିବେ ଯିମିତି ଅନ୍ୟସବୁ ପାଠ ଭୁଲି ଯାଆନ୍ତି; କିନ୍ତୁ କାଳସ୍ରୋତରେ ଅଧାଅଧି ବା ତଦଧିକ ଧୋଇ ହୋଇଗଲେ ମଧ୍ୟ ସ୍ମୃତିରୁ ସବୁ ମୂଳପୋଛ ହୋଇ ଲିଭିଯିବ ନାହିଁ । ଯେବେ ପାର୍ଲାମେଣ୍ଟ ରଙ୍ଗ ମଞ୍ଚରେ ବିରାଟ ସମସ୍ୟା ଓ ବିଷମ ଘଟଣ ବଳିର ବହୁ ପ୍ରତୀକ୍ଷିତ ଅଭିନୟର ଶୁଭଦିନ ଆସିଯିବ ସେତେବେଳେ କୁଳୀରକଯୁଗଳଙ୍କ ଅପୂର୍ବ ରଣକୌଶଳର ଯେଉଁ ଉଦାହରଣ ସହ ଶିକ୍ଷା ତାହା ସ୍ମୃତିପଟରେ ପୁନରୁଜ୍ଜୀବିତ ଓ ଉଦ୍‌ଭାସିତ ହୋଇ ସେମାନଙ୍କ ପରମ ଉପକାରରେ କ'ଣ ଲାଗିବ ନାହିଁ ?

ସୁଖର କଥା ଯେ 'ଘୁଷ୍' ଉତ୍‌କୋଚ ବିଷୟରେ କାହାରିକୁ ଶିକ୍ଷାଦାନର ଆବଶ୍ୟକତା ନାହିଁ କେବଳ 'ଘୁଷ୍'ର ପରିମାଣ ସମ୍ପର୍କରେ ପଦେ ଅଧେ ଚେତାବନୀ ଦେବା ଦରକାର ପଡ଼ିପାରେ । କାରଣ 'ଘୁଷ୍' ନେବା ଓ ଦେବାବିଦ୍ୟା ଅଗୁରୁବିଦ୍ୟା, ଆପେ ଆପେ ସମସ୍ତେ ଶିଖି ପାରନ୍ତି । କେବଳ ଏକ ପକ୍ଷରେ ଅତିରିକ୍ତ ଲୋଭ ଓ ଅନ୍ୟ ପକ୍ଷରେ ଅପର୍ଯ୍ୟାପ୍ତ ବଦାନ୍ୟତା ବର୍ଜନ କରିବାର ଗୁରୁତ୍ୱ ଶିଷ୍ୟମାନଙ୍କ ମୁଣ୍ଡରେ ପୂରାଇଲେ ହେଲା । ଘୁଷ୍ ନେବାର କଳାକୌଶଳ କାହାରିକୁ ଶିଖାଇବା ଦରକାର ନ ହେଲେ ମଧ୍ୟ ଘୁଷ୍ ଦେଲାବେଳେ କାଳେ କେହି ଅତି ବେଶୀ ଦେଇ ପକାଇବ ବା ଅତି ବେଶୀ କୃପଣତା ଦେଖାଇ ହିସାବ କିତାବ କରି ଅତି କମ୍ ଯାଚିଦେବ ସେଥିର ଅପରିଣାମଦର୍ଶିତା ବିଷୟରେ ବିଶେଷ ଗୁରୁତ୍ୱ ଦିଆଯିବ । ଏଇ ଶେଷୋକ୍ତ ନୀତରି ଅବମାନନା କରି ଅର୍ଥାତ୍ ଖୁବ୍ କମ୍ ପରିମାଣ ଘୁଷ୍ ଯାଚି ଅନେକ ମହାତ୍ମାଙ୍କ ଜୀବନନୌକା କାଳ-ବାରିଧିର ଲୁକ୍କାୟିତ ପଥରରେ ବାଡେଇ ହୋଇ ଚୂରମାର ହୋଇଯାଇଛି ।

ମୋର ଜଣେ ବନ୍ଧୁଥିଲେ ଯେ କି ଏ ବିଦ୍ୟାର କେବଳ ସହଜାତ କବଚକୁଣ୍ଡଳମାନ ପିନ୍ଧି ଦିଗ୍‌ବିଜୟରେ ବାହାରି ଅଖଣ୍ଡ ପ୍ରଭୁତ୍ୱ ଓ ଅଜସ୍ର ଅର୍ଥ ସଂଗ୍ରହ କରିଥିଲେ; କିନ୍ତୁ ତାଙ୍କ ପୁତ୍ରଦେବ ଅପର୍ଯ୍ୟାପ୍ତ ବିତ୍ତର ଅଧିକାରୀ ହେଲେ ସିନା; କିନ୍ତୁ ମନସ୍କାମନା ପୂରଣ ପାଇଁ ଯେତିକି 'ଘୁଷ୍' ଦେବା ଦରକାର ଇତସ୍ତତଃ ଓ କୃପଣମନ ହୋଇ ତହିଁରୁ ସାମନ୍ୟ କମ୍ ଅର୍ଥ ବରାବର ବିନିଯୋଗ କରିବାକୁ ଲାଗିବ । ଅବଶେଷରେ ସମସ୍ତ ସମ୍ପତ୍ତି ଅବିବେକୀ ହୋଇ ବିତରଣ କରି ଦେଲେ ଯାହା ବିନିମୟରେ ସେ ହୁଏତ ମନ୍ତ୍ରୀପରିଷଦର ବଡ଼ ପ୍ରଶାସନିକ ଚାକିରିଟିଏ ବା ରାଜ୍ୟପାଳ ବା ବଡ଼ ପାହିଆର ରାଷ୍ଟ୍ରଦୂତ ପଦ ପାଇଥାନ୍ତେ; କିନ୍ତୁ ବିପୁଳ ଅର୍ଥ ବିନିମୟରେ ପାଇଲେ କ'ଣ ? ଥରୁଟିଏ ରାଜ୍ୟସଭାର ସଭ୍ୟ, ଦୁଇଟି ସବ୍‌କମିଟିର ସଭାପତି ଏବଂ ଶେଷରେ ମ୍ୟୁନିସିପାଲଟିର ଚେୟାରମେନ୍ । ଶେଷୋକ୍ତ ପଦଟି ପାଇଲେ ରାଜନୈତିକଦଳ ପରିବର୍ତ୍ତନ କର ଏବଂ ଭାଇସ୍ (ପାପୀ, ଦୁରାତ୍ମା ?) – ଚେୟାରମେନ୍‌ଙ୍କ କାର୍ଯ୍ୟରେ କଦାପି ହସ୍ତକ୍ଷେପ କରିବେ ନାହିଁ ବୋଲି ଲିଖିତ ପ୍ରତିଶ୍ରୁତିଟିଏ ଦେଇ ।



# ଋଣମୁକ୍ତି

ତିନିବର୍ଷ ୪ ବର୍ଷ ତଳର କଥା । ଭଦ୍ରଖ ମହାବିଦ୍ୟାଳୟର ବିଜ୍ଞାନ ଗେଲେରୀରେ ଏକ ସାଂସ୍କୃତିକ ଉତ୍ସବ ଆୟୋଜିତ ହୋଇଥାଏ । ମୁଁ ଥାଏଁ ପ୍ରଧାନ ବକ୍ତା ଏବଂ ଡକ୍ଟର ମହତାବ ଥା'ନ୍ତି ମୁଖ୍ୟ ଅତିଥି । ଅତି ବେଶୀ ହେଲେ ୧୦୦ ଜଣ ଛାତ୍ର ଉପସ୍ଥିତ ଥାନ୍ତି ଏବଂ ଆଗ ବେଞ୍ଚରେ ସନ୍ନିକଟ ଛାତ୍ରୀ ନିବାସରୁ ୮/୧୦ ଜଣ ଛାତ୍ରୀ ବସିଥାନ୍ତି । ପରୀକ୍ଷା ସବୁ ପାଖ ହୋଇ ଆସୁଥିବାରୁ ଛାତ୍ର/ଛାତ୍ରୀମାନେ ଉତ୍ସବ ପ୍ରତି ବିମୁଖ ଥା'ନ୍ତି । ମୁଁ ଯିବି ନଯିବି ଭାବି ଶେଷରେ ଯିବି ବୋଲି ନିଷ୍ପତ୍ତି କଲି । ମୂଳ ଉଦ୍ଦେଶ୍ୟ ହେଲା ଡକ୍ଟର ମହତାବଙ୍କ ସାନ୍ନିଧ ଲାଭ କରି ପଦେ ଦି ପଦ କଥା କହିବା ଓ ଶୁଣିବାର ସୁଯୋଗ ପାଇବି ।

୬ଟା ସ୍ଥାନରେ ସଭା ହେଉ ହେଉ –୭ କ –୭ ଖ ହେଲା । ମହତାବ ଦମ୍ଭହୀନ ପଦକ୍ଷେପରେ ସାଙ୍ଗରେ ଜଣେ ଦିଜଣ ସାହାଯ୍ୟକାରୀଙ୍କୁ ନେଇ ପହଞ୍ଚିଲେ । ଯଥା ବିଧି ରିପୋର୍ଟ ପଢ଼ା ହେଲା ଓ ପରିଚୟ ଦିଆଗଲା । ସଙ୍ଗେ ସଙ୍ଗେ – ଡଃ ମହତାବ ଉଠିପଡ଼ିଲେ ଏବଂ କହିଲେ ଯେ ବେଶୀ ସମୟ ରହିପାରିବେ ନାହିଁ । ତାଙ୍କର ଅନ୍ୟତ୍ର ସଭା ଅଛି ୮ଟାରେ । ତେଣୁ ତାଙ୍କର ବକ୍ତବ୍ୟ ପ୍ରଥମେ ଶୁଣାଇ ଯଥା ସମ୍ଭବ ଶୀଘ୍ର ଅନ୍ୟତ୍ର ଚାଲିଯିବେ । ମୋର ମନ ଫିକା ପଡ଼ିଗଲା ଏବଂ ସମସ୍ତ ଉତ୍କଣ୍ଠା, ଆଗ୍ରହ, ଉତ୍ସାହ ମିଳାଇଗଲା । ମହତାବଙ୍କ ପରି ମୁଖ୍ୟ ଅତିଥିଙ୍କ ବକ୍ତବ୍ୟ ପରେ ଆଉ କିଏ ସଭା ସ୍ଥଳରେ ହେବ ଯେ ମୁଁ ବକ୍ତୃତା ଦେବି, କିଛି ନ ହେଲେ T.A., D.A. ବାବଦ ଯେଉଁ ଶହେ ପାଞ୍ଚପା ମିଳିବ ସେତିକି ଛଡ଼ା ଘରେ ରାତି ୧୨/୧ଟାରେ ପହଞ୍ଚିବାରୁ ଦୁର୍ଯୋଗ ମଧ୍ୟ କପାଳରେ ରହିଛି ଭାବି ଭାବି ମୁଖ୍ୟ ଅତିଥିଙ୍କ ବକ୍ତୃତା ଶୁଣିବାକୁ ପ୍ରସ୍ତୁତ ହେଲି । ଡଃ ମହତାବ କେବେ ନନ୍‌ସେନ୍‌ସ କହନ୍ତି ନାହିଁ । ତାଙ୍କର ରାଜନୀତି ଶତ୍ରୁମାନେ ମଧ୍ୟ ତାଙ୍କର ପ୍ରତ୍ୟେକଟି କଥା ଉପରେ ଗୁରୁତ୍ୱ ଦେଇଥାନ୍ତି । ମୁଁ ତାଙ୍କର ଜଣେ ଭକ୍ତ ଓ ଅଜସ୍ର ଉପାସକଙ୍କ ମଧ୍ୟରୁ ଜଣେ ଥିବାରୁ ତାଙ୍କର ବିରାଟ ବପୁ, ଶୁଆ ନାକ, ମୁଖମଣ୍ଡଳର ଅଜସ୍ର କଳାଜାଇ ବନ୍ଧା, ଛିଡ଼ା ହେବା ଠାଣି, ଏପରିକି ମୋଟା ଗଳାସ୍ୱର ମୋତେ ଭାରି ଭଲ ଲାଗେ । ସେଦିନ ଉଦ୍‌ବୋଧନ ଛଳରେ ପ୍ରାୟ ୧୫/୨୦ ମି, ସେ ଭାଷଣ ଦେଲେ । ଯହିଁରେ ପ୍ରାଇଭେଟ୍ କଲେଜ୍‌ଟିଏ ଜନସାଧାରଣଙ୍କ ଉଦ୍‌ଯୋଗ ଅକୁଣ୍ଠ ସାହାଯ୍ୟ ଓ ସହାନୁଭୂତି ପାଇଲେ କେତେ ଦୂର ଅଗ୍ରଗତି କରିପାରେ ତା'ର ଉଦାହରଣ ଭଦ୍ରଖ କଲେଜ ବୋଲି କହିଲେ । ଛାତ୍ରମାନଙ୍କ କର୍ତ୍ତବ୍ୟର ସୂଚନା ଦେଇ ଆଦର୍ଶ କଲେଜକୁ A long mater ବୋଲି ଗର୍ବ ଅନୁଭବ କରିବାକୁ ଉପଦେଶ ଦେଲେ ।

"ମୁଁ ଥିଲି ମିଶ୍ରଣ ବିରୋଧୀ । ତିନିପୁରୁଷ ଧରି ମାମୁ ଘର ଜରିଆରେ ମୟୂରଭଞ୍ଜ ରାଜବାଟୀ ସହିତ ସମ୍ପୃକ୍ତ ଥିବାରୁ ଶେଷ ପର୍ଯ୍ୟନ୍ତ ପାଠ ପଢ଼ିବାର ସବୁ ସାହାଯ୍ୟ ମହାରାଜାଙ୍କ ଠାରୁ ପାଇଥିବାରୁ ରାଜତନ୍ତ୍ର ମୋ ଅସ୍ଥିମଜ୍ଜାଗତ ହୋଇଯାଇଥିଲା ।

ପରବର୍ତ୍ତୀ କାଳରେ ପ୍ରଜାତନ୍ତ୍ର ପ୍ରଚାର ସମିତିରୁ କ୍ଷୁଦ୍ରଗଳ୍ପ ଓ ରମ୍ୟରଚନା ପାଇଁ ବିଷୁବ ମିଳନରେ ମାନପତ୍ର ମଧ୍ୟ ପାଇଲି । ମୋତେ ଏତେ ଭାବରେ ଅନୁଗୃହୀତ, ଉତ୍ସାହିତ କଲେ ମଧ୍ୟ ମୁଁ ସନ୍ତୁଷ୍ଟ ହେଲି ନାହିଁ ଓ ମହତାବଙ୍କ ଉପରେ । ନିମକ ହାରାମକାଦିର ମୋର ପାଇବାର କଥା ଓ ମହତାବଙ୍କ ପାଖରୁ ।

ଏ ପର୍ଯ୍ୟନ୍ତ ଉତ୍ସବରେ ମୁଁ ତାଙ୍କ ମୁଖାମୁଖି ହୋଇନାହିଁ । ସାପ୍ତପଦୀ ବନ୍ଧୁ ବୋଲାଇବା ଦୂରର କଥା, ଖାଲିଟାରେ ତାଙ୍କ ପାଟିରୁ ବାହାରି ଥିଲା "ଓ ! ବସନ୍ତ ବାବୁ ।" କଲେଜର ଅଧ୍ୟକ୍ଷ ତାଙ୍କୁ ମୋର ପରିଚୟ ଦେବାକୁ ଗଲାବେଳେ, ମୁଁ ଭାବିଲି ମୋତେ ଭଲ କରି ଚିହ୍ନି ପାରିଲେ ନାହିଁ ।

ସମସ୍ତେ ଭାବିଲେ ମହତାବ ଏଥର ଚାଲିଯିବେ ଏବଂ ଅଧିକାଂଶ ସଭାସଦ୍ ଉଠିବା ପାଇଁ ପ୍ରସ୍ତୁତ ହେଉଥାନ୍ତି । କି ଆଶ୍ଚର୍ଯ୍ୟର କଥା ମୁଁ ଛିଡ଼ା ହୋଇ ବକ୍ତୃତା ଆରମ୍ଭ କଲିଣି ସେ ଉଠିବାର କୌଣସି ଲକ୍ଷଣ ଦେଖାଉ ନାହାନ୍ତି । ମୁଁ ମହାସନ୍ତର୍ପଣରେ ଆରମ୍ଭ କଲି, ମନ ଭିତରେ ଥାଏ । ହଠାତ୍ ମୋର ବକ୍ତୃତାର ଖିଅ କଟିଯିବ, ଭାବନାର ସୁଅ ବନ୍ଦ ହୋଇଯିବ । କାରଣ ମହତାବ ଚାଲିଯିବେ । 'ବିଶୃଙ୍ଖଳା,ବିଭ୍ରାଟ ହେବ ତଥାପି ଯେତିକି ସମୟ ଅଛନ୍ତି ତହିଁରୁ ଲାଭ, ଫାଇଦା, ଯଥା ଲାଭ, ଶୁଭସ୍ୟ ଶୀଘ୍ରଂ ଭାବି ହଠାତ୍ ଆରମ୍ଭ କରିଦେଲି ମୋର ବକ୍ତବ୍ୟ । କେଉଁଠି ବକ୍ତୃତା ଦେବାର ଥିଲେ ମୁଁ ହଠାତ୍ ମନକୁ ପାଟିକୁ ଯାହା ଆସେ ସେଥିରୁ ଆରମ୍ଭ କରିଦିଏ ବିନା ଦ୍ୱିଧାରେ । ଅଭିଜ୍ଞତାରୁ ଜାଣିଛି ତଦ୍ୱାରା ବକ୍ତୃତାରେ ସ୍ୱାଭାବିକତା ରହେ । ଭାଷାରେ ପ୍ରାକୃତିକତା ଆସେ । ମୋର ପ୍ରଥମ ବାକ୍ୟ ହେଲା – "ମୋର ପ୍ରିୟ ଲେଖକ ଫକୀରମୋହନ, ଯଦି କେହି ଚରିତ୍ର ଚିତ୍ରଣରେ ଉତ୍କର୍ଷ ଓ ପରାକାଷ୍ଠା ଲାଭ କରିଛି, ସେ ହେଲେ ସେହି । ବର୍ତ୍ତମାନ ମୁଁ ତାଙ୍କର ଏକ ଗୌଣ ଚରିତ୍ର ଯଥା ଚମ୍ପା,ରାଜୀବ ମହାନ୍ତି ଏବଂ ବାବାଜୀ ଲଳିତା ଦାସଙ୍କ ବିଶ୍ଳେଷଣ କରି ଦେଖାଇବି କେମିତି ସିଏ ଅଲୌକିକ ହାସ୍ୟରସ ଓ ଚରିତ୍ର ସ୍ରଷ୍ଟା । ମରିବାକୁ ଯାଉଥିଲାବେଳେ ମୁମୂର୍ଷୁ ଅବସ୍ଥାରେ, ଚକ୍ଷୁ ମୁଦ୍ରିତ ହୋଇ ଆସୁଥିଲା ବେଳେ ଯଦି କେହି ବାବାଜୀ ଲଳିତା ଦାସ, ଆଖୁନଜୀ, ଇନାଏତ୍, ହୋସେନ୍ ନାଁ କାନ ପାଖରେ ଆଦେଶପୂର୍ଣ୍ଣ କଣ୍ଠରେ କୃଷ୍ଣ ହରି , ଜଗନ୍ନାଥ ବଦଳରେ କୁହେ ତେବେ ମୁଁ ଜୀଇଁ ଉଠିବି ଏବଂ ଠୋ ଠୋ ହସିବାକୁ ଚେଷ୍ଟା କରି ମରିଯିବି । ଗୌରବାବହ ମରଣ ମୋ ପକ୍ଷରେ ହେବ ସେଇଥିରେ । ଦେଖିଲି ଡଃ ମହତାବ ମୋର ଜଣେ ମୁଗ୍ଧ ଶ୍ରୋତା ଆସନକୁ ଆସିଯାଇଛନ୍ତି ଏବଂ ମୁଁ ବିନା ଦ୍ୱିଧାରେ ନିଃସନ୍ଦିଗ୍ଧ ଚିତ୍ତରେ ଆଗେଇ ଚାଲିଲି ଯଥେଷ୍ଟ ଉତ୍ସାହିତ ହୋଇ । ମୋ ବକ୍ତୃତା ଭଂଗୀ ଓ ଅଭିନୟରେ ଡଃ ମହତାବ କେବେ

କେବେ ହସୁଥାନ୍ତି । କେତେବେଳେ ଦର୍ଶକମାନଙ୍କ ସହିତ ତାଳଦେଇ ଫକୀରମୋହନଙ୍କୁ ଉପଭୋଗ କରୁଥାନ୍ତି । ମୁଁ ପ୍ରାୟ ୪୦/୪୫ ମିନିଟ୍‌ରୁ ବେଶୀ କହେ ନାହିଁ । ଅଧ୍ୟାପକ ଜୀବନ ଯାକ ୪୫ ମିନିଟିଆ ପିରିୟଡ଼ ନେଇ ନେଇ ଅଭ୍ୟାସ ହୋଇଯାଇଛି ୮ । ମୋର ଭାଷଣ ଶେଷ ହେବା ସଙ୍ଗେ ସଙ୍ଗେ ମୁଖ୍ୟ ଅତିଥି ଉଠିଲେ । ଶ୍ରୋତା କର୍ମକର୍ତ୍ତା ଏବଂ ମୁଁ ଉଠି ବସିଛୁଁ ତାଙ୍କର ବିଦାୟ ଦେବା ପାଇଁ, ମାତ୍ର ଇଏ କ'ଣ ? ମହତାବ ପୁଣି ଛିଡ଼ାହୋଇ କହିଲେ ମୋର ଅଳ୍ପ କିଛି କହିବାର ଅଛି । ସଭାଗତ ମୋତେ ଅଳ୍ପ ସମୟ ଦେବେ । ମୋର ବକ୍ତୃତାର ଭୁରି ଭୁରି ପ୍ରଶଂସା କରି ଶେଷରେ ସେ କହିଲେ "ବହି କେମିତି ପଢ଼ିବାକୁ ହୁଏ, ଅନୁଶୀଳନ ବିଶ୍ଳେଷଣ କରି ଲେଖକର କଳା କିପରି ଉପଭୋଗ କରିବାକୁ ହୁଏ ତାହା ଆପଣମାନେ ବସନ୍ତବାବୁ ବକ୍ତୃତାରୁ ଜାଣିଲେ । ଆପଣମାନଙ୍କୁ ଉପଦେଶ ଦେଉଛି ପଲ୍ଲବ ଗ୍ରାହିତା ଛାଡ଼ି ନାନା ଭାଷା ସାହିତ୍ୟ ପଢ଼ି ରସୋପଲବ୍ଧି କରିବାକୁ ଶିଖନ୍ତୁ ।" ମୋ ବିଷୟରେ ଆହୁରି ଅନେକ କଥା କହିଲେ – ତହିଁରୁ ମୁଁ ତାଙ୍କ ହୃଦୟବତ୍ତାର ପ୍ରକୃଷ୍ଟ ପରିଚୟ ପାଇଲି ଯାହା ଉପରୁ ଠଉରାଇ ହୁଏ ନାହିଁ । ଭୀତି ସଞ୍ଚାର କରାଏ ତାଙ୍କ ଚକ୍ଷୁ ଓ ଚେହେରା । ବୁଝି ପାରିଲି ନାହିଁ ତାଙ୍କୁ । ଅଥଚ ଇଏ ସେହି ମହତାବ ଯେକି ମୟୂରଭଞ୍ଜ ମିଶ୍ରଣ ର ଅବ୍ୟବହିତ ପୂର୍ବରୁ ୧୯୪୮ ସାଲରେ ମୋତେ ଦେଖା ବି ଦେଇ ନଥିଲେ ସୌଜନ୍ୟର ପୂରା ବ୍ୟତିକ୍ରମ ଘଟାଇ ।

ଡଃ ମହତାବ ସେତେବେଳେ ଓଡ଼ିଶାର ମୁଖ୍ୟ ମନ୍ତ୍ରୀ । ମୟୂରଭଞ୍ଜକୁ ଛାଡ଼ି ସବୁ ଗଡ଼ଜାତ ଓଡ଼ିଶାରେ ମିଶି ଯାଇଥାନ୍ତି । ସ୍ୱାଧୀନ ସ୍ୱତନ୍ତ୍ର ମୟୂରଭଞ୍ଜ । ଷଢ଼େଇ କଳା, ଖରସୁଆଁକୁ ଓଡ଼ିଶାରୁ ପ୍ରବେଶ ପଥ ନାହିଁ ବୋଲି ଦ୍ୱାହି ଦେଇ ବିହାର ସହିତ ସେ ଦୁଇ ରାଜ୍ୟକୁ ମିଶାଇ ଦିଆଯାଇଥାଏ । ଡ ରାଜେନ୍ଦ୍ରେ ପ୍ରସାଦ ଓ ଡ. ମହତାବଙ୍କ ନାଆଁ ଏ ସମ୍ପର୍କରେ ବାରମ୍ବାର ଅଖଣ୍ଡ ଉତ୍କଳବାଦୀ ମାନେ କ୍ରୋଧାନ୍ୱିତ ହୋଇ ଉଚ୍ଚାରଣ କରୁଥାନ୍ତି । ସେତେବେଳେ ଶରତ ଚନ୍ଦ୍ର ଦାସଙ୍କ ଲୋକ ପ୍ରିୟ ନାଁ ଶରତ ଗାନ୍ଧୀ । ସାର୍ବଭୌମ ମୟୂରଭଞ୍ଜର ପ୍ରଧାନମନ୍ତ୍ରୀ ସେ । ମୟୂରଭଞ୍ଜ ମହାରାଜା ଓ ମୟୂରଭଞ୍ଜ କେନ୍ଦ୍ର ପରିଷଦ ମଧ୍ୟରେ ଅନେକ ଦ୍ୱନ୍ଦ୍ୱ ଭରପୁର । ପରିଷଦ ମହାରାଜାଙ୍କ Civil list ଟଙ୍କା ଭୋଟ ଉପରକୁ ଆଣି ଯେଉଁ ପରିମାଣ ପ୍ରାପ୍ୟ ନିର୍ଦ୍ଧାରିତ କଲା । ତାହା ମହାରାଜାଙ୍କୁ ଖୁବ୍ କ୍ଷୁବ୍ଧ କଲା । ପ୍ରଜାମାନେ ରାଜାଙ୍କ ପ୍ରାପ୍ୟ ନିର୍ଦ୍ଧାରଣ କରିବେ, ଏକଥା ପରମ୍ପରା କ୍ରମେ ମହାରାଜାଙ୍କ ନାୟାନ୍ଦ କୁ ଅପମାନ ସୂଚକ ହେଲା । ସର୍ବୋପରି ଯେତିକି ପ୍ରାପ୍ୟ ଭାରତ ସରକାର ଫର୍ମୁଲାରେ ପକାଇ ସ୍ଥିର କରୁଛନ୍ତି । ମିଶ୍ରଣ ଚୁକ୍ତିରେ ଦସ୍ତଖତ କଲେ, ତାଠୁ ବହୁତ ଅଧିକ ସେ ପାଇବେ । ଏଣେ ରାଜ୍ୟରେ ଆଦିବାସୀମାନଙ୍କ ଭିତରେ ଜାଗରଣ, ଅଶାନ୍ତି, ଭିତିରିଆ ଚକ୍ରାନ୍ତ । ତେଣୁ ସାରା ଦେଶର ତଥା ସର୍ଦ୍ଦାର ପଟେଲଙ୍କ ମତିଗତି ଦେଖି ମହାରାଜା ଅତିଷ୍ଠ ହେବାକୁ ଆରମ୍ଭ କଲେ ଏବଂ ସନ୍ଦେହ ଚକ୍ଷୁରେ ମୟୂରଭଞ୍ଜର ତଥା କଥିତ ନେତାମାନଙ୍କ ଦୋ ମୁହାଁ ନୀତି ଦେଖିବାକୁ ପାଇଲେ ।

ଆମକୁ ଆଶ୍ଚର୍ଯ୍ୟ ଲାଗୁଥାଏ । ଶରତ ବାବୁ କିପରି ସଂପ୍ରତି ସ୍ୱଭାବତଃ ଶତ୍ରୁ ସ୍ଥାନୀୟ ମହତାବଙ୍କ ସହିତ ସମ୍ପର୍କ ରଖିଛନ୍ତି । ତାଙ୍କ ମୁହଁରୁ ସବୁବେଳେ ମହତାବ ଓ କୈଳାସ ମହାନ୍ତିଙ୍କ ନାଆଁ ବାହାରୁଥାଏ । ସେ ତ୍ରିମୂର୍ତ୍ତି ପ୍ରଜାମଣ୍ଡଳ ଆନ୍ଦୋଳନ ସହିତ ଜଡ଼ିତ । ବାଲେଶ୍ୱରର ମହତାବ, ନୀଳଗିରିର କୈଳାସ ମହାନ୍ତି ଓ ମୟୂରଭଞ୍ଜର ଶରତ ଦାସ ଏକତ୍ର ପ୍ରଜାମଣ୍ଡଳ ପୁରୋଧା ଆକାରରେ ନାମିତ ହୋଇଥାନ୍ତି । ସାରଙ୍ଗଧର ଦାସ ଓ ପବିତ୍ର ବାବୁଙ୍କ ନାଁ ବି କେତେବେଳେ କେମିତି ଏ ପ୍ରସଙ୍ଗରେ ଏ ଅଞ୍ଚଳରେ ଉଠୁଥାଏ ।

ମହାରାଜା ସେତେବେଳେ ପୁଅ ମାନଙ୍କୁ ଧନୁତୀର ଶିକ୍ଷା ଦେଉଥାନ୍ତି । କହୁଥାନ୍ତି ୮୮ ଭାଗ ଆଦିବାସୀ ହିଁ ମୋର ବଂଶାନୁକ୍ରମିକ ପ୍ରଜା । ଅନ୍ୟମାନେ ବିଦେଶୀ । ମୁଁ ସେମାନଙ୍କୁ ଛାଡ଼ି ଦେଶ ଦ୍ରୋହୀ ହାତୁଆ ଅଣ-ଆଦିବାସୀଙ୍କ ସହିତ ସାଙ୍ଗ ହେବି ? ମୁଁ ସେତେବେଳେ ମୟୂରଭଞ୍ଜ କେନ୍ଦ୍ର ପରିଷଦର ସେକ୍ରେଟେରୀ କାର୍ଯ୍ୟ ସହିତ ମୟୂରଭଞ୍ଜ ଗେଜେଟ୍, ଭଞ୍ଜ ପ୍ରଦୀପ, ମୟୂରଭଞ୍ଜ କ୍ରନିକଲ୍ ଆଦି ପତ୍ର ପତ୍ରିକାରେ ସମ୍ପାଦନା କାମ କରୁଥାଏ । ମୟୂରଭଞ୍ଜର Public Relation officer ବା publicity officer ବୋଲି ମୁଁ ଜନ ସାଧାରଣରେ ପରିଚିତ । ରାଜା ପ୍ରଜା ଭିତରେ ମୁଁ ଏକ ପ୍ରକାର ଲାଏସେଁ ଅଫିସର ଥାଏ ବୋଲି ଧରି ନିଆଯାଇପାରେ । ମୁଁ ଥିଲି ମିତ୍ରତା ବିରୋଧୀ । ତିନିପୁରୁଷ ଧରି ମାମୁ ଘର ଜରିଆରେ ମୟୂରଭଞ୍ଜ ରାଜବାଟୀ ସହିତ ସମ୍ପୃକ୍ତ ଥିବାରୁ ଏବଂ ଦରିଦ୍ର ମେଧାବୀ ଛାତ୍ର ହିସାବରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପାଠ ପଢ଼ିବାର ସବୁ ସାହାଯ୍ୟ ମହାରାଜାଙ୍କ ଠାରୁ ପାଇ ଥିବାରୁ ରାଜତନ୍ତ୍ର ମୋ ରକ୍ତ ମଜ୍ଜାଗତ ହୋଇଯାଇଥିଲା । ମୁଁ ମହାରାଜାଙ୍କ ଯେମିତି ବିଶ୍ୱସ୍ତ । ଏ ମୋ ଜାଣତରେ ଆମର ଉଦ୍ଦେଶ୍ୟ ନଥିଲା ଓଡ଼ିଶାରୁ ମୟୂରଭଞ୍ଜକୁ ଅଲଗା ରଖିବା । ବିହାର କୁ ନିଶ୍ଚୟ ଯିବୁ ନାହିଁ । କିନ୍ତୁ ଯଦି ମିଶିବାକୁ ହୁଏ, ତେବେ ଓଡ଼ିଶା ସହିତ ମିଶିବୁ । ଓଡ଼ିଶାକୁ ମୟୂରଭଞ୍ଜର ଅବଦାନ ସାହିତ୍ୟ ସଂସ୍କୃତି ଶିକ୍ଷା କ୍ଷେତ୍ରରେ ଅମାପ । ଓଡ଼ିଶାରେ ହଠାତ୍ ମିଶିଗଲେ ଆଦିବାସୀ ମାନେ ୧୯୧୭ ସାଲରେ ମୟୂରଭଞ୍ଜ ମେଳକୁ ସ୍ମରଣ କରି ଜାଗି ଉଠିବେ ଓଡ଼ିଆ ମାନଙ୍କ ବିରୋଧରେ ଏବଂ ରକ୍ତପାତ ଦେବାରେ ଯେମିତି ଚାଲିଛି ରାଜ୍ୟରେ ସେମିତି ହୋଇ ନିରୀହ ଲୋକେ ମରିଯିବେ (ପରେ ଦେଓ ପଟାରେ ସେଇଆ ହେଲା) ତାଛଡ଼ା ତ୍ରିପୁରା, କୁଚ୍‌ବିହାର ପରି ଛୋଟ ରାଜ୍ୟ ତ ମିଶିଲା ନାହିଁ । କ୍ରମେ କ୍ରମେ ବାଲେଶ୍ୱର ଆଉ ମୟୂରଭଞ୍ଜକୁ ବାହାର ଲୋକଙ୍କ ଅନୁ ପ୍ରବେଶ ମଧ୍ୟ ସରକାରୀ ପ୍ରରୋଚନା ଓ ପ୍ରୟେଦନାରେ ଆରମ୍ଭ ହେଲା ଏବଂ ରାଜନୈତିକ ଅସ୍ଥିରତା ମୟୂରଭଞ୍ଜରେ ସର୍ବତ୍ର ଅନୁଭୂତ ହେଲା । ରାଜା ଠାରୁ ପ୍ରଜା ପର୍ଯ୍ୟନ୍ତ । ମୟୂରଭଞ୍ଜର ସ୍ଥିତି ଓ ଭବିଷ୍ୟତ କ'ଣ ହେବ ଏ ନୂତନ ପରିସ୍ଥିତିରେ ।

ପ୍ରଧାନ ମନ୍ତ୍ରୀ ଶରତ ଦାସ ଦିନେ ଜିପ୍ ପଠାଇ ମୋତେ ଡକାଇଥିଲେ ଏବଂ ଚିଠି ଟିଏ ଦେଇ କହିଲେ "ବସନ୍ତ ତୁମେ ବାଲେଶ୍ୱର ଯାଅ । ସେଠି ମହତାବଜୀ ଅଛନ୍ତି । ତାଙ୍କୁ

ଯେମିତି ହେଉ ଭେଟି ଏ ଚିଠିଟି ଦେବ, ମୋ ନାଁ କହି, ଚିଠିରେ କ'ଣ ଅଛି ମୁଁ ଜାଣେ ନି, ଯେମିତି ଗଧ ଜାଣେନି ତା ପିଠିରେ ଲୁଣ ବା ମଇଳା ଲୁଗା, କ'ଣ ଲଦା ହୋଇଛି ।

ବୁଝି ପଚାରି ଜାଣିଲି, ସହରରେ ଗୋଟାଏ ରାଜନୈତିକ ସମ୍ମିଳନୀ ହେଉଛି । ଗୋଟାଏ ଧାନକଳ ପରିସରରେ, ଡାକ୍ତରଖାନା ଆଗରେ ମୋର ପରିଚିତ ସାମ୍ବାଦିକ ବନ୍ଧୁ ଶ୍ରୀ ଜୟନ୍ତ ଘୋଷ ମଧ୍ୟ ସେଠି ଉପସ୍ଥିତ ଥିଲେ । ସେ ଦେଖିଛନ୍ତି ଓ ମହତାବ କେମିତି ତୁଚ୍ଛ ତାଚ୍ଛଲ୍ୟରେ ମୋତେ ବିଦାୟ କରିଦେଲେ । ଦୂତକୁ ଅପମାନ ଦେବା ଶାସ୍ତ୍ର ପୁରାଣ ବିରୁଦ୍ଧଆଚରଣ ।

ଯେତେବେଳେ "Go, Go, merge with Orissa" ବୋଲି କେହି ଶରତ ବାବୁଙ୍କ ଦଳବଳଙ୍କୁ (ମୁଁ ବି ସେ ଭିତରେଥିଲି) ୭, ଆଉରଙ୍ଗଦେବ ରୋଡ଼ରୁ ସର୍ଦ୍ଦାର ପଟେଲ ଘଉଡ଼ାଇ ଦେଲେ ଏବଂ ଓଡ଼ିଶା ସହିତ ମୟୂରଭଞ୍ଜ ମିଶିଲା ଏବଂ ମୁଁ P.R. Department ଯେ ଯୋଗ ଦେଲି । ସେତେବେଳେ ଡ. ମହତାବ ଓ ନୀଳମଣି ସେନାପତି ମୋତେ ଡମର ନାନା ଜେରା ଜମାନ ବନ୍ଦୀ କରିଥିଲେ ଦିଲ୍ଲୀ ଯାତ୍ରା ବିଷୟରେ । ମୁଁ ନୀରବ ରହିଥିଲି ଏବଂ କିଛି ଜାଣିଲେ ବି କହିବି ନାହିଁ ବୋଲି ଉତ୍ତର ଦେଇଥିଲି । ମୁଁ ଧରି ନେଇଥିଲି, ଓଡ଼ିଶାରେ ମୋର ଭବିଷ୍ୟତ ନାହିଁ । ତେଣୁ କାଳେ କେଉଁ କଥା ଘଟିପାରେ ଭାବି P.R. Depart (ଯାହା ମୁଖ୍ୟମନ୍ତ୍ରୀ ଡ. ମହତାବଙ୍କ ହାତରେ ଥାଏ) ଛାଡ଼ି ଯଥା ଶୀଘ୍ର ସମ୍ଭବ ଶିକ୍ଷା ବିଭାଗର class 2 ରେ ଅଧ୍ୟାପକତ୍ୱ ଗ୍ରହଣ କଲି ।

ହଠାତ୍ ଦିନେ ନିମନ୍ତ୍ରଣ ପାଇଲି ପ୍ରଜାତନ୍ତ୍ର ପରିଷଦର ବିଷୁବ ମିଳନରେ ଯୋଗ ଦେଇ ଏକ ସାହିତ୍ୟ ଅଧିବେଶନରେ ସଭାପତିତ୍ୱ କରିବା ପାଇଁ ଡ. ମାନସିଂଙ୍କ ମୁଖରୁ ଡ. ମହତାବ ମୋର ସାହିତ୍ୟିକ ପରିଚିତି ପାଇ ମୋତେ କେନ୍ଦ୍ର ସାହିତ୍ୟ ଏକାଡ଼େମୀରୁ 'ସଞ୍ଚୟନର' ସମ୍ପାଦନା ଓ ପରେ 'ରାଜା' ର ଅନୁବାଦ ଦାୟିତ୍ୱ ଦେଇଥିଲେ । କାରଣ ସେତେବେଳେ ସେ ଥିଲେ କେନ୍ଦ୍ର ସାହିତ୍ୟ ଏକାଡେମୀରେ କାର୍ଯ୍ୟକାରୀ କମିଟିର ସଦସ୍ୟ । ସେହି ସମୟରେ ମୁଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ରୁ ଗଳ୍ପ ପାଇଁ ପୁରସ୍କୃତ ହେଲି । ଡ. ମହତାବ ସେତେବେଳେ ସାହତ୍ୟ ଏକାଡ଼େମୀରେ ସଭାପତି ।

ପରବର୍ତ୍ତୀ କାଳରେ ସେଇ ପ୍ରଜାତନ୍ତ୍ର ପ୍ରଚାର ସମିତିରୁ କ୍ଷୁଦ୍ର ଗଳ୍ପ ଓ ରମ୍ୟ ରଚନା ପାଇଁ ବିଷୁବ ମିଳନର ମାନପତ୍ର ମଧ୍ୟ ପାଇଲି । ମୋତେ ଏତେ ଭାବରେ ଅନୁଗୃହୀତ, ଉତ୍ସାହିତ କଲେ ମଧ୍ୟ ମୁଁ ସନ୍ତୁଷ୍ଟ ହେଲିନାହିଁ ଡ. ମହତାବଙ୍କ ଉପରେ । କାରଣ ନିମକହାରାମ ଜାଗିରି ମୋର ପାଇବାର କଥା ଡ. ମହତାବଙ୍କ ପାଖରୁ ।

ଦିନେ କଟକ ଯାଉଥାଏ । ପାଖରେ ଜଣେ ସାହିତ୍ୟିକ ବନ୍ଧୁ ବସିଥାନ୍ତି । ଆରମ୍ଭ କଲି ଡ.ମହତାବଙ୍କ ଉପରେ ବିଷୋଦଗାର । "ପ୍ରଜାତନ୍ତ୍ର" ପ୍ରଚାର ସମିତି ଏକ ଭାଣ୍ଡ କାରଖାନା ସାହିତ୍ୟ ନାଁରେ ଅନେକ ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ହୁଏ । ଉଦାହରଣ ଦେଇ କହିଲି, ମୟୂରଭଞ୍ଜ କଲେକ୍ଟରଙ୍କ ପାଖକୁ ଜଣେ ଦୂତ ମହତାବଙ୍କ ପାଖକୁ ଯାଇଥିଲା । କିଛି, ଟଙ୍କା

ଆଣିବା ପାଇଁ ଯାହା ବିଷୁବ ମିଳନରେ ଖର୍ଚ୍ଚ ହେବ । ସେଦିନ ଯାହା ଯାହା ତାଙ୍କ ବିରୋଧରେ କହିଛି ତାହା ରାଜଦ୍ରୋହ, ଭଗବଦ୍ ଦ୍ରୋହ ବୋଲାଯାଇ ପାରେ । କଥ୍ୟ ଅକଥ୍ୟ ସବୁ ଭାଷା ମୁଁ ପ୍ରୟୋଗ କରି ଏପରିକି ଚରିତ୍ର ସଂହାର ଆଡ଼କୁ ଯାଇଛି ।

ଦୁଇଦିନ ପରେ ଘରକୁ ଫେରି ପ୍ରଜାତନ୍ତ୍ର ପ୍ରଚାର ସମିତିର ଚେୟାରମ୍ୟାନଙ୍କ ପାଖରୁ ଚିଠି ପାଇଲି ଯହିଁରେ ଲେଖାଥିଲା, ବିଷୁବ ମିଳନରେ ମୁଁ ୧୦୦୦ ଟଙ୍କା ପୁରସ୍କାର ପାଇବି ମୋର ସାହିତ୍ୟ ସାଧନା ଓ କୃତି ପାଇଁ । ଡ. ମହତାବ ମୋତେ ବିଦାୟ ଦେଇଛନ୍ତି । ରାଜନୀତି ଓ ସାହିତ୍ୟର ନୈତିକତା ଭିତରେ ଥିବା ପାର୍ଥକ୍ୟ । ଡ. ମହତାବ ଓ ମୁଖ୍ୟମନ୍ତ୍ରୀ ମହତାବଙ୍କ ଭିତରେ କେତେ ପ୍ରଭେଦ କି ଉଦାର ମହାନୁଭବ ବ୍ୟକ୍ତିତ୍ୱ !



# ଶ୍ରେଷ୍ଠ ଅଲମ୍ପିକ ପୁରସ୍କାର

ପ୍ରାନ୍ସର ପ୍ରଖ୍ୟାତ କ୍ରୀଡ଼ାପ୍ରେମୀ ଓ ଆଧୁନିକ ବିଶ୍ୱ କ୍ରୀଡ଼ା ପ୍ରତିଯୋଗିତାର ପ୍ରବର୍ତ୍ତକ ପିଆରି ଡି କୋର୍ଟେବିନ୍ ଅଲିମ୍ପିକ ଖେଳର ଉପଯୋଗିତା ସମ୍ପର୍କରେ କହିଥିଲେ, ''ଖେଳରେ ଜିଣିବା ବଡ଼ କଥା ନୁହେଁ ; ଅସଲ କଥା ହେଲା ଖେଳରେ ଅଂଶ ନେବା । ଜୀବନରେ ବିଜୟ ଅପେକ୍ଷା ଭଲଭାବରେ ଯୁଝିବା ହେଲା ଅଧିକ ଗୌରବର କଥା ।''

କୋର୍ଟେବିନ ୧୮୯୬ ସାଲରେ ଅଲିମ୍ପିକ ଖେଳର ଦ୍ୱିତୀୟ ଗସ୍ତ ପ୍ରଚଳନ କଲେ । ଏଇ ଅଲିମ୍ପିକଖେଳ ପୃଥିବୀର ପ୍ରାଚୀନତମ କ୍ରୀଡ଼ା ପ୍ରତିଯୋଗିତା । ଗ୍ରୀସର ଜାତୀୟ କ୍ରୀଡ଼ାରୂପେ ଏହାର ପ୍ରଥମ ପ୍ରବର୍ତ୍ତନ ଖ୍ରୀ.ପୂ. ୭୭୬ରେ ହୋଇଥିବାର ଅନୁମାନ କରାଯାଏ । ଗ୍ରୀସର ସର୍ବଶ୍ରେଷ୍ଠ ଦେବତା ଝିଆସଙ୍କ ସମ୍ମାନ୍ୟାର୍ଥେ ଏହା ଆୟୋଜିତ ହୋଇଥିଲା । ଗ୍ରୀକ୍ ଦେବବୃନ୍ଦଙ୍କ ଆବାସସ୍ଥଳୀ ଅଲିମ୍ପାସ ପର୍ବତରେ ପାଦ ଦେବାରେ ଅନୁଷ୍ଠିତ ହେଉଥିବାରୁ ଏହାକୁ ଅଲିମ୍ପିକ ଖେଳ କୁହାଯାଏ ।

ସେ କାଳରେ ଖେଳଟି ମାତ୍ର ଦିନ ଗୋଟିକରେ ଶେଷ ହେଉଥିଲା । ଷ୍ଟେଡିୟାମ୍‌ର ଗୋଟାଏ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଦଉଡ଼ିବା ହେଲା ସେ ଦିନଟିର ଏକମାତ୍ର କ୍ରୀଡ଼ା । ବିଜେତା ପୁରସ୍କାର ପାଇଥିଲେ ଖଣ୍ଡିଏ ପବିତ୍ର ଅଲିଭ୍ ଡାଳ । ଖେଳ ଉନ୍ମୁକ୍ତ ଥିଲା କେବଳ ଜନ୍ମତଃ ସ୍ୱାଧୀନ ଗ୍ରୀସ୍ ବାସିନ୍ଦାଙ୍କ ପାଇଁ । ନାରୀମାନେ ସେଥିରେ ଯୋଗ ଦେଇ ପାରୁ ନଥିଲେ । ଖେଳ ପ୍ରାରମ୍ଭରେ ପ୍ରତିଯୋଗୀଗଣ ତଥା ବିଚାରକବୃନ୍ଦ ଶପଥ ନେଉଥିଲେ ଯେ ସେମାନେ ଖେଳରେ ଅନ୍ୟାୟକୁ ଆଚରଣ କରିବେ ନାହିଁ ବା ଗର୍ହିତ ପନ୍ଥା ଗ୍ରହଣ କରିବେ ନାହିଁ । ବିଜେତାଙ୍କୁ ଜାତୀୟ ବୀରରୂପେ ସମ୍ମାନ ଓ ସମ୍ବର୍ଦ୍ଧନା ଦିଆଯାଇଥିଲା । ରୋମର ରାଜା ଓ ସମ୍ରାଟଗଣ ମଧ୍ୟ ଏ ଖେଳରେ ଭାଗ ନେବାକୁ ଉତ୍ସୁକ ଥିଲେ । ଖେଳ କ୍ରମାନ୍ୱୟରେ ଖ୍ରୀ.ଅ. ୩୯୩ ପର୍ଯ୍ୟନ୍ତ ଚାଲିଥିଲା । ମାତ୍ର ଗ୍ରୀସ୍ ତାର ସ୍ୱାଧୀନତା ହରାଇବା ପରେ ରୋମାନ ସମ୍ରାଟ୍ ଥିଓଡୋସିୟାସ ବନ୍ଦ କରିଦେଇଥିଲେ ।

ଆଧୁନିକ ପର୍ଯ୍ୟାୟରେ ଏ ଖେଳ ବିଭିନ୍ନ ଦେଶରେ ପାଳି କ୍ରମେ ଅନୁଷ୍ଠିତ ହେଉଛି । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ରାଜନୈତିକ ସ୍ୱାଧୀନତାର ଅପେକ୍ଷା ନ ରଖି ଖେଳୁଆଡ଼ମାନେ ସାତ ଦିନ ବ୍ୟାପୀ ମହୋତ୍ସବରେ ବିବିଧ ପ୍ରକାର କାର୍ଯ୍ୟକ୍ରମରେ ପ୍ରତିଯୋଗିତା କରି ସ୍ୱର୍ଣ୍ଣ ରୌପ୍ୟ ବା ବ୍ରୋନ୍‌ଜ୍ ପଦକ ଲାଭ କରି ପୃଥିବୀର ଇତିହାସରେ କ୍ରୀଡ଼ାନୈପୁଣ୍ୟର ପରାକାଷ୍ଠା

ଲିପିବଦ୍ଧ କରୁଅଛନ୍ତି । ବିଗତ ଦୁଇଟି ବିଶ୍ୱକ୍ରୀଡ଼ା ମେଲବୋର୍ଣ୍ଣ ଓ ଟୋକିଓରେ ଅନୁଷ୍ଠିତ ହୋଇ ଯାଇଛି ଓ ଆଗାମୀ ପ୍ରତିଯୋଗିତାଟି ୧୯୬୮ରେ ମେକ୍ସିକୋଠାରେ ଅନୁଷ୍ଠିତ ହେବ । ଦୁଇଟି ବିଶ୍ୱଯୁଦ୍ଧ କାଳରେ ଏ ଖେଳ ବନ୍ଦ ଥିଲା ।

ଏଇ ଅଲିମ୍ପିକ ଖେଳ ଜରିଆରେ ମଣିଷ ମଣିଷ ଜାତି ଜାତି ମଧ୍ୟରେ ଯେଉଁ ସଂପ୍ରୀତି, ସଦ୍‌ଭାବ ପ୍ରତିଷ୍ଠିତ ହୁଏ ତାହା ସୁବର୍ଣ୍ଣ ପଦକ ଅପକ୍ଷେ। ସମୋଧିକ ମୂଲ୍ୟବାନ । ପ୍ରକୃତ ଖେଳୁଆଡ଼ କିଏ ଏବଂ ଯଥାର୍ଥ ଖେଳାଳୀଠାରେ କି କି ସୁଗୁଣ ଥିବା ଆବଶ୍ୟକ ତାହାର ପ୍ରକୃତ ନିଦର୍ଶନ ନିମ୍ନ ଉପାଖ୍ୟାନକୁ ସୁସ୍ପଷ୍ଟ ହେବ ।

୧୯୩୬ ସାଲ । ଗ୍ରୀଷ୍ମ ଋତୁ । ବର୍ଲିନ୍‌ରେ ସେ ବର୍ଷ ବିଶ୍ୱ ଅଲିମ୍ପିକ ଖେଳ ହେଉଥାଏ । ଜର୍ମାନୀର ଡକ୍‌ଟେଟର ଏଡ଼ଲଫ୍ ହିଟ୍‌ଲାର ଦୁନିଆ ସପକ୍ଷରେ ପ୍ରମାଣ ଦେବାକୁ ବାହାରିଥାନ୍ତି ଯେ ଜର୍ମାନ ଜାତି ପୃଥିବୀରେ ଶ୍ରେଷ୍ଠ ଜାତି ଏବଂ ତାଙ୍କ ଧମନୀର ରକ୍ତ ଯଥାର୍ଥ ଆର୍ଯ୍ୟ ରକ୍ତ । ଏହି ରକ୍ତ ଗୁଣରେ ଜର୍ମାନମାନେ ସବୁ କ୍ଷେତ୍ରରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବେ । ପିଲାଳିଆ ଜିଦ୍ ଓ ବଦ୍‌ଖିଆଲ ବଜାୟ ରଖିବା ପାଇଁ ବର୍ଲିନ୍ ଅଲିମ୍ପିକ ପ୍ରାଙ୍ଗଣକୁ ସେ ପ୍ରଶସ୍ତ କ୍ଷେତ୍ର ବୋଲି ମଣିଥାନ୍ତି । ସେଥିପାଇଁ ଉଗ୍ର ଜାତୀୟତା ମନୋଭାବ ବିରୋଧରେ ପ୍ରତିକ୍ରିୟା ପ୍ରତି ଶିବିରରେ ମୁଣ୍ଡ ଟେକିଥାଏ ।

କିନ୍ତୁ ହିଟ୍‌ଲାରଙ୍କ ସମସ୍ତ ଔଦ୍ଧତ୍ୟ, ଆସ୍ପର୍ଦ୍ଧା ଓ ଆସ୍ଫାଳନ ଅଚିରେ ନିମୀଳିତ ହେଲା । ଆମେରିକାରରୁ ଯେଉଁ ଖେଳୁଆଡ଼ ଦଳ ଆସିଥିଲେ ସେ ଭିତରେ ସାତଜଣ ନିଗ୍ରୋ ଥିଲେ ବିଚକ୍ଷଣ, କ୍ରିଡ଼ାନୈପୁଣ୍ୟ ଦେଖାଇ ବିପୁଳ ବିଜୟ ହାସଲ କରି ହିଟଲାରଙ୍କ ହାସ୍ୟକର ଯୁକ୍ତିର ଠିକଣା ଜବାବ ଦେଇ ହିଟ୍‌ଲାରଙ୍କ ହୃଦୟରେ ତଦ୍ୱାରା ହୁଏତ ଜୀବନର ଏକ ବିରାଟ ଚମକ ଜମିଯାଇଥିବ । ସେଇ ନିଗ୍ରୋ ଖେଳାଳୀମାନଙ୍କ ଭିତରୁ କେବଳ ଜେସି ଓଏନସ୍ ଏକ, ଏକ ଚାରୋଟି ସୁବର୍ଣ୍ଣ ପଦକ ଲାଭ କରି ଥିଲେ, ଦୁଇଟି ରେକର୍ଡ଼ ସ୍ଥାପନ କଲେ ଏବଂ ରିଲେ ରେସରେ ମଧ୍ୟ ଭାର ଦେଇ ବିଶ୍ୱ ରେକର୍ଡ଼ ସ୍ଥାପନର ସହାୟତା ।

ଏଇ ଜେସି ଓଏନସ ୧୯୫୫ ସାଲରେ ଆସିଥିଲେ ଭାରତୀୟ ଖେଳାଳୀଙ୍କୁ ତାଲିମ କରିବା ପାଇଁ । ସୁମିଷ୍ଟ ବ୍ୟବହାର ଓ ଖେଳୁଆଡ଼ ମନୋବୃତ୍ତି ଦେଖାଇ ସେ ଭାରତରେ ସ୍ୱଳ୍ପକାଳରେ ଲୋକପ୍ରିୟ ହୋଇ ପାରିଥିଲେ ଏବଂ ଆମେରିକାର ଭାରତବାସୀଙ୍କ ପ୍ରତି ସଦିଚ୍ଛାର ଯୁଗପଦ୍ ବାହକ ଓ ପ୍ରତୀକ ହୋଇଥିଲେ । ଜେସି ଓଏନସ ସୁବର୍ଣ୍ଣ ପଦକକୁ ଜୀବନର ଶ୍ରେଷ୍ଠ ପୁରସ୍କାର ନ ମଣି ଏହି ଖେଳ ସହିତ ସଂଶ୍ଳିଷ୍ଟ ଏକ ବିଶିଷ୍ଟ ଘଟଣାକୁ ଅଧିକ ମୂଲ୍ୟବାନ୍ ଭାବୁଥିଲେ ।

ସେ ଅବଶ୍ୟ ହିଟଲାରଙ୍କ ଆସ୍ଫାଳନରେ, ଆଦୌ ବିବ୍ରତ ହୋଇ ନଥାନ୍ତି । ଦିନେ ନୁହେଁ ଅଧେ ନୁହେଁ ଛଅ ଛଅ ବର୍ଷ ଧରି ଏଇ ଅଲିମ୍ପିକ ଖେଳକୁ ଆଖି ଆଗରେ ରଖି ସେ ପ୍ରଗାଢ଼ ସାଧନା, ଅଧ୍ୟବସାୟ ଓ ଅଭିନିବେଶ ଦେଇ ନିଜକୁ ତିଆରି କରିଛନ୍ତି । ଆମେରିକାରୁ ଜାହାଜରେ ଆସୁଥିଲାବେଳେ ସେ ମନେ ମନେ ଭାବୁଥାନ୍ତି ନିଶ୍ଚୟ ସେ ଗୋଟାଏ ଗୋଟାଏ ସ୍ୱର୍ଣ୍ଣ ପଦକ ଉଠେଇବେ । ବିଶେଷତଃ ଲମ୍ବ ଲମ୍ଫନ ଉପରେ ସେ ଦୃଢ଼ ଆଶା ବାନ୍ଧିଥାନ୍ତି ।

ମାତ୍ର ବର୍ଷେ ଆଗରୁ ସେ ୨୬ ଫୁଟ ୮ଇଞ୍ଚ ଡେ଼ଇଁ ବିଶ୍ୱ ରେକର୍ଡ଼ ସୃଷ୍ଟି କରିଥାନ୍ତି । ସବୁ ପ୍ରତିଯୋଗୀ ବି ମନେ ମନେ ଧାରଣା କରିଥାନ୍ତି ଯେ ଅନାୟାସରେ ଏ ଖେଳଟିରେ ସେ ବିଜୟୀ ହେବେ ।

ମାତ୍ର ଅଚିରେ ତାଙ୍କୁ ଏକ ବିସ୍ମୟକର ପରିସ୍ଥିତି ଓ ଘଟଣାର ସମ୍ମୁଖୀନ ହେବାକୁ ପଡ଼ିଲା । ଲମ୍ଫ ଲମ୍ଫନର ପ୍ରାରମ୍ଭିକ ଓ ପ୍ରାଥମିକ ପରୀକ୍ଷା ହେବାକୁ ଯାଇଛି ଦୈବାତ୍ ତାଙ୍କର ଆଖି ପଡ଼ିଲା ଜଣେକ ସୁସ୍ଥ, ସବଳ ଓ ଦୀର୍ଘାକୃତି ଜର୍ମାନ ଯୁବା ଉପରେ । ଅଭ୍ୟାସ କରବାକୁ ଯାଇ ସେ ଚାହୁଁ ଚାହୁଁ ଅକ୍ଲେଶରେ ୨୬ ଫୁଟ ଦୂରତା ଅତିକ୍ରମ କରିଯାଇଥାଏ । ପୁଚ୍ଛି ପଚାରି ଜାଣିଲେ ଯେ ସେ ଯୁବକଟିର ନାମ ଲୁଜ୍ ଲଙ୍ଗ । ହିଟଲରଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶ ଓ ତତ୍ତ୍ୱାବଧାନରେ ତାକୁ ନାନା ଜର୍ମାନୀର ନୀତି ଓ ମତବାଦରେ ଦୀକ୍ଷିତ କରାଯାଇଛି ଏବଂ ସେ ହିଟଲର ଜୁଗେଣ୍ଡ ବା ହିଟଲରଙ୍କ ସାମରିକ ଯୁବ ବାହିନୀର ସଦସ୍ୟ । ଲୁଚେଇ ଛପେଇ ତାକୁ ଖେଳରେ ଅଭ୍ୟସ୍ତ କରାଯାଇଛି ଯିମିତି କି ବେଳକାଳ ଆସିଲେ ନାଜୀ ଜାତୀୟତାବାଦର ବା ବର୍ଣ୍ଣବୈଷମ୍ୟ ନୀତିର ଯଥାର୍ଥ୍ୟ ପ୍ରତିବନ୍ଧକ କରି ବିଶ୍ୱ ଚକ୍ଷୁକୁ ଚମତ୍କୃତ କରିବ ।

ଜେସି ଓଏନସ୍ ମନେ ମନେ ଭାବୁଥାନ୍ତି ତେବେ ଟୋକାଟା ଜଣେ ତେବେ ହିଟଲରଙ୍କ ଆଭିଜାତ୍ୟବାଦର ଅବଶ୍ୟ ବିଜୟ ହେବ । ସେ ନିଜେ ନିଗ୍ରୋ । ହିଟଲରଙ୍କ ବିଚିତ୍ର ଅଦ୍ଭୁତ ବିଚାରରେ ତାଙ୍କ ରକ୍ତ ତାତି ଯାଉଥାଏ । ସେ ଦୃଢ଼ସଂକଳ୍ପ କଲେ ଯେ ହିଟଲର ଓ ତାଙ୍କ ପ୍ରଭୁଜାତିବାଦୀ ଜର୍ମାନଜାତିକୁ ଦେଖାଇଦେବେ କେତେ ଅହେତୁକୀ ନିରର୍ଥକ ସେମାନଙ୍କ ନୀତି, ବିଶ୍ୱାସ ଓ ବଡ଼ିମା ।

କ୍ରୀଡ଼ାଶିକ୍ଷକ ମାତ୍ରେ କହିବେ ଯେ କ୍ରୁଦ୍ଧ ଖେଳୁଆଡ଼ ଅବଶ୍ୟ ଭ୍ରମପ୍ରମାଦ କରି ବସିବ । ଜେସି ଓଏନସ ବା ଏ ସତ୍ୟରୁ ବାଦ୍ ଯାଆନ୍ତେ କିପରି ? ଶେଷ ଖେଳ ପାଇଁ ଯୋଗ୍ୟ ବିବେଚିତ ହେବାକୁ ହେଲେ ଯେଉଁ ତିନିଥର ଲମ୍ଫର ସୁବିଧା ଦିଆଯାଏ ତହିଁର ପ୍ରଥମଟିରେ ନିର୍ଦ୍ଦିଷ୍ଟ ରେଖାର ବହୁ ଇଞ୍ଚ ବାହାର ପଟୁ ଡେଇଁବା ଅପରାଧରେ ତାହା ଅଗ୍ରାହ୍ୟ ହେଲା । ଦ୍ୱିତୀୟ ପ୍ରଥମ ଥରଠୁଁ ଆହୁରି ବେଶୀ ପ୍ରମାଦ ହେଲା । ଓଏନସ୍ ମନେମନେ ଭାବିଲେ, "ତିନିହଜାର ମାଇଲ ବାଟ ଆସିଛି କ'ଣ ପ୍ରାରମ୍ଭିକ ପରୀକ୍ଷାରେ ଶିଶୁପାଳ ହୋଇ ବାହୁଡ଼ିଯିବାକୁ ?"

ଡେ଼ଇଁବା ସ୍ଥାନରୁ କେତେ ପାହୁଣ୍ଡ ପଛକୁ ଘୁଞ୍ଚିଯାଇ ସେ ଭୂଇଁରେ ଥରେ ଦିଥର ନାଚ ମାରୁଥାନ୍ତି ହଠାତ୍ ପଛପଟୁ ତାଙ୍କ କାନ୍ଧରେ କିଏ ହାତ ପକାଇବାର ସେ ଅନୁଭବ କଲେ । ବୁଲିପଡ଼ି ସେ ଦେଖନ୍ତି ତାଙ୍କ ପଛରେ ଛିଡା ହୋଇଛି ସେଇ ନୀଳଚକ୍ଷୁ ଦୀର୍ଘାକୃତି ଜର୍ମାନ ଲମ୍ଫ ଲମ୍ଫନକାରୀ ପ୍ରଥମ ଲମ୍ଫରେ ସେ ଚୂଡାନ୍ତ ଖେଳପାଇଁ ଯୋଗ୍ୟ ବୋଲି ବିବେଚିତ ହୋଇ ସାରିଥାଏ । ସେ ସଜୋରେ ତାଙ୍କ କରମର୍ଦ୍ଦନ କରି କହିଲା, 'ଆପଣ ଜେସି ଓଏନସ୍ ? ଏଥି ପୂର୍ବେ ଆମ ଦୁହିଁଙ୍କ କେବେ ଦେଖା ହୋଇନି ବୋଧହୁଏ ?' ଜର୍ମାନ ଉଚ୍ଚାରଣରେ ସେ ଇଂରାଜୀ କହୁଥାଏ ।

''ଆପଣଙ୍କୁ ଭେଟିବାର ସୁଯୋଗ ପାଇ ସୁଖୀ ହେଲି '' ଓଏନସ୍ କହିଲେ, ମନର ଦୌବର୍ଲ୍ୟ ଢ଼ାଙ୍କାଇବାକୁ ଯାଇ ପଚାରିଲି ''କମିତି ଅଛନ୍ତି ?''

''ବେଶ୍ ଭଲ ଅଛି । ଆପଣଙ୍କୁ ମୋର ଓଲଟି ସେଇ ପ୍ରଶ୍ନ ଆପଣ କିମିତି ଅଛନ୍ତି ?''

''କ'ଣ କହିବାକୁ ଚାହାନ୍ତି ?''

''ମୁଁ କହିବାକୁ ଚାହେଁ ଯେ ଆପଣଙ୍କ ଛାତିକୁ କ'ଣ ଗୋଟାଏ ଭିତରେ ଭିତରେ କୋରିକତୁରି ପକାଇଲା ପରି ମୋତେ ଜଣାଯାଇଛି । ନ ହେଲେ କ'ଣ ଆଖି ବୁଜି ଯେଉଁ ଦୂରତା ଆପଣ ଅତିକ୍ରମ କରିଯାଇଥାନ୍ତେ ସେଥିରେ ଦୁଇଥର ଅକୃତକାର୍ଯ୍ୟ ହୁଅନ୍ତେ ?''

''ତାହା ମୁଁ ଜାଣେ, ବିଶ୍ୱାସ କରନ୍ତୁ ଆପଣ କହିବା ଦରକାର ନାହିଁ ।'' ଏତିକି କହିପାରି ଓଏନସ୍ ଖୁସୀ ହେଲେ ।

ତାପରେ ଦଣ୍ଡେଯାକେ ଦି'ଜଣଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଲା । କ'ଣ ତାଙ୍କୁ ଭିତରେ ଭିତରେ ଖାଇ ଯାଇଛି ଜେସି ଓଏନସ୍ ଲୁଜ୍ ଲଙ୍ଗକୁ କହିଲେ ନାହିଁ । ତଥାପି ଲୁଜ୍ ଲଙ୍ଗ୍‌କୁ ତାହା ଜାଣିବାକୁ ବାକୀ ରହିଲା ନାହିଁ । ଓଏନ୍‌ସଙ୍କ ମନରେ ନୈତିକ ତାଙ୍କ ଠାରୁ ସେ ଅନ୍ତତଃ ଫୁଟେ ଉଚ୍ଚ, କୃଶକାୟ ଅଥଚ ବଳିଷ୍ଠ ରୂପ, ନିର୍ମଳନୀଳ ଚକ୍ଷୁ କେଶରାଜି ଏବଂ ଆକର୍ଷଣୀୟ ମୁଖମଣ୍ଡଳ

ସାହସ ଓ ମାନସିକ ବଳ ଓ ଧୈର୍ଯ୍ୟ ଆଣି ଦେବା ପାଇଁ ସେ ନାନା ଚେଷ୍ଟା ଚରିତ୍ର କଲେ । ନାଜୀ ଯୁବସଂଘର ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହେଲେ ମଧ୍ୟ ନାଜୀ ଜାତିର ଶ୍ରେଷ୍ଠତ୍ୱ ବିଷୟରେ ସେ ମଧ୍ୟ ଓଏନସ୍‌ଙ୍କ ପରି ବିଶ୍ୱାସ କରୁ ନଥିଲେ ଯଦିଓ ଲୁଜ୍ ଲଙ୍ଗଙ୍କ ଚେହେରା ଦେଖିଲେ ଯେ କେହି ଜର୍ମାନ ଜାତିର ଉତ୍କର୍ଷର ପରିଚୟ ପାଇ ପାରିବ । ଏଇ କଥା ଉପରେ ଦୁଇ ଜଣଙ୍କ ମଧ୍ୟରେ ଥଟ୍ଟାତାମସା ଚାଲିଲା ଓ ଦୁହେଁ ଏହି ହାସ୍ୟାସ୍ପଦ ନୀତି ଉପରେ ବହେ ହସିଲେ ।

ଲୁଜ୍ ଲଙ୍ଗ୍ ଯେତେବେଳେ ବୁଝି ପାରିଲେ ଯେ ଓଏନସ୍ ଟିକିଏ ଥଣ୍ଡା ପଡ଼ିଗଲେ ସେତିକିବେଳେ ସେ ଡେଇଁବା ଜାଗାର ପଟା ଖଣ୍ଡିକୁ ତାଙ୍କୁ ଦେଖାଇ କହିଲେ, ''ଦେଖନ୍ତୁ ! ଆପଣ ଯେବେ ପଟାର କେତେ ଇଞ୍ଚ ପଛକୁ ଦାଗଟିଏ ଟାଣି ସେଇଠୁଁ ଡିଆଁ ମାରନ୍ତେ ତେବେ ତ ଆଉ ଭୁଲ ହେବାର ସମ୍ଭାବନା ନଥାନ୍ତା । ଶେଷ ଖେଳପାଇଁ ଯୋଗ୍ୟ ବିବେଚିତ ହେବା ପାଇଁ ଯେତିକି ଦୂରତା ଅତିକ୍ରମ କରିବା ଦରକାର ତାହା ଓ ଆପଣ ଅକ୍ଳେଶରେ ଡେଇଁ ଯାଇ ପାରନ୍ତେ । ଆଜିର ଏ ପ୍ରାଥମିକ ପ୍ରତିଯୋଗିତାରେ ଆପଣ ପ୍ରଥମ ହେଲେ ନ ହେଲେ ଯାଏ ଆସେ ବା କଣ ? କାଲି ସିନା ଅସଲ ଦିନ ।''

କଥାଟିର ସତ୍ୟତା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ଓଏନସ୍‌ଙ୍କ ମନରୁ ସବୁ ଉତ୍ତେଜନା ଅନ୍ତର୍ହିତ ହୋଇଗଲା । ଆତ୍ମପ୍ରତ୍ୟୟ ରଖି ସେ ପଟଖଣ୍ଡିକରୁ ଫୁଟେ ପଛକୁ ଗାରଟାଏ ଟାଣି ସେଇଠୁ ଡେଇଁଲେ ଏବଂ ଅନାୟାସରେ ଯୋଗ୍ୟତା ହାସଲ କରିବା ପାଇଁ କେତେଦୂରତା ଡେଇଁବା ଦରକାର ତାଠୁଁ ଅଧିକ ଫୁଟଟିଏ ଡେଇଁଗଲେ ।

ଓଏନସ୍ ସେଦିନ ସନ୍ଧ୍ୟାରେ ଲୁଜ୍ ଲଙ୍ଗଙ୍କୁ ରହଣି ସ୍ଥାନକୁ ଗଲେ ତାଙ୍କୁ ଧନ୍ୟବାଦ ଓ କୃତଜ୍ଞତା ଜଣାଇବା ପାଇଁ । ଲୁଜ୍ ଲଙ୍ଗଙ୍କ ଅଯାଚିତ ସାହାଯ୍ୟ ସହାନୁଭୂତି ବ୍ୟତିରେକେ ସେ ଯେ ପରଦିନର ଫାଇନେଲ୍ ଖେଳରେ ଭାଗନେଇ ପାରି ନ ଥାନ୍ତେ ତାହା ତାଙ୍କର ବେଶ୍ ହୃଦବୋଧ ହୋଇଥାଏ ।

ଦୁହେଁ ଏକତ୍ର ଦୁଇ ଘଣ୍ଟା ଯାବତ୍ ଗପସପ ହେଲେ । ଖେଳ, ନିଜ ନିଜ କଥା, ଦୁନିଆଁ ହାଲଚାଲ - ଏମିତି କେତେ କଥା । ଯେତେବେଳେ ଓଏନସ୍ ବିଦାୟ ନେବାକୁ ବାହାରନ୍ତି ସେତେବେଳକୁ ଉଭୟେ ବୁଝି ସାରିଲେଣି ଯେ ଦିହିଙ୍କ ଭିତରେ ପ୍ରକୃତ ସୌହାର୍ଦ୍ଦ ସଂପ୍ରୀତି ଓ ବନ୍ଧୁତା ଜନ୍ମିଯାଇଛି । ପରଦିନ ଲୁଜ୍ ଲଙ୍ଗ କ୍ରୀଡ଼ା ପ୍ରାଙ୍ଗଣକୁ ଯିବେ ଏବଂ ସେଇଠି ସାଧ୍ୟମତେ ଯେବେ ପାରନ୍ତି ତେବେ ଜେସି ଓଏନସ୍‌ଙ୍କୁ ପରାଜିତ କରିବାର ଚେଷ୍ଟା କରିବେ । କିନ୍ତୁ ଲୁଜ୍ ଲଙ୍ଗ ଯେ ଅନ୍ତରର ସହିତ ଚାହୁଁଥିଲେ ଯିମିତି ଓଏନସ୍ ସମର୍ଥ ଶକ୍ତି ସାମର୍ଥ୍ୟ ନିୟୋଜିତ କରି ତାଙ୍କର ଚରମ ଉତ୍କର୍ଷ ଦେଖାନ୍ତୁ ଏବଂ ତାଙ୍କୁ ପରାଭୂତ ମଧ କରନ୍ତୁ ସେ ବିଷୟରେ ଓଏନସ୍‌ଙ୍କ ସନ୍ଦେହ ନ ଥିଲା ।

ପରଦିନର ଶେଷ ଖେଳରେ ଦେଖାଗଲା ଯେ ଲୁଜ୍ ଲଙ୍ଗ କୃତିତ୍ୱ ଦେଖାଇ ତାଙ୍କର ନିଜର ପୂର୍ବରେ ଭଙ୍ଗ କରିଛନ୍ତି । ତାହା ଦେଖି ଓଏନସ୍ ଜୀବନର ଶ୍ରେଷ୍ଠ ନୈପୁଣ୍ୟ ପ୍ରଦର୍ଶନ କରିବାପାଇଁ ଉଦ୍‌ବୁଦ୍ଧ ହେଲେ । ଶେଷଥର ଲମ୍ଫରେ ବିଶ୍ୱ ରେକର୍ଡ଼ ସ୍ଥାପନକାରୀ ଦୂରତା ଛବିଶ ଫୁଟ ୫ ଇଞ୍ଚ ଡେଇ ଓଏନସ୍ ଯିମିତି ଭୂଇଁରେ ପାଦ ପକାଇଛନ୍ତି ସେଇ ମୁହୂର୍ତ୍ତରେ ସେ ଅନୁଭବ କଲେ ବନ୍ଧୁ ଲୁଜ୍ ଲଙ୍ଗ ତାଙ୍କ ପାଖରେ ପହଞ୍ଚି ପିଠିରେ ଥାପୁଡ଼ାଇ ତାଙ୍କୁ ଆନ୍ତରିକ ସମ୍ବର୍ଦ୍ଧନା ଜ୍ଞାପନ କରିବାରେ ଲାଗିଛନ୍ତି । ଶହେ ଗଜ ଦୂରରେ ଥାଇ ବାଘ ଭଳି ଆଖି ତରାଟି ଭ୍ରୂକୁଞ୍ଚନ କରି କାର୍ଯ୍ୟକଳାପ ନାପସନ୍ଦ କରୁଥିଲେ ମଧ ଲୁଜ୍ ଲଙ୍ଗ ସହୃଦୟତାରେ ସଜୋରେ ଓଏନସଙ୍କ କରମର୍ଦ୍ଦନ କରିବାରେ ଲାଗିଥାନ୍ତି । ଏ କରମର୍ଦ୍ଦନ ମାମୁଲି କରମର୍ଦ୍ଦନ ନୁହେଁ ଯାହା ସାଧାରଣତଃ ଦେଖାଯାଇଥାଏ ମୁହଁରେ ହସ ଛାତିରେ କାନ୍ଦ ଥିବା ପରାଜିତ ଖେଳୁଆଡ଼ ପାଖରେ ।

ଏଇ ପରମ ମୁହୂର୍ତ୍ତରେ ଗୌରବ ପ୍ରକାଶ କରିବାକୁ ଯାଇ ଓଏନସ ଆନନ୍ଦ ବିହ୍ୱଳ ହୋଇଛନ୍ତି " ଜୀବନରେ ଯେତେଯେତେ ସ୍ୱର୍ଣ୍ଣ ପଦକ ମୁଁ ଜିତିଛି ଯେ ସମସ୍ତକୁ ତରଳାଇ ଦେଲେ ବି ଏ ମୁହୂର୍ତ୍ତରେ ମୁଁ ଯେଉଁ ଚବିଶ କେରେଟ ଖାଣ୍ଟି ବନ୍ଧୁତାର ସ୍ପର୍ଶ ଅନୁଭବ କରୁଛି ତହିଁର ଆବରଣ ପାଇଁ ଯଥେଷ୍ଟ ହେବ ନାହିଁ ।"

ଏହାହିଁ ଅଲିମ୍ପିକର ଶ୍ରେଷ୍ଠ ପୁରସ୍କାର । ଏଇ ପରମ ମୁହୂର୍ତ୍ତ ମଧ୍ୟରେ ସେ ହୁଏ ତ କୋର୍ଟେବିନଙ୍କ ସେଇ ପରମ ମନ୍ତ୍ରର ସାର୍ଥକତା ଅନୁଭବ କରିଥିବେ ଯାହା ହେଲା "ଖେଳରେ ହାରିବା ଜିତିବା ବଡ଼ କଥା ନୁହେଁ, ଖେଳରେ ଭାଗ ନେଇ କିମିତି ଖେଳିଲ ସେଇ ହେଲା ଅସଲ ଖାଣ୍ଟି କଥା । ଜୀବନରେ ହାରଜିତ୍ ଅପେକ୍ଷା ଯୁଦ୍ଧରେ ଭଲ ଭାବରେ ଯୁଝିପାରିବାହିଁ ଅଧିକ ଗୌରବବାହ କଥା ।"



# ମୋ କଲେଜ

ସହରକୁ ବେଶି ପାଖ କି ବେଶୀ ଦୂର ହୋଇ ନଥିବ ; ଡଜନେ ବା ଦି ଡଜନ ଆମ୍ବ ବା ବଉଳ ବା ଦେବଦାରୁ ଗଛ ଥିବ, ବଡ଼ ବଡ଼ ଘାସପଡ଼ିଆ ସହିତ ଛାଇକାକରିଆ ଜମିରୁ ପଚିଶ ପଚାଶ ଏକର ଜମି ଯେବେ କେହି ମୋତେ ଦେଇଦିଅନ୍ତା ତେବେ ତା' ଉପରେ ଇମିତି କଲେଜଟାଏ ଠିଆ କରି ଦିଅନ୍ତି ଯେ ଦେଶର ଯେତେ ଯେତେ ସରକାରୀ, ବେସରକାରୀ ବା ଇଉନିଭର୍ସିଟି କଲେଜ ଅଛି ସବୁ ତା' ପଛକୁ ପଡ଼ିଯାଆନ୍ତା । ମୁଁ କହୁ ନାହିଁ ଯେ ମୋ କଲେଜଟି ସେମାନଙ୍କଠାରୁ ଭଲ ହୁଅନ୍ତା ତେବେ ଫରକ୍ ଯେ ନିଶ୍ଚୟ ହୁଅନ୍ତା ସେଥିରେ ସନ୍ଦେହ ନାହିଁ ।

କେତୁଟା ଘର ଅବଶ୍ୟ ଲୋଡ଼ା – ବେଶୀ ଘର ଆଦୌ ଲୋଡ଼ା ନାହିଁ – ପଥରରେ ତିଆରି ହେଲେ ବି ଚଳିବ । ଯଦି ସୁବିଧା ଥାଏ, ତେବେ ଘର ଉପରେ ଘଣ୍ଟାପାଇଁ ଛୋଟ କୋଠରୀଟିଏ ଆଉ ତା' ଭିତରେ ଗୋଟାଏ ଘଡ଼ି । ଘଡ଼ିଟା ଚାଲିବା ମଧ୍ୟ ଦରକାର ନାହିଁ, ନଚାଲିଲେ ଭଲ । କେତେଖଣ୍ଡ ବହି – ମାତ୍ର କେତେ ହଜାର ହେଲେ ଚଳିବ – ଏବଂ କିଛି ଯନ୍ତ୍ରପାତି ଓ ଉପକରଣ – ଏତିକି ହେଲେ କାମ ଶେଷ । ବଡ଼ଧରଣର ବୈଜ୍ଞାନିକ ଗବେଷଣାପାଇଁ ଯେ କେତେ କମ୍ ଉପକରଣ ଲୋଡ଼ା ସେ କଥା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଯେତେ ବଡ଼ ସେତେ କମ୍ ଯନ୍ତ୍ରପାତି ।

ମୋର ପ୍ରଥମ କାମ ହୁଅନ୍ତା ଦଳେ ପ୍ରଫେସର ଖୋଜି ବାହାର କରିବା । ଧରନ୍ତୁ ଦଶ ବାରଜଣ । ହେଲେ ସେମାନେ କ'ଣ ଏମିତି ସିମିତି ପ୍ରଫେସର ? ଅସଲ ଖାଣ୍ଟି ଲୋକ । ଲାଭ୍ର ଆଶା ରଖି ସେମାନେ ବିଦ୍ୟା ଅନ୍ୱେଷଣ କରୁ ନଥିବେ; ଏପରି କି ଜାଣୁ ନ ଥିବେ ଯେ ବିନା ଲାଭରେ ସେମାନେ ଖଟୁଛନ୍ତି ବୋଲି । ମୋ ଅଧ୍ୟାପକମାନଙ୍କୁ ଆପଣ ''ଅଫିସ୍'' ''କମିଟି'' ବା ''କନ୍ ଫାରେନ୍ସ''ରେ ପାଇବେ ନାହିଁ, ଏ କଥା ମନେ ରଖିବେ । କାରଣ ମୋ କଲେଜରେ 'ଅଫିସ୍' ନାହିଁ କି 'କମିଟି' ନାହିଁ । 'କନ ଫାରେନ୍ ସ' ପାଇଁ ବା ସେମାନଙ୍କ ବେଳ କାହିଁ ? ସେମାନଙ୍କ କାମ ଯେ ଅନନ୍ତକାଳ ଧରି ଚାଲିଥିବ ।

ବକ୍ତୃତା ବେଳ ଛାଡ଼ି ଅନ୍ୟ ସମୟରେ ସେମାନଙ୍କୁ କୌଣସି ଗୋଟାଏ ଠିକଣା ଜାଗାରେ ପାଇବେ ନାହିଁ । ଯେ ପାଠୁଆ ତା' ପାଇଁ ପୁଣି 'ଅଫିସ କ'ଣ ? 'କମିଟି' ନାମ ଶୁଣିଲେ ପାଠ

ଖଣ୍ଡେଦୂର ପଳାଇଯାଏ । ମୋ ପ୍ରଫେସରଙ୍କ କାମର ଯାଞ୍ଚ ବ୍ୟବସ୍ଥା ନାହିଁ । ତାଙ୍କ ନିଯୁକ୍ତି ବା ଅନ୍ତପୋଇଁ ସ୍ୱତନ୍ତ୍ର ବିଭାଗ ନାହିଁ । ଫଳାଫଳ ଉପରେ ସେମାନଙ୍କ ଯୋଗ୍ୟତା ବା ପଦୋନ୍ନତିର ବିଚାର କରାଯାଏ ନାହିଁ । କେତେ ଘଣ୍ଟା ସେମାନେ କାମ କରିବେ ତା'ର ମଧ୍ୟ ସଠିକ୍ ନିୟମ ନାହିଁ ।

ବାହାରକୁ ପୋଲାଫାଙ୍କିଆ ଜଣା ଯାଉଥିଲେ ବି ଯେବେ ଠିକ୍ ମନମୁତାବକ ଲୋକ ହୋଇଥିବେ ତେବେ ସେମାନେ ତାଙ୍କର ଯଥାର୍ଥ ଯୋଗ୍ୟତା ଦେଖାଇବେ ସେଥିରେ ସନ୍ଦେହ ନାହିଁ । ଯେତେବେଳେ ସେମାନେ କ୍ଲାସରେ ବକ୍ତୃତା ଦେଉଥିବେ ସେତେବେଳେ ପ୍ରତ୍ୟେକ ଜଣେ ଜଣେ ଯାଦୁକର ବନିଯାଉଥିବେ ଏବଂ ଅଜ୍ଞାତସାରରେ ନିଜ କାମରେ ଏମିତି ମାତି ମଜ୍ଜି ଯାଇଥିବେ ଯେ ବକ୍ତୃତା ଶୁଣୁଥିବା ପିଲାମାନେ ସେଥିରେ ଅନୁପ୍ରାଣିତ ହୋଇ ବକ୍ତୃତା ଶେଷରେ ସିଧା ଏକମୁହାଁ ହୋଇ ଦଉଡ଼ିବେ ଲାଇବ୍ରେରୀକୁ । ସେତେବେଳେ ତାଙ୍କ ମୁହଁରେ ପ୍ରଫେସରଙ୍କ ଜ୍ଞାନର ଉଷ୍ମ ଓ ଜ୍ୟୋତି ଫୁଟି ଉଠୁଥିବ ।

ପ୍ରଫେସରମାନଙ୍କ କାମ ଟିକିଏ ବିଚିତ୍ର ଧରଣର । ଯେଉଁମାନେ ଯଥାର୍ଥ ପ୍ରଫେସର ସେମାନେ କ'ଣ କେବେ ତାଙ୍କ କାମ ସାରି ପାରନ୍ତି ? ଦୁନିଆଁକୁ ସେମାନେ ଯାହା ଦିଅନ୍ତି ତାହା ଖଣ୍ଡିଆଦଣ୍ଡିଆ, ଖାପଛଡ଼ା, ଟୁକୁରାଟୁକୁରା । ଅନେକ କାମ ବାକୀ ପଡ଼ିଯାଏ । ସେମାନଙ୍କ କାମକୁ ଅଲଗା ଅଲଗା ଥାକ ଥାକି କରି ମପାଯାଏ ନାହିଁ, ସବୁ ଏକାଠି ଯୋଡ଼ି ମିଶାଇ କଳନା କରାଯାଏ । ପ୍ରତି ଅଧ୍ୟାପକଙ୍କ 'ସାରାଜୀବନ କାମ' ଅଛି । କେହି ବା ଶେଷ କରନ୍ତି; ଆଉ କେହି – ଅଧିକାଂଶ –ଶେଷ କରିବା ପୂର୍ବରୁ ନିଜେ ଶେଷ ହୋଇଯା'ନ୍ତି ।

କଥା ପଡ଼ିଲା ବୋଲି ଜଣେ ଅଧ୍ୟାପକଙ୍କ ଗବେଷଣା କଥା ଏଇଠି କହୁଛି । ସେ ଚାଣକ୍ୟ ଉପରେ ରିସର୍ଚ୍ଚ କରୁଥାନ୍ତି । ଯେବେ ମୁଁ ତାଙ୍କୁ ପ୍ରଥମ ଭେଟିଲି ସେତେବେଳକୁ ସେ ପନ୍ଦରବର୍ଷ କାମ ସାରିଲେଣି । ଗୋଟାଏ ବଡ଼ କୋଠରୀରେ ଫୁଟେ ଉଚ୍ଚ ବହିପଟା ; ପୋଥିପତ୍ର ଥୋଇ କାମରେ ଲାଗିଥାନ୍ତି । ମାମୁଲି ପ୍ରଶ୍ନଟାଏ କଲି, "ଚାଣକ୍ୟଙ୍କ ସମ୍ବନ୍ଧରେ ଆପଣଙ୍କ ମୋଟାମୋଟି ଧାରଣା କ'ଣ ?" ସେ ମୁଣ୍ଡ ହଲାଇ କହିଲେ, "ଏତେ ଶୀଘ୍ର କ'ଣ କିଛି କୁହାଯାଇପାରେ ?" ପରେ ଆଉ ଦଶବର୍ଷ ପରିଶ୍ରମ କରି "ଚାଣକ୍ୟ" ବୋଲି ବହିଟାଏ ଛାପିଲେ । ପୂର୍ବ ଗୋଲାର୍ଦ୍ଧରେ ପ୍ରକାଶିତ ଗୋଟାଏ ସମାଲୋଚନା ପତ୍ରିକା (ଆପଣ ବା ମୁଁ ସେ ପତ୍ରିକାର ନାମ ଜାଣୁନା) ଯାହାର ମାତ୍ର ତିନିଶହ ଖଣ୍ଡି ପ୍ରତିବର୍ଷ ବିକ୍ରି ହୁଏ ମନ୍ତବ୍ୟ କଲା ଯେ ବହିଟି ପାକଳ ମସ୍ତିଷ୍କର କାମ ନୁହେଁ । ଅଧ୍ୟାପକ ତାହା ପଢ଼ି ବ୍ୟଥିତ ହେଲେ ସତ ; କିନ୍ତୁ ମନେ ମନେ ଭାବିଲେ, "ସତକଥା ; ତରବର ହୋଇ ଛାପିଦେବା ଉଚିତ୍ ହୋଇ ନାହିଁ ।"

ଆଉ ଜଣେ ଅଧ୍ୟାପକ ସିମିତି ଗବେଷଣା କରୁଥାନ୍ତି ଆମଦାନୀ ଶୁଳ୍କ ଉପରେ । ସେ ଯେବେ କାମ ଆରମ୍ଭ କଲେ ସେତେବେଳେ ଶୁଳ୍କ–ରାଜ୍ୟରେ କୌଣସି ବିଭ୍ରାଟ ବା ଗଣ୍ଡଗୋଳ ବା ଅଶାନ୍ତି ନ ଥିଲା । କାରଣ ଜନସାଧାରଣଙ୍କ ଆଖି ତିନି ଚାରି ବର୍ଷ ଧରି ଅନ୍ୟତ୍ର ଥିଲା । ପ୍ରାଣାନ୍ତକ ପରିଶ୍ରମ କରି ଆମଦାନୀ ଶୁଳ୍କର ଇତିହାସ ପୂର୍ଣ୍ଣାଙ୍ଗ ଓ ସମକାଳୀନ

କରିବାକୁ ଯାଉଥାନ୍ତି ଏତିକିବେଳେ ଶୁଳ୍କନୀତିର ପରିବର୍ତ୍ତନ ଦେଖାଦେଲା । ପରିବର୍ତ୍ତନ ଏତେ ଦ୍ରୁତ ହେଲା ଯେ ଦୁଇବର୍ଷ ଭିତରେ ସେ ତିନିବର୍ଷ ପଛକୁ ପଡ଼ିଗଲେ । ଏବେ ସେ ପାଞ୍ଚବର୍ଷ ପଛକୁ ପଡ଼ିଗଲେଣି । ସେ ଯେତେ ଆଗଉଛନ୍ତି ଶୁଳ୍କ ନୀତି ତାଠୁ ବେଶୀ ଜୋର୍ ଆଗେଇ ଚାଲିଛି । ବର୍ତ୍ତମାନ ତାଙ୍କର ଏକମାତ୍ର ଆଶା ଯେ ଆମଦାନୀ ଶୁଳ୍କ କ୍ରମେ ପଛକୁ ପଛକୁ ଆସି ଅବାଧ ବାଣିଜ୍ୟ ଅବସ୍ଥାକୁ ଆସି ତାଙ୍କଠାରେ ଧରା ଦେବ ।

ଏ ଦୁଇ ଉପାଖ୍ୟାନରୁ କ'ଣ ଆପଣ ଭାବୁଛନ୍ତି ମୋ ଅଧ୍ୟାପକଦଳ ଗୋଟାଏ ଗୋଟାଏ 'ଢୀବ' ଆଡ଼୍‌ବାୟା ? ନା ନା, ସେ କଥା ମୋଟେ ଠିକ୍ ନୁହେଁ । ଚେହେରା ଭାବଭଙ୍ଗୀ ଦେଖି ଆପଣ ସେମାନଙ୍କୁ ସ୍ୱପ୍ନରାଜ୍ୟର ଲୋକ ବୋଲି ଭାବିପାରନ୍ତି; ସେମାନେ ହୁଏତ ଲୁଗାପଟା ସଫାସୁତୁରା ପ୍ରତି ନଜର ଦିଅନ୍ତି ନାହିଁ; କିନ୍ତୁ ଯେଉଁ ବିଷୟ ସେମାନେ ପଢ଼ାନ୍ତି ସେଥିରେ ସେମାନେ ଜଣେ ଜଣେ ରଥୀ, ଧୁରନ୍ଧର ଏଥିରେ କାହାରି ଯେମିତି ସନ୍ଦେହ ନ ଥାଏ । ତାଙ୍କପରି ପ୍ରଫେସର ପାଇବା ହୁଏତ କଲେଜପକ୍ଷରେ କାଠିକର କାମ; କିନ୍ତୁ ଫୁସୁଲାଫୁସୁଲି କରି, ଟଙ୍କା ଯାଚି, ନ ହେଲେ ହରଣଚାଳ କରି ସେମାନଙ୍କୁ ଆଣିବାକୁ ପଡ଼ିବ । ସେମାନଙ୍କୁ ବାଦ୍ ଦେଲେ କ'ଣ କଲେଜର ଆଉ କିଛିର ମୂଲ୍ୟ ଅଛି ? କଲେଜଟିଏ ଗଢ଼ିଉଠେ ଏଇ ମଣିଷଙ୍କୁ ନେଇ; ବଡ଼ ବଡ଼ ଘର ବା ଆସବାବ୍‌ପତ୍ର ବା ଛାତ୍ରସଂଖ୍ୟା ବା ଫୁଟବଲ୍ ଖେଳର ରେକର୍ଡ଼ ନେଇ କଲେଜ ହୁଏ ନାହିଁ । ଏତିକି ମଞ୍ଜି କଥା କେହି ଟ୍ରଷ୍ଟି ବୁଝନ୍ତି ନାହିଁ; କେତେବେଳେ କିମିତି ବୁଝିଲେ ବି ଭୁଲିଯା'ନ୍ତି । ଏମିତି ଲୋକ ପାଇଲେ ଆପଣ ଦେଖିବେ କିମିତି ଗୋଟାଏ ପୁରୁଷ ଭିତରେ ମୋ କଲେଜରୁ ହିଉମେନିଟିସ୍ (ସାହିତ୍ୟ, ଦର୍ଶନ, ଇତିହାସ)ର ସବୁଠାରୁ ବଡ଼ ବଡ଼ ଶାସ୍ତ୍ର ବାହାରି ପଡ଼ିବ ।

ପ୍ରଫେସରମାନେ ପିଲାଙ୍କୁ ଡାକନ୍ତି; ପିଲେ ଆସିଲେ ଦାନ ଆପେ ଆପେ ଆସିଯାଏ । କୁଟାରୁ କୁଟାକୁ ନିଆଁ ଗଲାପରି ଆପେ ଆପେ କଲେଜ ଚାଲେ । ସେଇଥିପାଇଁ କହୁଛି ମଣିଷପରି ମଣିଷ ଲୋଡ଼ା । କଲେଜ ପିଲା ଲୋଡ଼େ ନାହିଁ – ପିଲେ କଲେଜ ଲୋଡ଼ନ୍ତି, ଏ କଥା କ'ଣ କାହାକୁ ବୁଝାଇବାକୁ ପଡ଼ିବ ?

କୋଡ଼ିଏ ବର୍ଷ ପରେ ଦେଖିବେ ସ୍ୱତନ୍ତ୍ର ହୋଇ ମୋ କଲେଜ ଏକା ଏକା ଛିଡ଼ା ହୋଇଛି । ଅନେକ ଛୋଟ ଛୋଟ କଲେଜ ଅଛି ମାତ୍ର ସେମାନେ ବଡ଼ର ନକଲ କରନ୍ତି । ଅନେକ ନୀରବ ନିସ୍ତବ୍‌ଧ କଲେଜ ଅଛି ମାତ୍ର ସେମାନେ ହଟଗୋଳ ଚାହାନ୍ତି । ବଡ଼ତି ଦେଖାଇବାପାଇଁ ଅନେକ କଲେଜର ହୁଏତ କିଛି ନାହିଁ; କିନ୍ତୁ ଛୋଟକୁ ବଡ଼କରି ଦେଖାଇବା ଚେଷ୍ଟା ତାଙ୍କର ସବୁବେଳେ ରହିଛି । ସେଥିପାଇଁ ମୋ କଲେଜ ସେମାନଙ୍କଠାରୁ ପୃଥକ୍ ହେବ, କାରଣ ସେଠି ସେ ସବୁ କଥା ପାଇଁ ରାସ୍ତା ଖୋଲା ଥିଲେ ବି କେହି ତାହା ପସନ୍ଦ କରନ୍ତି ନାହିଁ । ପନ୍ଦର କୋଡ଼ିଏ ବର୍ଷ ପରେ ଅନେକ ବଡ଼ ବଡ଼ ଲୋକେ ମଟର ନେଇ ମୋ କଲେଜକୁ ଆସିବେ; କିନ୍ତୁ ତାଙ୍କୁ ଭିତରକୁ ଯିବାକୁ ଦିଆଯିବ ନାହିଁ ।

ମୋ କଲେଜର ଭିତରେ କି ବାହାରେ ଟଙ୍କା ପଇସା କାରବାର ବା ଚିନ୍ତା ନ ଥିବ । ଟଙ୍କା ମଣିଷ ଜୀବନକୁ ନଷ୍ଟ କରିଦିଏ । ବରାବର ଟଙ୍କା ପଇସା କଥା ଭାବିଲେ, ହିସାବନିକାଶ

ଧରି ବସିଥିଲେ ଏପରିକି ଟଙ୍କା ଅଛି ବୋଲି ଜାଣିଲେ ମଧ୍ୟ ମଣିଷ ଅମଣିଷ ହୁଏ । ମରଣକୁ ଆଖି ଆଗରେ ରଖି ଯେଉଁ ସୈନିକ ଯୁଦ୍ଧ କରେ, ବିପଦ ଦୁର୍ଦ୍ଦିନକୁ ଖାତିରି ନ କରି ଯେଉଁ ସାହସିକ ଅଭିଯାତ୍ରୀ ମହାସମୁଦ୍ର ବା ଉତ୍ତୁଙ୍ଗ ପର୍ବତ ଅଭିଯାନରେ ବାହାରିପଡ଼େ ସେମାନେ ନିଜ ନିଜକୁ ଟଙ୍କା – ପଇସାଠାରୁ ଦୂରରେ ରଖି ନୂଆ ଜୀବନର ସନ୍ଧାନ ପାଇଥାନ୍ତି । ଏସବୁ କ୍ଷେତ୍ରରେ ଅର୍ଥର ବା ପ୍ରୟୋଜନ କେଉଁଠି ? ବେଳେ ବେଳେ ସ୍ଥାନେ ସ୍ଥାନେ ଏମିତି ଗୋଟାଏ ଜାତି ବା ଗୋଷ୍ଠୀ ବାହାରି ପଡ଼ନ୍ତି । ଇଂଲଣ୍ଡରେ 'ସମ୍ଭ୍ରାନ୍ତ' ବୋଲି ଗୋଟାଏ ଜାତି ଦିନେ ଉଠିଥିଲା । ସେମାନେ ପୈତୃକ ଜମି ବା ଟଙ୍କା ଉପରେ ବଞ୍ଚୁଥିଲେ ସତ; କିନ୍ତୁ ସେଇ ଜମି ଓ ଟଙ୍କା ସେମାନେ ଚୋରି କରି ହେଉ ବା ଉତ୍ତରାଧିକାର–ସୂତ୍ରରେ ପାଞ୍ଚଶ ବର୍ଷ ପୂର୍ବରୁ ପାଇଥିବାରୁ ସେମାନଙ୍କ ଜମିଜମା ଧନସମ୍ପତ୍ତି ଅଛି ବୋଲି ଭାବି ପାରୁ ନଥିଲେ । ସେମାନେ କାଳକ୍ରମେ ଆଉ କିଛି ରୋଜଗାର କରିପାରିଲେ ନାହିଁ, କାରଣ ସେମାନଙ୍କୁ ରୋଜଗାରପନ୍ଥା ଜଣା ନ ଥିଲା । ତେଣୁ ଯାହା ଥିଲା ସେତିକିରେ ବଞ୍ଚିଲେ ବା ସାମାଜିକ ସେତୁଟି ଭାଙ୍ଗି ଯିବାରୁ ପୋଲ ତଳର ସୁଅ ମୁହଁରେ ପଡ଼ି ଭାସିଗଲେ । ଆମେରିକାରେ ସେ କିସମର ଜାତି କେବେ ନଥିଲେ । ଅନ୍ୟ ଦେଶରେ ମଧ୍ୟ ସେମାନେ ବିରଳ ହୋଇଯାଇଛନ୍ତି । ହୁଏତ ଆମେ ସେ କିସମର ଲୋକଙ୍କୁ ଚାହୁଁନା; କିନ୍ତୁ ସେମାନଙ୍କ ଜୀବନରେ ଏତିକି ସୌଭାଗ୍ୟ ଥିଲା ଯେ ଧନ ଦଉଲତ କହିଲେ ଆମେ ଯାହା ବୁଝୁ ତାହା ତାଙ୍କ ମୁଣ୍ଡକୁ ମୋଟେ ପଶୁ ନ ଥିଲା । ଏହା ଅବଶ୍ୟ ସତ ଯେ ଅଭାବଯୋଗୁଁ ସେମାନଙ୍କ ଜୀବନଯାପନ ପ୍ରଣାଳୀ ସୀମିତ ଓ ସଂକୀର୍ଣ୍ଣ ହୋଇଥିଲା । କିନ୍ତୁ ସକାଳ ପାହିଲା ବେଳକୁ ସେମାନେ ଟଙ୍କା ପଇସା ଚିନ୍ତା କରି ବସୁ ନଥିଲେ । ଚରିବା ପାଇଁ ପ୍ରଚୁର ଘାସ ଥିବା ପଡ଼ିଆରେ ଗାଈ ଯେମିତି ଭାବେ ସେ ପଡ଼ିଆ ଭିତରେ ନ ଥାଇ ବାହାରେ ଅଛି ସେମାନେ ବି ସିମିତି ଟଙ୍କା ପଇସାର ମାଲିକ ଥାଇ ଟଙ୍କା – ପଇସା ଚିନ୍ତାର ବାହାରେ ଥିଲେ ।

ମୋ କଲେଜରେ ବି ଠିକ୍ ସେହି କଥା । ଧନୀ ବା ଗରିବ ବୋଲି ସେଠି କେହି ନାହିଁ । ଯଦି କାହାରି ଟଙ୍କାପଇସା ଥାଏ ତେବେ ସେ ତାହା ବ୍ୟବହାର କରିବ ନାହିଁ; ଯାହାର ନ ଥିବ ସେ ଜାଣିବ ନାହିଁ ଯେ ତା'ର ନାହିଁ । ପୁଣି ଧନୀ ଗରିବ ସମାନ ବୋଲି ମଧ୍ୟ ସେମାନେ ଜାଣିବେ ନାହିଁ ।

ଏହି ଟଙ୍କା–ପଇସା ମୋ କଲେଜର ଲକ୍ଷ୍ୟ ହେବ ନାହିଁ । ଟଙ୍କା–ପଇସା ସହିତ ପାଠ୍ୟର କିଛି ସମ୍ପର୍କ ମଧ୍ୟ ରହିବ ନାହିଁ କିମ୍ବା କିପରି ଟଙ୍କା–ପଇସା ରୋଜଗାର କରାଯାଏ ତାହା ପାଠ୍ୟକ୍ରମରେ ସ୍ଥାନ ପାଇବ ନାହିଁ । ଯାହାକୁ ଆମ୍ଭେମାନେ ବୈଷୟିକ ବା ପ୍ରାକ୍ଟିକେଲ୍ ପାଠ୍ୟ ବୋଲି ସାଧାରଣତଃ କହୁଁ ତାହା ଏକ ଭୁଲ୍ ରାସ୍ତା । ବିଦ୍ୟା ବ୍ୟକ୍ତିପାଇଁ ଅଭିପ୍ରେତ; ଯଥାର୍ଥ ଜ୍ଞାନ ଅମୂଲ୍ୟ ହେବା ଉଚିତ୍ ନ ହେଲେ ତା'ର ମୂଲ୍ୟ ରହିବ ନାହିଁ । ମୋ କଲେଜର ପାଠ୍ୟ ହେଲା ସାହିତ୍ୟ, ଇତିହାସ, ଦର୍ଶନ ଏବଂ ତହିଁର ଅନୁଧ୍ୟାନ ଓ ଗବେଷଣା । ଏହି ପାଠ୍ୟ ଅନୁସରଣରେ ସାଗ୍ରହ ଅନ୍ୱେଷଣପିପାସା, ଅସରନ୍ତି ଅନୁସନ୍ଧିତ୍ସା ଦେଖାଇ ପ୍ରତ୍ୟେକ ଇତିହାସକୁ ଜୀବନ୍ତ ଓ ପୁନରାବୃତ୍ତି କରିବେ । ଗୋଟାଏ ଚିଜ ଖୋଜିବାକୁ ଯାଇ ତା' ସାଙ୍ଗକୁ ଆଉ

ଗୋଟିଏ ସେମାନେ ପାଇବେ । ଚୂଡ଼ାନ୍ତ ସତ୍ୟ ଅଲଭ୍ୟ ଓ ଦୁର୍ଲଭ ହେଲେ ମଧ୍ୟ ସେମାନେ ଅନ୍ତତଃ ଜ୍ଞାନବଳରେ ମିଥ୍ୟାକୁ ଖଣ୍ଡନ କରିପାରିବେ ।

ଯେଉଁ ସବୁ ପାଠ୍ୟକୁ ସାଧାରଣତଃ କମର୍ସ ଫେକଲ୍‌ଟିର ଅନ୍ତର୍ଭୁକ୍ତ କରାଯାଇଥାଏ ତାକୁ ମୁଁ ଏକା କଲମରେ ମୋ କଲେଜରୁ ଉଠାଇଦେବି । କମର୍ସ ଫେକଲ୍‌ଟି ବୋଲି କିଛି ପାଠ୍ୟ ନାହିଁ । ବଡ଼ ବଜାରରେ, ବନ୍ଦରମାନଙ୍କରେ ଓ ଲୁହାକାରଖାନାରେ ସେ ସବୁ ପାଠର ସମାଧି ହୋଇଯାଇଛି । ବାଣିଜ୍ୟରେ ଉପାଧିଟିଏ ପାଇବା ଅର୍ଥ ମାସକୁ ହଜାରେ । ବାଣିଜ୍ୟରେ ଯେଉଁ କେତୋଟି ପାଠ ପଢ଼ାଯାଇପାରେ ତାହା ହେଲା ଏକାଉଣ୍ଟେନ୍‌ସି, ଯୌଥ ପ୍ରତିଷ୍ଠାନ ଏବଂ ତହବିଲ ତୋଷାରଫ୍; କିନ୍ତୁ ଯେଉଁଠି ଏ ସବୁ ପଢ଼ାଯାଏ ତାହା ଇଉନିଭର୍‌ସିଟି ନୁହେଁ ।

ଅର୍ଥନୀତିର ମଧ୍ୟ ମୋ କଲେଜରେ ସ୍ଥାନ ନାହିଁ କେବଳ ଚିନ୍ତା ଓ ଅନୁଧ୍ୟାନର ବିଷୟରୂପେ ତହିଁର ଅବଶ୍ୟ ସ୍ଥାନ ଅଛି । ଜ୍ୟାମିତି ପରି ଥାକ ଥାକ ଭାଗ ଭାଗ କରି ଏ ବିଦ୍ୟା ପଢ଼ାଯାଏ ନାହିଁ । ଅର୍ଥନୀତି କେହି ପଢ଼ାଇ ପାରନ୍ତି ନାହିଁ, ଜାଣନ୍ତି ନାହିଁ ମଧ୍ୟ । ଏହା 'ବକ'ର ପ୍ରଶ୍ନ ପରି ଦୁର୍ବୋଧ୍ୟ, ଜଟିଳ । ସ୍ନାତକମାନେ ମୋ କଲେଜରୁ ବାହାରିଲା ପରେ ଯାଇ ଏ ବିଦ୍ୟା ହାସଲ କରିବେ । ପ୍ରଥମ ବାର୍ଷିକ କକ୍ଷା ଛାତ୍ରୀଟିଏ ଇକନମିକସ୍ ପଢ଼ିବା ଯାହା, ଷାଠିଏ ବର୍ଷର ବୁଢ଼ା ପ୍ରସାଧନ ବିଦ୍ୟା ଶିଖିବା ତାହା ଆମର ଏହି ଇକନମିକ ବା ପରିମିତି ଜୀବନ ପ୍ରହେଳିକାର ଚିନ୍ତାଶୀଳ ବିଶ୍ଳେଷଣଠାରୁ ବଳି ଆଉ କ'ଣ ବଡ଼ ଗବେଷଣା କରାଯାଇପାରେ ? ଅର୍ଥନୀତିକୁ ଯେ କ୍ଲାସ୍ କ୍ଲାସ୍ କରି ଲାଭ – କ୍ଷତିମାଧ୍ୟମରେ ପାଠ୍ୟ କରିବାର ଚେଷ୍ଟା କରେ ସେ ବିଷୟଟିର ଗୋଟାଏ ଲାଳିକା କରେ ମାତ୍ର ।

ଡାକ୍ତରି ବିଦ୍ୟାପାଇଁ ବି ମୋ କଲେଜରେ ସ୍ଥାନ ନାହିଁ; ପରେ କିନ୍ତୁ ତାହା ପ୍ରବେଶ ଅଧିକାର ପାଇବ । ଚିକିତ୍ସା ବିଦ୍ୟା ଏକ ବିରାଟ ସତ୍ୟ ଓ ବାସ୍ତବତା; କିନ୍ତୁ ତାହାର ସ୍ଥାନ ସ୍କୁଲରେ, କଲେଜରେ ନୁହେଁ । ଏ ବିଦ୍ୟା ଅର୍ଜନ କରିବା ପାଇଁ ମୋ କଲେଜ ପିଲାଙ୍କୁ ଯୋଗ୍ୟ କରିବ ଯିମିତି କି ସେମାନେ ସହରର ଲୋକଗହଳି, ଏମ୍ବୁଲେନ୍‌ସ ହାସପାତାଳ ଏବଂ ଦୁଃଖ ଦୁର୍ଦ୍ଦଶାଭିତରେ ନିଜ ଜୀବନକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଏ ବିଦ୍ୟା ହାସଲ କରିବେ । ତା'ପରେ ଦୁନିଆଁର ସର୍ବୋଚ୍ଚ ସମ୍ମାନିତ ବିଦ୍ୟାଟି ଯେତେବେଳେ ଶିଖି ସାରିବେ ସେତେବେଳେ ପୁଣି ମୋ କଲେଜର ଆମ୍ବ, ବଉଳ ବା ଦେବଦାରୁର ବାତାବରଣ ତାଙ୍କୁ ଘେରି ପକାଇବ । କର୍ଷଣ, କୃଷି, ବା ସଂସ୍କୃତି ବିଷୟରେ ଶେଷ କଥା ହେଲା ଭଲଭାବରେ କର୍ଷିତ ମନ ଓ ବିଜ୍ଞାନସମ୍ମତ ଚିକିତ୍ସା–ବିଦ୍ୟାର ପାରଙ୍ଗମ ଯାଦୁକର ।

ଇଞ୍ଜିନିୟରଙ୍କ କଥା ସ୍ୱତନ୍ତ୍ର । ଯେତେ ଯେତେ ଜୀବିକା ଅଛି ସେ ମଧ୍ୟରେ ଇଞ୍ଜିନିୟର ଚାକିରି ହେଲା ପୁରୁଷୋଚିତ । ଖଣିରୁ ସୁନା ତୋଳିବା, ପାଣିରୁ ବିଦ୍ୟୁତ୍ ବାହାର କରିବା ବା ଅଧମାଇଲ ବ୍ୟବଧାନ ରଖି ନଈ ସମୁଦ୍ର ଉପରେ ପୋଲ ପକାଇବା କୃତିତ୍ୱ ଇଞ୍ଜିନିୟରମାନଙ୍କର; କିନ୍ତୁ ଏ ସମସ୍ତ କାମ ମଧ୍ୟ ସ୍କୁଲ୍ ଶିଖାଏ, କଲେଜ ନୁହେଁ । ସେମାନେ ପ୍ରଥମେ ମୋ କଲେଜକୁ ଆସିବେ ସିନା, ମାତ୍ର ପାଠ ତାଙ୍କୁ ମୋଟେ ଭଲ ଲାଗିବ ନାହିଁ । ସବୁ ଖାଲି ସପନ ପରି ଲାଗିବ । ସେଇଠୁ ସେମାନେ ପଳାଇଯାଇ ଇଞ୍ଜିନିୟରିଂରେ ପଶିବେ । କେତୁଟା ଦିନ

ପରେ ଶବ୍ଦ ରୂପ, ଧାତୁରୂପ ସବୁ ଭୁଲି ଯିବେ । ବୟସ ଗଡ଼ିଲେ ଡାକ୍ତରମାନେ ଭଦ୍ର ହୁଅନ୍ତି; କିନ୍ତୁ ଇଞ୍ଜିନିୟରଗୁଡ଼ାକ ରୂଢ଼ ଓ କର୍କଶ ହୋଇଯାନ୍ତି ।

ଏସବୁ କହିବାର ମୋଟାମୋଟି ଉଦ୍ଦେଶ୍ୟ ହେଉଛି କ୍ରମେ କ୍ରମେ ଆମର ପଢ଼ାପଢ଼ି ସବୁ ଲକ୍ଷ୍ୟ ଓ ଉଦ୍ଦେଶ୍ୟହୀନ ହୋଇଯାଉଛି । ବିଦ୍ୟା ଅର୍ଜନରେ ପୂର୍ବର ଅଭିନିବେଶ ଓ ଏକାଗ୍ରତା ଆଉ ନାହିଁ । ଆଜିର ଛାତ୍ରସମାଜ ଛାତ୍ରସଙ୍ଗଠନର ଆବର୍ତ୍ତ ଓ ହଟ୍ଟଗୋଳରେ ମଜ୍ଜି ରହିଛନ୍ତି । ଯେ କୌଣସି ବଡ଼ କଲେଜରେ ଅନ୍ତତଃ ଶହେଟି ସମାଜ, ସମିତି, ପରିଷଦ୍ ଓ କ୍ଲବ ରହିଛି । ଆଜି 'ଏଇଟା' କାଲି 'ସେଇଟା' ପଛରେ ଧାଁ-ଦଉଡ଼ କରିବାରେ ସମସ୍ତେ ବ୍ୟସ୍ତ । ଛାତ୍ରଜୀବନଟା ଯିମିତି ଏକାଠି ରୁଣ୍ଡ ହୋଇ 'ହଇଚଇ' 'ଇନ୍‌କିଲାବ୍' କରିବା ପାଇଁ, ସମାରୋହ ଓ ଶୋଭାଯାତ୍ରା ପାଇଁ । ସେମାନେ ଖେଳାଖେଳି କରନ୍ତି ନାହିଁ, ଖେଳିବାପାଇଁ ଟିମ୍ ଗଢ଼ନ୍ତି, ଟିମ୍ ପଠାନ୍ତି ମାତ୍ର; କିନ୍ତୁ ଖେଳ କସରତ୍ ଖୋଲା ହାୱା ଯେ ସେମାନଙ୍କ ଜୀବନ ଏ କଥା ସେମାନେ ବୁଝନ୍ତିନାହିଁ । ଉନ୍ମାଦଗ୍ରସ୍ତ ହୋଇ ସଙ୍କେତ ଓ ତୁହାରୁ ସେମାନେ ଅନୁଭୂତି ସଂଗ୍ରହ କରନ୍ତି । ସେମାନେ ଏକଜୁଟ ହୁଅନ୍ତି, ଧାଁ-ଧପଡ଼ କହନ୍ତି, ଦଳ ବାନ୍ଧନ୍ତି,ରାଜନୀତିର ଖେଳ ଖେଳନ୍ତି, ପତ୍ରପତ୍ରିକା ମଧ୍ୟ ଛାପନ୍ତି । ତେଣୁ ପଢ଼ାପଢ଼ି ସାରି କଲେଜରୁ ବାହାରକୁ ଗୋଡ଼ କାଢ଼ିଲାବେଳକୁ ବାହାର ଦୁନିଆଁ ସହିତ ଏକେବାରେ ଖାପିଯାନ୍ତି । କାରଣ ଛାତ୍ରାବସ୍ଥାରେ ପରିଣତ ଜୀବନର ସମସ୍ତ ଅଭିଜ୍ଞତା ସେମାନେ ପାରସାରିଥାନ୍ତି ।

ଉଭୟ ଶାରୀରିକ ଓ ମାନସିକ - ତତ୍ପରତା ନେଇ ଅନେକ ତରୁଣ ତରୁଣୀ କଲେଜରୁ ବାହାରନ୍ତି ଏ କଥା ଅସ୍ୱୀକାର କରିପାରିବ କିଏ ? କାରଣ କଲେଜରୁ ବାହାରିବା ଦିନ ସେମାନଙ୍କ ଭିତରୁ ଯେ କେହି ଲିଫ୍ଟ ଯନ୍ତ୍ରଟି ନିଶ୍ଚୟ ଚଳାଇପାରିବ ।

ସେମାନଙ୍କ ଭିତରେ କିନ୍ତୁ ଅନେକ ଅଭାବ ରହି ଯାଇଥାଏ । ସେମାନେ କ'ଣ କେବେ କିଛି ଭାବିପାରନ୍ତି ନା ଭାବିବା ପାଇଁ ତାଙ୍କ ପାଖରେ କିଛି ମସଲା ଅଛି ? କିନ୍ତୁ ଦୁନିଆଁଟା ଚାଲିଛି, ବଞ୍ଚିଛି, ଚିନ୍ତାଶୀଳ ମନ ଉପରେ ନିର୍ଭର କରି । ନୁହେଁ ?

ହୁଏତ ସେମାନଙ୍କ ଭିତରେ ଜଣେ ଅଧେ ଚିନ୍ତାଶୀଳ ବ୍ୟକ୍ତି ଥିବେ । ମଣିଷଜାତିଟାକୁ କ'ଣ ସହଜରେ ଦୁଇଟା ଶ୍ରେଣୀରେ ବାଣ୍ଟି ଦେଇହବ ? ମାତ୍ର ମୋର ଧାରଣା ଛୋଟ ଛୋଟ କବିମାନେ ପ୍ରଥମ ବାର୍ଷିକ କ୍ଲାସରୁ ଉଭେଇବାକୁ ଆରମ୍ଭ କରନ୍ତି ଓ ଏବଂ ଯେଉଁମାନେ ବୁଦ୍ଧିମାନ ଓ ଚିନ୍ତାଶୀଳ ସେମାନେ " ଧର ଧର । ମାର ମାର" ଭିତରେ ମଜ୍ଜି ନିଜର ସତ୍ତା ହରାଇ ବସନ୍ତି ।

ମୋର କଲେଜରେ କିନ୍ତୁ ସେ କଥା ନାହିଁ । ସେଠି ଖବରକାଗଜ ନ ଥିବ । ଯେବେ ଥିବ ତେବେ ତାହା ଦୂରଦୂରାନ୍ତ ମୋଫସଲର ଏବଂ ଗଲା ସପ୍ତାହର । ସେଠି ରାଜନୀତି ନାହିଁ କାରଣ ଲଢ଼ିବା ପାଇଁ କୌଣସି ପୋଷ୍ଟ ବା ପଦ ନାହିଁ । ମୋ ଛାତ୍ରମାନେ କିଛି 'କଣ୍ଟ୍ରୋଲ' କରିବେ ନାହିଁ । ଛାତ୍ରମାନଙ୍କଦେଇ ପରିଚାଳନା, ନିୟନ୍ତ୍ରଣ ବା ଶାସନ ବ୍ୟବସ୍ଥାର ଯେଉଁ

ପରିକଳ୍ପନା ତାହା ଉଦ୍ଭଟ ଏବଂ ପ୍ରମାଦପୂର୍ଣ୍ଣ । ଏ ବ୍ୟବସ୍ଥାରେ ଛାତ୍ରମାନେ କଣ୍ଟ୍ରୋଲ କରିବାରେ ଏତେ ବ୍ୟସ୍ତ ହୁଅନ୍ତି ଯେ ସେମାନଙ୍କୁ ଛାତ୍ର କୁହାଯିବା ଉଚିତ ନୁହେଁ ।

ମୋ କଲେଜର ପିଲମାନେ ଇଚ୍ଛାମୁତାବକ ଖେଳ ଖେଳିବେ ସିନା, ମାତ୍ର ବ୍ୟବସାୟ ବା କଲେଜ-ବିଜ୍ଞାପନ ରୂପେ ନୁହେଁ । ମୋ କଲେଜରେ ରୋଜଗାରର ପନ୍ଥା ହିସାବରେ ଖେଳ ଖେଳାଯିବ ନାହିଁ । ଯେଉଁ ଦେଶ ସାରା ପୃଥିବୀକୁ ଖେଳ ଶିଖାଇଛି ସେଇ ଦେଶରେ ମାତ୍ର କେତେ ବର୍ଷ ପୂର୍ବେ ବିନା ପଇସାରେ ଖେଳ ହେଉଥିଲା । ସେଠି ସିଟ୍ ର ଦାମ୍ ନଥିଲା । କୁହାଯାଇଥାଏ ଯେ ୱାଟରଲୁ ଯୁଦ୍ଧ ଇଟନର ଖେଳ ପଡ଼ିଆରେ (ପ୍ରକୃତରେ ବେଲ୍‌ଜିୟମରେ) ଜିଣା ହୋଇଥିଲା । ସେତେବେଳେ କ'ଣ ଇଟନ ପଡ଼ିଆରେ ପଇସାଦିଆ ଖେଳ ହେଉଥିଲା ?

କେହି ହୁଏତ ପଚାରି ପାରନ୍ତି ମୋ କଲେଜପାଇଁ ପାଣ୍ଠି ଆସିବ କୁଆଡୁ । ମୋ ଦାତାମାନେ କିନ୍ତୁ ସମସ୍ତେ ମୃତ । ବଞ୍ଚିଥିଲେ ବି ମୃତ ପରି ସେମାନେ ବ୍ୟବହାର ଦେଖାଇବେ । ଆମେରିକାର ଅନାବାଦୀ ତୃଣପୂର୍ଣ୍ଣ ଅଞ୍ଚଳରେ ପୂର୍ବେ ଲୋକେ କହୁଥିଲେ ଯେଉଁ ଲୋହିତ ଭାରତୀୟଟି ମୃତ ସେଇଟି ଭଲ ବୋଲି । ହୁଏତ ତାହା ସତ ନୁହେଁ; କିନ୍ତୁ ଏ କଥା ଅବଶ୍ୟ ସତ ଯେ ମୋ କଲେଜର ସର୍ବଶ୍ରେଷ୍ଠ ହିତୈଷୀ ବ୍ୟକ୍ତି ମୃତ । କାରଣ ସେମାନଙ୍କ ମହନୀୟ ଦାନର ପ୍ରାପ୍ତି ସ୍ୱୀକାରସ୍ୱରୂପ କଲେଜକାନ୍ଥରେ ଲେଖାଥିବ – "ଏହି ଫଳକ ଶ୍ରୀ ଶ୍ରୀ ଶ୍ରୀ ... ଙ୍କ ସ୍ମୃତି ଉଦ୍ଦେଶ୍ୟରେ" । ଆମ୍ବ, ବଉଳ ବା ଦେବଦାରୁ ଗଛ ଗହଳିରେ ଥିବା କଲେଜରେ ଏଇ ଯେଉଁ ଶିଳାଲେଖ ତାହା ଅକାତରରେ ସାରା ଜୀବନ ଧରି ଅର୍ପଣ କରାଯାଇଥିବା ଦାନର କ'ଣ ପର୍ଯ୍ୟାପ୍ତ ପ୍ରତିଦାନ ନୁହେଁ ? ଏ ସବୁ ଶିଳାଲେଖ ସଂସ୍କୃତରେ ଲେଖାଯିବା ଉଚିତ । ମୋ କଲେଜରେ ସଂସ୍କୃତ, ପ୍ରାକୃତ, ଲାଟିନ୍, ଗ୍ରୀକ୍‌ର ଅପୂର୍ବ ସମାବେଶ ଓ ଅବୋଧ ମେଣ୍ଟ ଦେଖିଲେ ଅସଲ ଗୁଣୀ ଲୋକ ସେ ସବୁ କଥା ବୁଝିପାରିବ । ସଂସ୍କୃତ ଓ ଲାଟିନ୍ ଚିରସ୍ଥାୟୀ । ଇଂରାଜୀ କହ ଓଡ଼ିଆ କହ ଏ ସବୁ ଚଳନ୍ତି ଭାଷା ଦିନକୁ ଦିନ ରୂପ ବଦଳାନ୍ତି । ହଜାରେ ବର୍ଷ ତଳର ଇଂରାଜୀ ବା ଓଡ଼ିଆ କ'ଣ ଏବେ ଅଛି ନା ଆପଣ ତାହା ବୁଝିପାରିବେ ? ଆଗରୁ ଯେଉଁ ଆମଦାନୀ ଶୁଳ୍କ କଥା କହୁଥିଲି ଭାଷାକ୍ଷେତ୍ରରେ ମଧ୍ୟ ସେଇ କଥା । ଭାଷାର ଅଭାବନୀୟ ଅପ୍ରତ୍ୟାଶିତ ପରିବର୍ତ୍ତନ ଯୋଗୁଁ ଆଧୁନିକ ଭାଷାକୁ ପାଠ୍ୟକ୍ରମ ଭିତରେ ପୁରାଇବା ସମ୍ଭବ ନୁହେଁ ।

ପୃଷ୍ଠପୋଷକ ବା ଦାତାଙ୍କ ସମ୍ବନ୍ଧରେ ଯାହା କହିଥିଲି ତତ୍ତ୍ୱବଧାରକମାନଙ୍କ ପକ୍ଷରେ ମଧ୍ୟ ସେଇ କଥା । ସେମାନେ ଟଙ୍କା-ପଇସା କାରବାର କରନ୍ତି; କିନ୍ତୁ କେବେ କ୍ଷତି ସହନ୍ତି ନାହିଁ । ସେମାନେ ମୃତ ନୁହନ୍ତି ସତ; କିନ୍ତୁ ମୃତ ପରି ନିର୍ବାକ୍ । ସେମାନଙ୍କ ବିଭବ ଅଛି, ମାତ୍ର କଥା କହିବା ତାଙ୍କର ଅଭ୍ୟାସ ନାହିଁ, ଦରକାର ନାହିଁ ମଧ୍ୟ । ତିନି ତିନିଟା ମାନ୍ଦା ବ୍ୟବସାୟ ଯୁଗ ଧରି ଏମାନେ ତିନି ତିନି ଲକ୍ଷ ଟଙ୍କା ଖଟାଇ ଦେବେ ଅଥଚ ପୀରାମିଡ୍ ଭିତରେ ଥିବା

ପାତ୍ରରେ ସୁନା ଯେପରି ନିରାପଦ ରହିଛି ତାଙ୍କ ଟଙ୍କାର ସିମିତି ଧୂଳି ମଳି ନ ଥିବ । ସେମାନେ ବଡ଼ବଜାର, ଚୌରଙ୍ଗୀ ବା ସିମିତ ଜାଗାରେ ଥା'ନ୍ତି; ଅନ୍ତତଃ ସେଇଠି ତାଙ୍କୁ ଦେଖିଲା ପରି ମନେ ହେଉଛି । ବିରାଟ ବିରାଟ ଶିଳ୍ପ-ବ୍ୟବସାୟ ପ୍ରତିଷ୍ଠାନ୍‌ରେ ସେମାନେ ଥା'ନ୍ତି; ଏତେ ବିରାଟ ଯେ ଆପଣ ସେ ସବୁର ନାମ ଶୁଣି ନ ଥିବେ । ସେମାନେ ମୁହଁ ନ ଫିଟାଇବାର ଉଦ୍ଦେଶ୍ୟ ସେମାନେ ଭାବୁଥାନ୍ତି କେଉଁଠି କୋଟିଏ ଟଙ୍କା ଖଟାଇବେ । ସେମାନେ ଟଙ୍କାକୁ ଭଗ୍ନାଂଶରେ ପରିଣତ କରିବାକୁ ଘୃଣା କରନ୍ତି; ଏ କଥା ଯିମିତି ଆପଣ ଲକ୍ଷ୍ୟ କରନ୍ତି ।

ଆଉ ଝିଅଙ୍କ କଥା ? ମୋ କଲେଜରେ ଝିଅଙ୍କ ପାଇଁ ସ୍ଥାନ ବା ରହଣି ବ୍ୟବସ୍ଥା କଥା ପଚାରୁଛନ୍ତି ? ନା,ନା,ଆଜ୍ଞା ! ପ୍ରଶ୍ନ ପାଇଁ ଆପଣଙ୍କୁ ଶତ ଧନ୍ୟବାଦ ! ମୋ କଲେଜରେ ଝିଅଙ୍କ ସ୍ଥାନ ନାହିଁ । ସହଶିକ୍ଷା ବୋଲି ଆପଣ ଯାହାକୁ କହୁଛନ୍ତି ତାହା ଝିଅଙ୍କୁ ବେଶ୍ ପୋଷାଏ; କାରଣ, ପୁଅଙ୍କ ସହିତ ଏକାଠି ରହି କଲେଜ ଛାଡ଼ିଲାବେଳକୁ ଘରସଂସାର ପାଇଁ ସେମାନେ ଏକାବେଳକେ ଯୋଗ୍ୟ ହୋଇଯାଇଥାନ୍ତି । ସହଶିକ୍ଷାରୁ ପୁଅଙ୍କ ଅପେକ୍ଷା ଝିଅମାନେ ହିଁ ବେଶୀ ଫାଇଦା ଉଠାନ୍ତି । ବାହାର ଝିଅଙ୍କ ଅପେକ୍ଷା କଲେଜ ଝିଅମାନେ ସଙ୍ଗିନୀ ବା ସ୍ତ୍ରୀ (ଆପଣଙ୍କର ବା ଅନ୍ୟ କାହାରି) ହେବାପାଇଁ ଅନେକ ବେଶୀ ଉପଯୁକ୍ତା । ଏଇ ଝିଅଙ୍କପାଇଁ ସିନା ଆପଣଙ୍କ କଲେଜ-ଜୀବନ ଏତେ ରଙ୍ଗୀନ ଓ ସୁଖମୟ ! ଅବଶ୍ୟ ଟିକିଏ ଅତି ବେଶୀ ଚକଚକିଆ, ଅତି ବେଶୀ ମଉଜିଆ ।

କିନ୍ତୁ, ଏ କଥା ମନେ ରଖିବେ ଝିଅଙ୍କ ପାଖରେ ପୁଅଙ୍କ ପାଠ ହୁଏ ନାହିଁ । ଖାଲି କ'ଣ ପୁଅଙ୍କ ? ଯେବେ ମୋ କଲେଜରେ ଝିଅଙ୍କୁ ପୁରାଏଁ ତେବେ ସାଙ୍ଗେ ସାଙ୍ଗେ ସେମାନେ ସିଧା ଯାଇ ମୋର ସେଇ ଧୂଳିଧୂସରିଆ ବୁଢ଼ା ପ୍ରଫେସରଗୁଡ଼ାଙ୍କୁ ପଗଡ଼େଇ ଜାବୁଡ଼ି ଧରିବେ ଏବଂ ବାହା ହୋଇ ପଡ଼ିବେ । ସେଇଠି 'ଚାଣକ୍ୟ' ଗବେଷଣା ଇତି, ଆଧ୍ୟାତ୍ମିକ ଚିନ୍ତାର ସମାଧି ।



# ବୁଢ଼ାବାବୁ

**ଶୀତ** ଦିନିଆ ସକାଳ । ବଜାରରୁ କୋଶଳା ଶାଗ କିଣୁଥିଲି । ଶାଗ ଗୁଡ଼ାକ ଏତେ ସବୁଜ, କଅଁଳ, ଛନ୍ ଛନ୍ ଯେ କଞ୍ଚା ଖାଇବା ପାଇଁ ଇଚ୍ଛା ହେଉଥିଲା । ଆଜି ବୁଢ଼ୀ ଆସି ନଥିଲା । ବିକୁଥିଲା ତା ନାତୁଣୀ । (ଏ ଗୁଡ଼ାକୁ କାହିଁକି ଯେ ଲୋକ ବଜାରକୁ ଛାଡ଼ନ୍ତି ?) ବସି ପଡ଼ି ବିଡ଼ାଏ ଶାଗ ଧରି ପଚାରିଲି କେତେ ପଇସା ? ବିଦେଶୀ ଭାଷା କଷ୍ଟରେ ଉଚ୍ଚାରଣ କଲା ପରି ଓଠ ଚାପି ଗମ୍ଭୀର ମୁହଁରେ ସେ କହିଲା ''ପାଆଞ୍ଚ ପୁଇସା'' । ଚାରିବିଡ଼ା ପନ୍ଦର ପଇସାରେ ଦବୁ ? କହୁ କହୁ ଗୋଟାଏ ଦୁଇଟା ବିଡ଼ା ଥଳିରେ ଭର୍ତ୍ତି କଲି । ନାଇଁ ନାଇଁ ଦେବି । କହି ସନ୍ଦେହ ଚକ୍ଷୁରେ ମୋ ହାତ ଓ ଥଳି କୁ ଚାହିଁଲା । ଚାରି ବିଡ଼ା କୋଡ଼ିଏ ପଇସାରେ ଦବୁତ ? ନାଇଁ, ନାଇଁ, ନାଇଁ ଦେବି, କହି ଯେମିତି ବିଡ଼ାଟିଏ ମୋ ହାତରୁ ଛଡ଼ାଇ ନେଇଛି ବିରକ୍ତ ହୋଇ ମୁଁ ସବୁ ଶାଗ ଥଳିରୁ ବାହାର କରି ଥମ୍ ଥମ୍ ହୋଇ ଉଠିଗଲି । ଗୁରୁ ଗୁରୁ ହେଉଁଥାଏ '' ଏ ଝିଅକୁ କେହି ବୋଧ ହୁଏ ଅଙ୍କ କଷେଇ ନାହିଁ । ବୁଲି ପଡ଼ି ଆଲୁଅ ଖୁଣ୍ଟିର ଆର ପଟେ ଆଉ କ'ଣ (ମୂଳା କି ଲଙ୍କା ମରିଚ) ମୁଲାଉଛି ଶୁଭିଲା ''ନେଇ ଯା'' ଏ ବୁଢ଼ା ବାବୁ । ମୁଁ ଜାଣିଥିଲି ହିସାବ ଯୋଡ଼ି ପରେ ଭୁଲ ବୁଝି ମୋତେ ସେ ଡାକିବ । ତେଣୁ ତା ଆଡ଼କୁ ଅନିଷା ରଖିଥିଲି । (ଝିଅଟି କଳା ହେଲେ ବି ବେଶ୍ ଡଉଲ ଡାଉଲ ଥିଲା) କିନ୍ତୁ ମୋତେ କି ଆଉ କାହାକୁ ଏମିତି ଡାକୁଛି ସନ୍ଦେହରେ ପଡ଼ି ଚାହିଁ ନେଇଛି । ସେ ପୁଣି ଚେଚେଁୟା ଗଳାରେ ଡାକିଲା – ''ନେଇ ଯାଆ, ଏ ବୁଢ଼ା ବାବୁ ।''

ବୁଢ଼ା ବାବୁ । ସର୍ବନାଶ । କ'ଣ ମୋତେ ଡାକିଲା, 'ବୁଢ଼ା ବାବୁ' ବୋଲି । ଯଦି କିଏ ଆସି ସେଇ ମୁହୂର୍ତ୍ତରେ ମୋତେ କହିଥାନ୍ତା ''ସାର'' ଆପଣଙ୍କର ଚବିଶ ବର୍ଷର ବଡ଼ ପୁଅ ଏଇମାତ୍ର ମରିଗଲା । ତେବେ ମୋ ମନରେ ଯେଉଁ ଧକ୍କା ଆଘାତ ଲାଗିଥାନ୍ତା ଠିକ୍ ସେହିପରି ଲାଗିଲା । ମୁଁ ଶାଗ କିଣିବି କ'ଣ ଝିଅଟାକୁ ମୋ ପୁଅର ହନ୍ତା ଭାବି କୋଣ ଚାହାଣୀ ଦେଇ ବଜାରରୁ ବାହାରି ଘରକୁ ଏକ ମୁହାଁ ହୋଇ ଧାଇଁଲି । ଏମିତି ଗୋଟାଏ ଆନ୍ଦୋଳିତ ବିକ୍ଷୋଭ ମନ ଭିତରେ ଆସିଲା ଯେ ମୁଁ ବାଟରେ କିଛି ଭାବି ପାରିଲି ନାହିଁ । ଖାଲି ବୁଢ଼ା ବାବୁ, ବୁଢ଼ା ବାବୁ, କାନକୁ ଶୁଭୁଥାଏ ।

ଘରେ ଆସି ଛୋଟ ଆଇନାଟା ଟେବୁଲରୁ ଉଠାଇ ଝରକା ପାଖରେ ଛିଡ଼ା ହୋଇ ଦେଖିଲି ମୁଣ୍ଡ ଓ ମୁହଁକୁ । କାହିଁ, କଲିରେ କେତୁଟା ଚୂଳ ଧଳା ଦିଶୁଛି । ଇନ୍ଦିରା ଗାନ୍ଧୀଙ୍କ

ଯେଉଁ ସ୍ଥାନରେ ଗୁଡ଼ାଏ ଧଳା ସେଇ ଜାଗାରେ ମାତ୍ର ଦଶ କୋଡ଼ିଏ ଟା ଧଳା ହୋଇଛି । ଆଖିତଳ ଆଉ ବେକର ଚମ ସାମାନ୍ୟ କୁଞ୍ଚିତ । ଅଥଚ ଏକାବେଳକେ ବୁଢ଼ା ବାବୁ । ମୁଁ କ'ଣ ହୋଇଗଲି ? ବୋଲି ପ୍ରଶ୍ନ ଟା ଯାହା କୁ ପଚାରିଥାନ୍ତି ସେ ମୋତେ ଛାଡ଼ି ଅନେକ ଦିନ ହେଲା ଚାଲି ଗଲେଣି । ତାଙ୍କୁ ପଚାରିଥିଲେ ସେ ଠିକ୍ ରାଘବ ମହାନ୍ତିର ମାଆ – "ମୋ ରାଘୋଟି କ'ଣ ଅସୁନ୍ଦରିଆ ହୋଇଛି ? କହିଲା ପରି କହିଥାନ୍ତେ, "ଯା ଯା" ତୁମେ ବୁଢ଼ା ! କ'ଣ କହନ୍ତି ଯେ ! ଚୂଳ ଦିଟା ଗୋଟେ ବୁଢ଼ା ହେଲେ କ'ଣ ମଣିଷ ବୁଢ଼ା ହୁଅନ୍ତି ? ଯାହା ହେଉ ନିଜକୁ ନିଜେ ବୁଝାଇ ଥୟ ଧରିଲି । ଏ ଝିଅ ଗୁଡ଼ାଙ୍କ ଶୁଙ୍ଘି ଶୁଙ୍ଘିକା ମଣିଷର ବୟସ ବାରି ପାରନ୍ତି ନା କ'ଣ ?

ଭଗବାନଙ୍କ ଅସ୍ତିତ୍ୱ ଅପେକ୍ଷା ପ୍ରୋଟିନ୍ ଥିଓରି ମୋ ପକ୍ଷରେ ଅଧିକ ବିଶ୍ୱାସ୍ୟ । ଖବର ପାଇଲି ମ୍ୟୁନିସିପାଲିଟି ଇଲାକା ବାହାରେ ସୁଲେମାନ୍ ଆଖି ଆଗରେ ଛେଳି ହାଣି ପାଣି ନ ଦେଇ ମାଂସ ବିକ୍ରି କରୁଛି । ମୁଁ ନିଜେ ଯାଇ ପ୍ରତି ରବିବାର ସକାଳେ ଠିକଣା ଜାଗାରେ ହାଜର ହୁଏ । କୋଶଳା ଶାଗକିଣା ଘଟଣାର ପରଦିନ ମୁଁ ତେନ୍ତୁଳୀ ମୂଳର ଉଚ୍ଚିଆ ଜମି ଉପରେ ମୋ ପାଳି ପାଇଁ ଅପେକ୍ଷା କରିଥାଏଁ କେମିତି ନିର୍ଭୁଲ ଭାବରେ ଠିକ୍ ଜାଗାରେ ଛିଣ୍ଡା ଗେଞ୍ଜିଟାଏ ଯୋଡ଼ି, ଲିଙ୍ଗ ଉପରେ ଥନ୍ତଲ ପେଟଟି ରଖି ପଞ୍ଜରା, ମେରୁଦଣ୍ଡ, ଖୋଲରେ ହାତ କୁଟାଉଥାଏ । ମୋତେ ଦେଖିଲା ମାତ୍ରେ ସୁଲେମାନ୍ କହିଲା "କରିମ୍, ବୁଢ଼ା ବାବୁଙ୍କୁ ନରମ ନରମ ମାଂସ ଦେଖି କିଲେ ଦେଇ ଶୀଘ୍ର ବିଦା କରି ଦେ ତ ।"

ଏଠି ବି ସେଇ ବୁଢ଼ା ବାବୁ ! ଇଃ ! ମୁଁ ତେବେ ନିଶ୍ଚିତ ରୂପେ ବୁଢ଼ା ହୋଇଗଲି । ବଜାରର ଆଲୁଅ ଖୁଣ୍ଟି ତଳର କୋଶଳା ବିକାଳି ଝିଅ ଆଖିରେ ଯାହା ତେନ୍ତୁଳି ମୂଳର ମାଂସ ବିକାଳି ବୁଢ଼ା ସୁଲେମାନ୍ ଆଖିରେ ବି ସେଇଆ । ଯେତେ ଯେତେ ଭିଟାମିନ୍, ପ୍ରୋଟିନ୍, ସବୁ ନିଷ୍ଫଳ । ଯେତେ ଯେତେ ଭଲ ଖାଇଥିଲି । ଭଲ ପିନ୍ଧିଥିଲି, ଲଗେଇ ଥିଲି, ସବୁ ବ୍ୟର୍ଥ । ଦୁନିଆଁର କୋଟି କୋଟି କବିରାଜ ଡାକ୍ତର, ବୈଜ୍ଞାନିକଙ୍କ ସମସ୍ତ ଉଦ୍ଭାବନ, କଳକାରଖାନାର ସମସ୍ତ ଉତ୍ପାଦନ ମୋତେ ବାର୍ଦ୍ଧକ୍ୟ ରୁ ରକ୍ଷା କରିପାରିଲା ନାହିଁ । କେତେ କେତେ ବ୍ରିଲ୍ କ୍ରିମ୍ ଲଗାଇଥିଲି, କେତେ ଗୋଦ୍ରେଜସିଲ୍କଲ୍ ଲଗାଇଛି, ଏପଲ୍, ଅଣ୍ଡା ଦୁଧ ବିଲାତୀଙ୍କ ପରି ଖାଇଥିଲି ତଥାପି ହରମୋନ ଥିଓରି .... ।

ସୃଷ୍ଟି ର ପ୍ରାକ୍ କାଳରୁ ମଣିଷ ଜାତିର ଐକିକ ଓ ସାମଗ୍ରିକ ପ୍ରୟାସ ହେଲା ମନୁଷ୍ୟଙ୍କୁ ବାର୍ଦ୍ଧକ୍ୟରୁ ରକ୍ଷା କରିବା । ମୃତ୍ୟୁ ଅପେକ୍ଷା ବାର୍ଦ୍ଧକ୍ୟ ବେଶୀ ଭୀତ ପ୍ରଦ । ଯୌବନ, ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟର ସୀମା ରେଖାଟି ବଡ଼ କ୍ଷୀଣ, ଅଦୃଶ୍ୟ । ସମସ୍ତେ ଏଇ ସୀମା ରେଖାକୁ ଦେଖି ବି, ନଦେଖିବାର ଛଳନା କରୁଥାନ୍ତି । କିନ୍ତୁ ଦିନେ ନା ଦିନେ .... ମୋର ତେବେ କ'ଣ ସେଇ ଦିନ ଆସିଗଲା ? ସନ୍ଧି ସ୍ଥଳର ଡାହାଣକୁ ଡେଇଁଲି ? ସମ୍ପୃଧି କାଳିନ୍ଦୀ ବାବୁଙ୍କ 'ଯାହା ଅଙ୍ଗେ ଲିଭାଇଛି', ଏକଦା ସହକର୍ମୀ ଓ ସହଧର୍ମୀ ବନ୍ଧୁ କୁଞ୍ଜବାବୁଙ୍କ ଡଗର ପୃଷ୍ଠାର 'ମୋ ନନା

ମୋ ବୋଉ', ଆଉ ଅଗ୍ରଜ ରାଜୁବାବୁଙ୍କ (ସିଏ ବି ବୁଢ଼ା ହେବେ ଏକଥା କିଏ ଭାବିଥିଲା ?) ଜୀବନ ଜାହ୍ନବୀର କେତୋଟି ସ୍ରୋତ ପରି ମୋତେ ବି କ'ଣ ତେବେ ଆତ୍ମଜ୍ଞାନ ବଳରେ ଅତୀତ କୁ ଉଦ୍‌ବୋଧର ବୃଥାଭାଳି ଭାଳି ଗାଇବାକୁ ପଡ଼ିବ ? ମୋତେ ବି କ'ଣ ମୋର ସେଇ କେତେ ଜଣ ଅଗ୍ରଜଙ୍କ ପରି ଗାଁ ଦାଣ୍ଡରେ ବସିବାକୁ ପଡ଼ିବ ଏବଂ ମୁଲିଆ କାମଠୁଣୀଙ୍କ କଥାବାର୍ତ୍ତା ଶୁଣିବାକୁ ପଡ଼ିବ । ଆଜି ହରିବୁଢ଼ା ଘରକୁ ଯାଇଥିଲି ବିଲ ବାଛି, ମୁଁ ଶିରିଶ ବୁଢ଼ା ବହୁତ ଖଟାଏ, କୈଳାସ ବୁଢ଼ା ବେଶୀ କେଣ୍ଡରା, ବେଜାଏ ବକ୍ ବକ୍ ହୁଏ । ବସନ୍ତ ବାବୁ ସ୍ଥାନରେ ବୁଢ଼ାବାବୁ ଏବଂ ତା ପରେ ବସନ୍ତ ବୁଢ଼ା ଶୁଣିବାକୁ ପଡ଼ିବ ଗାଁ ମୁଲିଆଣୀଙ୍କ ତୁଣ୍ଡରେ । ପୁଅ, ବୋହୂ, କହିବେ, "ବାପା, ଆମେ ସିନେମା ଦେଖିବାକୁ ଯାଉଛୁଁ ଦେଖିବ ଦୁଧ କଡ଼ାଟା ସେଲ୍ଫ ଉପରେ ଅଛି ବିରାଡ଼ି ଖାଇ ଯିବ ।" (ମାର୍ଜାରସ୍ୟ ହି ଦୋଷେଣ ଜରଦ୍‌ଗବ ବୃଦ୍ଧ ହତ ହେବ ।) ନ ହେଲେ ବୋହୂ କହିବେ, "ବାପା ରାଜାକୁ ଟିକିଏ ଦେଖ ନ ହେଲେ ବୁଲାଇ ଆଣ, ମୁଁ ଗାଧୋଇ ବାହାରିଲି ।" ବୁଢ଼ାଙ୍କ ପାଇଁ ଏମିତି ସ୍ୱତନ୍ତ୍ର କାମର ବ୍ୟବସ୍ଥା ।

ସ୍କନ୍ଧ ନ ବାଧତେ ରାଜନ୍ ! ବୁଢ଼ା ହେବାର କିଛି ଦୁଃଖ ନଥିଲା କିନ୍ତୁ କି କଦର୍ଯ୍ୟ ବର୍ଣ୍ଣନା, କି କଦର୍ଯ୍ୟ ଦୃଷ୍ଟାନ୍ତ, କି କଦର୍ଯ୍ୟ ଦୃଷ୍ଟି କୋଣ ବୁଢ଼ାଙ୍କ ପାଇଁ । ପୁଣି କି ଆଶ୍ୱାସନା, "ନୁହେଁ ବୃଦ୍ଧ ସେହିଜନ ।" ବା ସୋଫେକ୍ଲିସ୍‌ଙ୍କ ଏଣ୍ଟିଗନିର ଶେଷ ବାକ୍ୟ, "We learn when we are old" ଏସବୁ ଆତ୍ମ ପ୍ରବଞ୍ଚନା ମାତ୍ର । ମୋର ଜ୍ଞାନର ଦରକାର ନାହିଁ ମୋତେ ଯୌବନ ଦିଅ ।

କାଳିଦାସ ବିଦ୍ୟାନଗରୀରେ ଭେଟି ଥିଲେ ଗୋଟାଏ ବୁଢ଼ୀକୁ । (ସ୍ତ୍ରୀ ମାନେ ବୁଢ଼ୀ ହୁଅନ୍ତି ନାହିଁ କୁଆଡ଼େ, ପୁରୁଷଙ୍କର ବାଲ୍ୟ, କୈଶୋର, ପୌଗଣ୍ଡ, ଯୌବନ, ପ୍ରୌଢ଼ ଓ ବାର୍ଦ୍ଧକ୍ୟ ଆଦି ବିଭିନ୍ନ ଅବସ୍ଥା ଥିବା ସ୍ଥଳେ ନାରୀ ଙ୍କ ପାଇଁ କୁଆଡ଼େ ବାଲ୍ୟ,ଯୌବନ,ଯୌବନ) ସେ ବାଡ଼ିଟିଏ ଧରି ମୁଣ୍ଡ ଏତେ ତଳକୁ କରି ଏମିତି ନଇଁ ନଇଁ ଚାଲିଥିଲା ଯେ ସେ କ'ଣ ଖୋଜିଲା ପରି ଜଣା ଯାଉଥିଲା । ଯେ ସେ କ'ଣ ଖୋଜିଲା ପରି ଜଣା ଯାଉଥିଲା । ରହସ୍ୟ ପରି କାଳିଦାସ କୁଆଡ଼େ ପଚାରିଲେ (ଅଧା ପଣ୍ଡିତଙ୍କ କାହାଣୀ) "କିଂ ଅନ୍ୱିଷ୍ୟ ସେ ବୃଦ୍ଧେ ।" ବୁଢ଼ୀ ହଠାତ୍ ମୁଣ୍ଡ ଟେକି କହିଲା "ଯୌବନଂ" । କିନ୍ତୁ ହାୟ ! "ଯଉବନ ଥରେ ଗଲେ ଆଉ ଆସେ ନା ।" ପ୍ରସଙ୍ଗ କ୍ରମେ କୁହାଯାଇପାରେ ରାଜନୀତିଜ୍ଞ ମାନେ ବୁଢ଼ା ବା ବୁଢ଼ୀ ହୁଅନ୍ତି ନାହିଁ । ମନେ ମନେ ହିସାବ କରି ଦେଖନ୍ତୁ କେତୁଟା ଦେଶର ପ୍ରଧାନ ମନ୍ତ୍ରୀ, ପ୍ରେସିଡେଣ୍ଟ ପଞ୍ଚାବନ ବର୍ଷ ତଳର । ଚାକିରୀରେ ଯିଏ ଷାଠିଏ ଉପରକୁ ଅଯୋଗ୍ୟ ହୁଏ ରାଜନୀତିରେ ସିଏ ଅତି ଯୋଗ୍ୟ କର୍ମଠ ବୋଲି ବିବେଚିତ ହୁଏ ।

ବ୍ୟାସ, କାଳିଦାସଙ୍କ ଠାରୁ ଆରମ୍ଭ କରି ଅଧାପକ ବନ୍ଧୁ ପ୍ରଫୁଲ୍ଲ ତ୍ରିପାଠୀଙ୍କ ପର୍ଯ୍ୟନ୍ତ ସବୁ ଲେଖକ କାହିଁକି କେଜାଣି ବୁଢ଼ାକୁ ଥଟ୍ଟା ତାମସା, ବ୍ୟଙ୍ଗ ବିଦ୍ରୂପ ଓ ଗାଳି ଗୁଲଜ କରିବାରେ ଅଭ୍ୟସ୍ତ, ସିଦ୍ଧ ମୁଖ ତଥା ସିଦ୍ଧହସ୍ତ । ପିଲାଙ୍କ ଆଖିରେ, "ରେ ବୃଦ୍ଧ ! କ୍ରୀଡ଼ନକ ତୁହି ମୋହର, ମୋ ବାରତା ସଦା ଶ୍ରବଣ କର ।"

ଶାସ୍ତ୍ର ପୁରାଣରେ ଆଖି ପକାଇ ଯାଆନ୍ତୁ । କି କୁତ୍ସିତ କଦାକାର, ଜଘନ୍ୟ ବୁଢ଼ାବାବୁର ଛବି । ଶଙ୍କରାଚାର୍ଯ୍ୟଙ୍କ ଅଙ୍ଗ ଗଳିତଂ ପଳିତଂ ମୁଣ୍ଡ, ଦଶନ ବିହୀନ ଜାତି ତୁଣ୍ଡ । କରଧୃତ କମ୍ପିତ ଶୋଭିତ ଦଣ୍ଡଂ ସେତିକିରେ ଶଙ୍କରଙ୍କ ମନ ମାନିଲା ନାହିଁ । ତଦପି ଚ ମୁଞ୍ଚ ତ୍ୟାଶା ଭାଣ୍ଡଂ । ଯେମିତି ଆଶା ଭାଣ୍ଡ ଛାଡ଼ି ସମସ୍ତେ ବଞ୍ଚନ୍ତି । ତା ପର ଶ୍ଳୋକରେ ମଧ୍ୟ ସେଇ କଥା ଶେଷରେ ବାର୍ତ୍ତା କୋଽପି ନ ପୃଚ୍ଛତି ଗେହେ । ଶେଷକୁ ବୃଥା ଚିନ୍ତା ମଗ୍ନ । ଅତଏବ ଗୋବିନ୍ଦ ଭଜ । କାଳିଦାସ ରଘୁବଂଶର ନରପତିମାନଙ୍କୁ ଗୋବନରେ ଭୋଗ ସମ୍ଭୋଗର ଅଧିକାର ଦେଇ ବାର୍ଦ୍ଧକ୍ୟ ବେଳକୁ 'ମୁନିବୃତ୍ତି' ଅର୍ଥାତ୍ ସଂଯମ,କୃଚ୍ଛ୍ର, ସାଧନା, ସଂସାର ବିମୁଖତା ଓ ଆଚାର ବର୍ଜିତା ସୁପାରିଶ କରିଛନ୍ତି । ବିଷ୍ଣୁ ଶର୍ମା ବି ସେହିପରି ବଦନଂ ଦଶନୈଃ ହୀନଂ ଲୀଳାସ୍ରବତି ନିତ୍ୟଶ କହି ଶେଷକୁ କହିଲେ 'ନ ବୁଦ୍ଧି ସ୍ଫୁରତି କ୍ୱାପି' ଏବଂ ତେଣୁ ବାଳକ ଓ ବୃଦ୍ଧ ସମାନ । ସେକସ୍‌ପିଅରଙ୍କ ସେ ବାର୍ଦ୍ଧକ୍ୟ "Old floos are babies again and must be used with checks and fatteries." ଆଧୁନିକ କବିଙ୍କ ଭାବରେ ବୁଢ଼ା କହିଲେ - ଖଣ୍ଡିଏ ବାଡ଼ି, ତା ଉପରେ ଛିଣ୍ଡା କୋଟ୍ (ମକା ବାଡ଼ିରର ହୁରୁଡା !!) ବ୍ୟାସ ଦେବଙ୍କ ମହାଭାରତରେ ମଧ୍ୟ ଅଛି ବର୍ଣ୍ଣ ଓ ରୂପର ବିନାଶକାରୀ ଜରାବସ୍ଥା, ଜରାଗ୍ରସ୍ତ ବ୍ୟକ୍ତି ଗଜରଥ ଅଶ୍ୱ ଓ ସ୍ତ୍ରୀ ମାନଙ୍କୁ ଭୋଗ କରି ପାରେ ନାହିଁ । ସର୍ବୋପରି ଯୁବାଲୋକଙ୍କୁ ଦ୍ୱାରା ପରାଭୂତ ହୁଅଇ ।''

ଏଣୁ ଗ୍ରୀକ୍‌ମାନେ ବୃଦ୍ଧାବସ୍ଥାକୁ ଘୃଣା କରୁଥିଲେ ଏବଂ ନିଜକୁ ସଦା ସୁସ୍ଥ୍ୟ, ସବଳ ଓ ସୁନ୍ଦର ରଖିବା ପାଇଁ ଖେଳ କସରତ ଉପରେ ଜୋର ଦେଉଥିଲେ । ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ସେମାନଙ୍କର ଭଙ୍ଗାରୁଜା ମୂର୍ତ୍ତି ଗୁଡ଼ିକରେ ମଧ୍ୟ ବଳିଷ୍ଠ ସ୍ୱାସ୍ଥ୍ୟ, ଅଦ୍ଭୁତ ଯୌବନ ଓ ପ୍ରଚୁର ଜୀବନୀ ଶକ୍ତିର ପରିଚୟ ମିଳିଲେ ବି ମନୁଷ୍ୟର ଯାବତୀୟ ଚେଷ୍ଟା ସାଧନାକୁ ଅଟ୍ଟହାସ କରି ବାର୍ଦ୍ଧକ୍ୟ ଯୌବନକୁ ଗ୍ରାସ କରିଛି ।

ଏଇ ବୃଦ୍ଧାବସ୍ଥା ଏଡ଼ିବା ପାଇଁ କିଏ କ'ଣ ନ କରିଛି । ସାରା ଜୀବନ ଗବେଷଣା କରି ମହର୍ଷିଚ୍ୟବନ ଚ୍ୟବନପ୍ରାଶ ଉଦ୍ଭାବନ କରିଥିଲେ । ଆଧୁନିକ ଯୁଗରେ ମଦନ ମୋହନ ମାଳବ୍ୟ କାୟାକଳ୍ପ ଚିକିତ୍ସାଧୀନ ହୋଇ ଅନ୍ଧାର ଘରେ ରହି କୃଚ୍ଛ୍ର ସାଧନା କରିଥିବା କଥା ମାତ୍ର କେତେ ବର୍ଷ ତଳର କଥା । ଆଜି ବୈଜ୍ଞାନିକ ଗଣ ନାନା ପରୀକ୍ଷା ନିରୀକ୍ଷା କରି ଅଙ୍ଗ ପ୍ରତ୍ୟଙ୍ଗ ବଦଳ କରି ଶିରା ପ୍ରଶିରାରେ ଲୁପ୍ତ ଶକ୍ତିରେ ଶକ୍ତି ସଞ୍ଚାର କରିବାରେ ବ୍ୟସ୍ତ । ମୋଟ ଉପରେ ଆଧୁନିକ ଦୁନିଆଁର ସମସ୍ତ ଅର୍ଥ ସାମର୍ଥ୍ୟ ଯେମିତି ଭାବରେ ବ୍ୟବହୃତ ହେଉଥିଲେ ବି ଶେଷ କଥା ମଣିଷକୁ ସୁଖ ସମ୍ପଦ ଦେବା ପାଇଁ କିନ୍ତୁ ଧର୍ମ, ଅର୍ଥ କାମ ମୋକ୍ଷର ହେତୁ ହେଲା ଯୌବନ । ଯୌବନ ନାହିଁ ତ ଜୀବନ ନାହିଁ ।

ପୁଣି ମହାଭାରତ ଶୁଣନ୍ତୁ । ନହୁଷନନ୍ଦନ ଯଯାତି ରୋଷ ପରବଶ ଶୁକ୍ରଙ୍କ ଦ୍ୱାରା ଅଭିଶପ୍ତ ହୋଇ (ଯଥାର୍ଥରେ ବାର୍ଦ୍ଧକ୍ୟ ଏକ ଅଭିଶାପ) ବାର୍ଦ୍ଧକ୍ୟ ପ୍ରାପ୍ତ ହେଲେ । ମାତ୍ର ଶୁକ୍ର

ତାଙ୍କୁ ଅନ୍ୟ ବ୍ୟକ୍ତିଠାରେ ଜରାକୁ ସଂକ୍ରମିତ କରିପାରିବା ଶକ୍ତି ଦେଲେ । ବିଚରା ଯଯାତି ବିକଳ ହୋଇ ପୁତ୍ରମାନଙ୍କ ପାଖରେ କହିଲେ, "ଆମ୍ଭେ ଯୌବନୋଚିତ ଉପଭୋଗରେ ପରିତୃପ୍ତ ହୋଇ ନାହୁଁ । ସହସ୍ର ବର୍ଷ ପାଇଁ ଆମ୍ଭକୁ ତୁମ୍ଭର ଯୌବନ ଦାନ କର ।" ସହସ୍ର ବର୍ଷ ! ଦିନ ଟିଏ ପାଇଁ ବା କେଉଁ ପୁଅ ତା ବାପକୁ ଯୌବନ ଦେବ ? ଯଯାତି କେବଳ ଅଭିଶାପ ଅଚ୍ଛାଡ଼ିଲେ "ତୁମ୍ଭେ ଆମ୍ଭର ହୃଦୟରୁ ଜାତ ହୋଇ ସୁଦ୍ଧା ତୁମ୍ଭର ବୟସ ପ୍ରଦାନ କଲ ନାହିଁ ଅତଏବ ତୁମ୍ଭର ବଂଶୋଚ୍ଛେଦ ହେବ ।" କେବଳ ପ୍ରିୟ ପୁତ୍ର ପୁରୁ ବାପାଙ୍କ ବୟସ ଓ ରୂପ ନେଇ ନିଜର ଯୌବନ ଦେଲେ । କିନ୍ତୁ ବୁଢ଼ା ହଜାରେ ବର୍ଷ ସୁଖ ଭୋଗ ପରେ କହିଲେ ଏ ପୃଥିବୀରେ ଯେତେ ଧନଧାନ୍ୟ ହିରଣ୍ୟ ଓ ରମଣୀ ପ୍ରଭୃତି ଅଛନ୍ତି ତଦ୍ ସମୂହ ଯଦି ଜଣେ ବ୍ୟକ୍ତି ପ୍ରାପ୍ତ ହୁଏ ତେବେ ତାହାର ତୃପ୍ତି ହେବ ନାହିଁ । ଯୌବନର କି ପ୍ରଭାବ ।

ବାସ୍ତବ ଜୀବନରେ ଯୌବନରେ କ୍ଷଣ ସ୍ଥାୟିତ୍ୱ ଉପଲବ୍ଧ କରି, କବି ମାନେ କଳ୍ପନା କରିଛନ୍ତି ଅନନ୍ତ ଯୌବନ ଉର୍ବଶୀର ।"ନହ ବଧୂ ନହ ମାତା ।" ଦେବ ଦେବତା ମାନଙ୍କ ମଧ୍ୟରେ ଅଶ୍ୱିନୀ କୁମାର, କାର୍ତ୍ତିକେୟ, ଶଚୀ ଏମିତି କେତେ ଅନନ୍ତ ଯୌବନର ଅଧିକାରୀ ଅଛନ୍ତି । କିନ୍ତୁ ମର୍ତ୍ତ୍ୟ ମଣ୍ଡଳେ ଜନ୍ମ ହୋଇ ଦେବତା ହେଲେ ବି ବୃଦ୍ଧ ହେବେ ମରିବେ ।

ସମସ୍ତେ ବୃଦ୍ଧ ହେବେ (ଯଦି ଭାଗ୍ୟରେ ଥାଏ) କାଳକ୍ରମେ । କିନ୍ତୁ ଯୁବ ବୃଦ୍ଧ ମଧ୍ୟରେ ସଂଗ୍ରାମ କାହିଁକି ? ରାମ ସହିତ ଲବକୁଶ, ଅର୍ଜ୍ଜୁନ, ବବ୍ରୁବାହନ,ସୋରାବରୁସ୍ତାମ, ବିଶୁ ଧରମା, ବୁଢ଼ା ଓ ଟୋକା ମଧ୍ୟରେ ପ୍ରାୟ ସର୍ବତ୍ର ବୁଢ଼ା ହାରିଛି କେଉଁଠି କେମିତି ପୁଅ ବାପ ହାତରେ ମରିଥିଲେ ମଧ୍ୟ । ସର୍ବତ୍ର ଯୁବ ଶକ୍ତିର ଜୟ ଜୟକାର । ତେବେ ବୁଢ଼ାକୁ ଦେଖିଲେ କାହିଁକି ଆର୍ତ୍ତନାଦ ଶଳେ ତୁମ ଜାଠ । ତୁମେ ହଠ । ବୃଦ୍ଧ ଅର୍ଥ ପ୍ରତିକ୍ରିୟାଶୀଳ, ପ୍ରଗତି ବିରୋଧୀ, ସଂସ୍କାର ବିରୋଧୀ, ନୀତି ବାଦୀ । ସିନେମାରେ ସେଇ ପରି ପ୍ରଚାର । ପୁଅ ଝିଅ କେତେ ସୁନ୍ଦର ଲୁଚା ଚୋରାରେ ନିଭୃତ ସ୍ଥାନରେ ବାଗ ବଗିଚା ସମୁଦ୍ର କୂଳରେ ଲୀଳା ଖେଳା ଧାଁ ଧପଡ଼ କରୁଥିବେ ଏବଂ ଅନିବାର୍ଯ୍ୟ ପରିଣତି ସ୍ୱରୂପ ଯେତେବେଳେ ମାଳା ବଦଳ ଅବସ୍ଥାକୁ ଆସିଯିବେ ସେତିକି ବେଳେ ବୁଢ଼ାଟାଏ ଲମ୍ବା କୋଟ ପିନ୍ଧି ବାଡ଼ି ଧରି ଢ଼ିମା ଢ଼ିମା ଆଖି ଦେଖାଇ କହିବ "ମୋହନ" । ବୁଢ଼ା ବାପ ହିଁ ଏଇଠି ସୟତାନ । ବୁଢ଼ା ମାନେ ଡରିମରି young blood ପୁରାଇବେ ପାର୍ଲାମେଣ୍ଟରେ ମନ୍ତ୍ରୀ ମଣ୍ଡଳରେ ଯଦିଓ ତାଙ୍କୁ କହୁଥିବେ ରାଜନୀତିର 'young turk, Anjoy young men' ସାହିତ୍ୟରେ ।



# ଗାନ୍ଧୀ ଦର୍ଶନ

ତିରିଶି ଜାନୁଆରୀ । ତିରିଶ ବର୍ଷ ତଳର କଥା ପୁଣି ମନେ ପଡ଼େ । ବର୍ଷ ବର୍ଷ ଧରି ସାଙ୍ଗ ସାଥୀ ପିଲାପିଲିଙ୍କି କେତେ ଥର ସେହି କଥା କହିଲିଣି । ତଥାପି ତାକୁ କହି ପୁରୁଣା ସ୍ମୃତି ଓ ଅନୁଭୂତି ରୁ ଅସାମାନ୍ୟ ଆନନ୍ଦ ପାଇବାକୁ ଇଚ୍ଛାହୁଏ । ଅନେକ ଭାବନ୍ତି ମିଛ, ମନଗଢ଼ା କଥା ବୋଲି । ଭାବିବା ସ୍ୱାଭାବିକ ମଧ । କଥା ଯେତିକି ସତ ହେବ ସେତିକି ମିଛ ପରି ଜଣାଯିବ । ବର୍ଷ ବର୍ଷ କରି ଏ ଭିତରେ ତିନୋଟି ଦଶକ ବିତି ଗଲାଣି । ସମୟର ବ୍ୟବଧାନ ଯୋଗୁଁ ଗଛ ପତ୍ର, ଘର ଦ୍ୱାର ର ରୂପ ବଦଳି ଗଲାଣି । ତେଣୁ ଘଟଣା ବିବରଣୀ ରେ ସମାନ୍ୟ ଏପାଖ ସେପାଖ ହେବ ସିନା କିନ୍ତୁ ଅନୁଭୂତି ଅବକଳ ରହିଛି । ଛାତ୍ର ଜୀବନର ଅନୁଭୂତି ମନ ଭିତରେ ବହୁତ ଜୋର ଦାଗ ଆଙ୍କି ଯାଏ । ସହଜରେ ତାହା ଲିଭେ ନାହିଁ ।

କଟକ ଷ୍ଟେସନ । ଆଜିର କଟକ ଷ୍ଟେସନର ବ୍ୟାପ୍ତି, ଉନ୍ନତି ଓ ପରିପାଟୀ ଭିତରୁ ସେ କାଳର ଷ୍ଟେସନଟିକୁ ଖୋଜି ପାଇବା ଯେପରି କାଠିକର ପାଠ, ଆଜିର 'ମୁଁ' ଭିତରେ ସେ କାଳର 'ମୁଁ' କୁ ବାହାର କରିବା ଆହୁରି କଷ୍ଟସାଧ ବ୍ୟାପାର । ଉଭୟର ଗୁଣାତ୍ମକ ଓ ପରିମାଣାତ୍ମକ ପରିବର୍ତ୍ତନ ବହୁତ । ଗୋଟିକର ଆକାରରେ ଯେତିକି ପରିବର୍ତ୍ତନ ଅନ୍ୟଟିର ପ୍ରକାରରେ ସେତିକି ବିବର୍ତ୍ତନ ଆସିଛି । ଗୋଟିକର ଯେତିକି ଉନ୍ନତି ଅନ୍ୟଟିର ସେତିକି କ୍ଷୟ, ଅବନ୍ନତି ଓ ଦୁର୍ଯୋଗ ।

ଦୁଇ ବା ତିନୋଟି କୋଠରୀ । ଗୋଟିଏ ଟିକଟ୍ ଘର । ଅନ୍ୟଟି ଆର ଏମ୍.ଏସ୍. । ଦୁଇ କୋଠରୀ ମଝି ରାସ୍ତାଟି ଯାତ୍ରୀଙ୍କ ବିଶ୍ରାମ ସ୍ଥାନ । ନାଲି ଗୋଡ଼ି ବିଛା ପ୍ଲାଟ୍ ଫର୍ମ, ଦୁଇ ତିନୋଟି ଛୋଟ ଗୁଆ ଜାତୀୟ ଗଛ । ପାଖକୁ ଲାଗି ଦୁଇ ତିନୋଟି ଛୋଟ ଗୁଆ ଜାତୀୟ ଗଛ । ପାଖକୁ ଲାଗି ଦୁଇ ତିନୋଟି କିରାସିନି ବତୀ ଖୁଣ୍ଟ । ଏଇ ହେଲା ସେ କାଳର କଟକ ଷ୍ଟେସନ ।

ତିନି ପିସ୍ତଲ ମାର୍କା ମନ୍ଚେଷ୍ଟରର କୁଞ୍ଚକରା ଧୋତି, ତାରିଆ ବିଲାତି କନାର ପୁରାହାତ ମେଞ୍ଚ ବୋତାମ ଲଗା ବେକବନ୍ଦ ସାର୍ଟ, ଦଶ ଅଣିଆ କେନ୍‌ଭାସ୍ ଯୋତା, ଏସବୁ ପୋଷାକ ପିନ୍ଧା ଅଜାତ ଶ୍ମଶ୍ରୁ, ଆଇ.ଏ. ପରୀକ୍ଷାର୍ଥୀ ରେଭେନ୍‌ସା କଲେଜ ପ୍ରାଚୀ ଛାତ୍ରା ବାସର ଜନୈକ ଛାତ୍ର । ଏଇ ହେଲା ସେ କାଳର 'ମୁଁ' ।

ସେ କାଳରେ ବିହାରରେ ଭୂମିକମ୍ପ ହେଲେ ଓଡ଼ିଶାର କଲେଜ ପରୀକ୍ଷା ଘୁଞ୍ଚି ଯାଉଥିଲା । ରେଭେନ୍‌ସା କଲେଜର ପରୀକ୍ଷା ଫଳ ପାଟନାରେ ପ୍ରକାଶିତ ହେଉଥିଲା । ସରସ୍ୱତୀ ପୂଜା

ସରିଥାଏ । ପରୀକ୍ଷାକୁ ଦୁଇ ତିନି ଦିନ ଥାଏ । ଯେନ ତେନ ପ୍ରକାରେଣ ଠାକୁର ବିସର୍ଜନ କରିବାକୁ ଆମେ ଉଦ୍ୟମ କରୁଥାଉ । ସେତିକି ବେଳେ ସମ୍ବାଦ ପହଞ୍ଚିଲା ପରୀକ୍ଷା ଘୁଞ୍ଚିଗଲା ଖୁବ୍ ଦୂରକୁ । ବିସର୍ଜନ ଉତ୍ସବ ଦ୍ୱିଗୁଣିତ ଉତ୍ସାହ ଓ ଯାକ ଯମକରେ ସମାହିତ ହେଲା । ଦିନେ ଦି ଦିନ ଭିତରେ ବହିପତ୍ର ବାନ୍ଧି ସମସ୍ତେ ଯେଝା ଘରକୁ ଚାଲିଗଲେ । ସେତେବେଳେ କିନ୍ତୁ କେହି ମେ', ଜୁନ୍ ମାସର କଟକ ସହରର ଟାଣୁଆ ଖରା ଦିନ ଗୁଡ଼ାକୁ କଳ୍ପନା କରି ପାରୁନଥିଲେ । ଆଦ୍ୟ ମେ ମାସରେ ଫେରି ଦେଖିଲୁ ଧୁ ଧୁ ହୋଇ ଗରମ ପବନ । କାଠଯୋଡ଼ୀ ପଟୁ ଧୂଳି ବାଲି ଆଣି ଘାସ ନଥିବା କଲେଜ ପଡ଼ିଆକୁ ସାହାରାରେ ପରିଣତ କରିବାରେ ଲାଗିଛି । ସୁରେଇକୁ ସୁରେଇପାଣି (ସେତେବେଳେ କଲେଜ ପିଲା ଭିତରେ ଚା ପ୍ରଚଳନ ପ୍ରାୟ ନଥିଲା) ଭାମା ବରଫ କଳର ବରଫ ଦିଆ ଅନୁ ଦୋକାନ ର ଗ୍ଲାସକୁ ଗ୍ଲାସ ଗୋଲାପ ଜଳ, ସରବତ୍, ଚଉଧୁରୀ ବଜାରର ଗୁଡ଼ାଖୁ, ଗୁଡ଼ାଏ ଲମ୍ବା ଲମ୍ବା ଗାଇ ମାର୍କା ବିଡ଼ି (ପଚିଶିର ବର୍ଷର ଉଭୟ ବ୍ୟାଧି ବର୍ଷେ ହେଲା ପୂରା ଛାଡ଼ି ଯାଇଛି) ସମ୍ବଳ ବା ଅବଲମ୍ବନ ପରି ଅପେକ୍ଷା କରି ଥାଉ ଜୁନ୍ ମାସର ସେଇ ବିଚାର ଦିବସକୁ ।

୧୯୩୪ ସାଲ । ବିହାର ଭୂମିକମ୍ପ ଉପରେ ଗାନ୍ଧିଜୀଙ୍କ ମନ୍ତବ୍ୟ ଦେଶବାସୀଙ୍କ ମନରେ ଆତଙ୍କ ଓ ଅସନ୍ତୋଷ ଆଣିଥାଏ । ସେ କହିଥାନ୍ତି ଅସ୍ପୃଶ୍ୟତା ଓ ଛୁଆଁ ଅଛୁଆଁ ବିଚାର ଥିବାରୁ ବିହାର ଉପରେ ଏପରି ବିପତ୍ତି ପଡ଼ିଲା । ବିଚିତ୍ର କଥା ! କାଶ୍ମୀରରୁ କନ୍ୟା କୁମାରୀ ସର୍ବତ୍ର ଭେଦଭାବ ରହିଛି; ବିହାର ଉପରେ ଏ ମାଡ଼ କାହିଁକି ? ତେବେ ସେ କାଳରେ ଲୋକମାନଙ୍କର ଗାନ୍ଧିଜୀଙ୍କ ଉପରେ ଏପରି ଆସ୍ଥା ଓ ବିଶ୍ୱାସ ଥିଲା ଯେ ସେମାନେ ତାଙ୍କ ଦର୍ଶନ ନ ବୁଝିଲେ ବି ଦର୍ଶନ ପାଇଁ ସଦା ବ୍ୟାକୁଳ ଓ ଆଗ୍ରହୀ ଥିଲେ । କ୍ରମେ ମନୁଷ୍ୟ ସ୍ତରରୁ ଅତିମାନବ ସ୍ତରକୁ ବା ବାସ୍ତବ ରାଜ୍ୟରୁ କିମ୍ବଦନ୍ତୀ ରାଜ୍ୟକୁ ଉଠି ଯାଉଥିଲେ । ସେ ଓଡ଼ିଶା ପ୍ରତି ବଡ଼ ଦୟାର୍ଦ୍ର ଓ ସହାନୁଭୂତିଶୀଳ ଥିଲେ ଏବଂ ଅନ୍ୟାନ୍ୟ ପ୍ରଦେଶର ଲୋକେ ଯେତେ ଥର ତାଙ୍କ ଦର୍ଶନର ସୁବିଧା ସୁଯୋଗ ପାଉଥିଲେ ଓଡ଼ିଶା ବାସୀଙ୍କ ଭାଗ୍ୟରେ ତାହା ନଥିଲା ।

ସମ୍ବାଦ ଆସିଲା ଗାନ୍ଧୀ କଟକଦେଇ ରେଳରେ ପୁରୀ ଆଡ଼କୁ ଯିବେ । ଅନୁଗୁଳରୁ ତାଳଚେର ଗାଡ଼ିରେ ଆସୁଛନ୍ତି । ଏ ଗାଡ଼ିଟିକୁ ଆମେ ଭାରି ଭଲ ପାଉ ଥିଲୁଁ । ପ୍ରାୟ ପ୍ରତିଦିନ ସଞ୍ଜରେ ଗାଡ଼ି ସମୟକୁ ଷ୍ଟେସନକୁ ଯାଉଥିଲୁଁ । ତା ଛଡ଼ା ତାଳଚେର, ଢେଙ୍କାନାଳ କଥା ସେତେବେଳେ କଟକରେ ବରାବର ପଡୁଥିଲା । ଆଜିକାଲି ଯେପରି ବଡ଼ ବଡ଼ ହୋଟେଲ ଆଡ଼କୁ ଚାହିଁଲେ ଦକ୍ଷିଣ କଥା ମନେ ପଡ଼େ ସେତେବେଳେ କୁଲି ମଜୁରିଆ, ଚାକର ବାକର, ଟଣା ରିକ୍ସା ବାଲା ସବୁ ଏ ଦୁଇ ଗଡ଼ଜାତିର । କୋଇଲା କମ୍ପାନୀ ଛଡ଼ା ଗୋଟାଏ ଦିଆସିଲି କମ୍ପାନୀ ବଡ଼ ବଡ଼ ଦୁଇ କିସମର ଅଚଞ୍ଚା ଦିଆସିଲି ବାହାର କରିଥାଏ । ଛୋଟଟିକୁ ଆମେ ନାମ ଦେଉ ଥାଉଁ ତାଳଚେର ସୁଟକେଶ ଓ ବଡ଼କୁ ତାଳଚେର ଟ୍ରଙ୍କ ବୋଲି ।

ସମସ୍ତଙ୍କ ମୁହଁରେ ଏକ କଥା । ଗାନ୍ଧିଜୀ ଆସିବେ । କିନ୍ତୁ ତାଙ୍କୁ ଦେଖିବାକୁ ଯିବା କ'ଣ ଏତେ ସହଜ କଥା ? ବ୍ରିଟିଶ ଅତ୍ୟାଚାର ଓ ସାମ୍ରାଜ୍ୟବାଦର ସେ କାଳ ହେଲା

ଚୂଡ଼ାନ୍ତ ଅବସ୍ଥା । ପାଞ୍ଚବର୍ଷ ପୂର୍ବେ ଗାନ୍ଧିଜୀଙ୍କ ଗିରଫର ପ୍ରତିବାଦ କରି ସ୍କୁଲରେ ଧର୍ମଘଟ କରିବାର ଚେଷ୍ଟା କରିଥିଲୁଁ । ବୃତ୍ତି କଟାଯିବ ବୋଲି ଧମକରେ କ୍ଲାସରେ ଯୋଗ ଦେଲୁଁ । 'ଜନ୍ମାଷ୍ଟମୀ' ବୋଲି କବିତାରେ ବ୍ରିଟିଶ ସରକାରକୁ କଂସ ସହିତ ତୁଳନା କରିଥିବାରୁ ହାତ ଲେଖା ପତ୍ରିକାର ଗୋଟାଏ ପୃଷ୍ଠା ଅଠା ଦେଇ ବନ୍ଦ କରିବାକୁ ପଡ଼ିଥିଲା । ମାତ୍ର କେତେ ମାସ ତଳେ ସାମନା କଲେଜ ଛକରେ ପୋଲିସ ଚାରି ପାଞ୍ଚ ଜଣ ଦଶ, ବାର ବର୍ଷର ପିଲାଙ୍କୁ ମାଡ଼ ମାରି ଜଖମ କରି ଜେଲ୍‌କୁ ନେଇଗଲା । ସେମାନେ ବିଲାତୀ ଲୁଣ ନେଉଥିବା ଶଗଡ଼ଟା ଆଗରେ ଗଡ଼ ପକାଇ ଅଟକାଇ ବାର ଚେଷ୍ଟା କରୁଥିଲେ । ଗୋଟାଏ ପାନ ଦୋକାନୀ ସେମାନଙ୍କୁ ପାଣି ଗ୍ଲାସେ ଯାଚି ଲାଠି ମାଡ଼ ଖାଇବାର ମଧ ଆଖି ଆଗରେ ଦେଖୁଛୁଁ । ବୋଡ଼ିଂ ସୁପାରିଟେଣ୍ଡେଣ୍ଟ କ'ଣ ଖବର ପାଇନଥିବେ ଗାନ୍ଧୀ ବୋଡ଼ିଂ ପାଖ ଷ୍ଟେସନରେ ପହଞ୍ଚିବେ ବୋଲି ? ପିଲେ ଷ୍ଟେସନକୁ ଗଲେ ତାଙ୍କ ଚାକିରୀ ଉପରେ କ'ଣ ବାଧା ଆସିବ ନାହିଁ ? ତଥାପି ସ୍କୁଲ, କଲେଜ ପିଲାଏ ଯୁଗେ ଯୁଗେ ଅଭିଭାବକ, କର୍ତ୍ତୃପକ୍ଷଙ୍କ ଆଖିରେ ଧୂଳି ଦେଇ ଆନନ୍ଦ ପାଇଛନ୍ତି । ଅସାଧ ସାଧନ କରି ସ୍ଥଳେ ସ୍ଥଳେ ଯଶ ଖ୍ୟାତି ବି ଲଭିଛନ୍ତି ।

ଖରାଦିନ । ସନ୍ଧ୍ୟା ପ୍ରାୟ ସାତ କି ଆଠଟା । ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଲଣ୍ଠନ ବତୀରେ ଈଷତ୍ ଆଲୋକିତ କଟକ ଷ୍ଟେସନ । ଜନ ସମାଗମ ବି ସିମିତି ଉଲ୍ଲେଖ୍ୟ ଯୋଗ୍ୟ ନାହିଁ । ଗାଡ଼ି ଆସିବାକୁ ଅଳ୍ପ ସମୟ ବାକୀ ଅଛି । ପୂର୍ବ ପାଖ ଲାଇନ୍‌ରେ ମାଲ୍ ଗାଡ଼ିଟା ଏପାଖ ସେପାଖ ହେବାକୁ ଲାଗିଲା । ଲୋକେ ଯେପରି ସେ ପାଖରୁ ଷ୍ଟେସନକୁ ଆସି ନ ପାରନ୍ତି ସେଥିପାଇଁ ବୋଧ ହୁଏ ଏ ବ୍ୟବସ୍ଥା ।

ତାଳଚେର ଗାଡ଼ି ପ୍ଲାଟଫର୍ମ ଭିତରକୁ ଆସିଲା । ସମବେତ ଜନତାର ସ୍ୱତଃସ୍ଫୂର୍ତ୍ତ ଜୟଧ୍ୱନି 'ଗାନ୍ଧିଜୀ କି ଜୟ' ପ୍ରାୟଶଃ ନୀରବ ରେଳ ଷ୍ଟେସନକୁ ଅଳ୍ପ ମୁଖରିତ କଲା । ଗାଡ଼ି ପୁରାପୂରି ଛିଡ଼ା ନ ହେଉଣୁ ଲୋକେ ଆଗପଛ ହୋଇ ଲୋକେ ଧାଁ-ଦଉଡ଼ କରିବାକୁ ଲାଗିଲେ । ଗାନ୍ଧିଜୀ ଟ୍ରେନର ତୃତୀୟ ଶ୍ରେଣୀରେ ଯାଆସ କରିବା କଥା ସମସ୍ତଙ୍କୁ ଜଣା । ହଠାତ୍ ଗୋଟିଏ ଡବା ଆଗରେ ଜୟ ଧ୍ୱନି ଶୁଣି ସମସ୍ତେ ସେ ଆଡ଼କୁ ଦୌଡ଼ିଲେ । ଗାନ୍ଧିଜୀ ବାହାରିବାକୁ ଅଳ୍ପ ଡେରି ହେଲା । ଲୋକେ ତୁହାକୁ ତୁହା ଜୟ ଧ୍ୱନି କରିବାରେ ଲାଗିଥାନ୍ତି । କେହି କେହି ଝରକା ଦେଇ ଡବା ଭିତରର ଆସବାବପତ୍ର ଦେଖୁଥାନ୍ତି-। ଭିତରେ ମାଠିଆ, ତୁଳସୀ ଗଛ, ଛାଞ୍ଚୁଣୀ, ସଅପ ଆଦି ଜିନିଷ କେବଳ ଶିବ, ଶ୍ମଶାନ ବୈରାଗ୍ୟ ତ୍ୟାଗର ପ୍ରତୀକ ପରି ଥାଆନ୍ତି । ଡବା ଭିତରେ କିଞ୍ଚିତ୍ ଫାଙ୍କା ଜଣା ପଡୁଥାଏ । ଯାତ୍ରୀ ସଂଖ୍ୟା ଖୁବ୍ କମ୍ ବୋଲି ମନେ ହେଉଥାଏ ।

ଗାନ୍ଧିଜୀଙ୍କ ସମ୍ବର୍ଦ୍ଧନା ପାଇଁ ଫୁଲମାଳ, ବନ୍ଦାପନା, ମାନପତ୍ର ବା ଅନ୍ୟ କିଛି ବ୍ୟବସ୍ଥା ନ ଥିଲା । ଅଭ୍ୟର୍ଥନାର କୌଣସି ଲକ୍ଷଣ ବା ସୂଚନା ମଧ ମିଳୁନଥାଏ । ଝରକା ଦେଇ ଏତିକି ବେଳେ ଗାନ୍ଧିଜୀଙ୍କ ମୁହଁ ଦିଶିଲା । ଆନନ୍ଦ ବିହ୍ୱଳ ହୋଇ ସମସ୍ତେ ପୁଣି ଚିତ୍କାର କଲେ -

'ଜୟ ଗାନ୍ଧିଜୀ ଙ୍କ ଜୟ ।' ପ୍ରଶାନ୍ତ ମୁଖ ମଣ୍ଡଳ, ଷ୍ଟିଲ୍‌ଫ୍ରେମ୍‌ର ଚଷମା ଭିତରୁ ମଳିନ ଆଲୋକରୁ ମଧ୍ୟ ଚକ୍ଷୁର ଜ୍ୟୋତି ଫୁଟି ବାହାରୁ ଥାଏ । ଦେହ କ୍ଷୀଣ, ଅନାବୃତ, ବାହୁ ଆଜାନୁ ଲମ୍ବିତ । ଜନତାର ଅଭିନନ୍ଦନର ଉତ୍ତରରେ ଗାନ୍ଧିଜୀଙ୍କ ପ୍ରଥମ ମୁଖ ନିଃସୃତ ଗମ୍ଭୀର ବାଣୀ ହେଲା, ''ରାତ୍ରୀ କାଳରେ ଗଣ୍ଡଗୋଳ କରିବା ଧର୍ମଶାସ୍ତ୍ରରେ ନିଷେଧ ଅଛି ।'' ଦଣ୍ଡେ ପରେ ପୁଣି ଶୁଣାଗଲା ''ରାତ୍ରୀ ର ନୀରବତା ଭଙ୍ଗ କରିବା କାହାରି ଅଧିକାର ନାହିଁ ।'' କି ଅଦ୍ଭୁତ କଥା ! ଆମେ ତାଙ୍କରି ଜୟଗାନ କରୁଁଛେ ଅଥଚ ସେ ଆମକୁ ଭର୍ତ୍ସନା କରୁଛନ୍ତି ।

ପ୍ଲାଟଫର୍ମ ବତୀ ଠାରୁ ଦୂରରେ ଡବାଟି ଥିବାରୁ ଗାନ୍ଧିଜୀଙ୍କ ମୁହଁ ସ୍ପଷ୍ଟ ଦିଶୁ ନଥାଏ । ତେଣୁ କେହି ଜଣେ କର୍ମୀ ବୃଦ୍ଧଟିଏ ପହଞ୍ଚି ଗୋଟାଏ ବାଉଁଶ ଠେଙ୍ଗା ଅଗରେ ଲଣ୍ଠନଟାଏ ଗାମୁଛାରେ ବାନ୍ଧି ତାଙ୍କ ମୁହଁ ପାଖରେ ଟେକି ଧରିଲେ । କିରୋସିନିର ତୀବ୍ରଗନ୍ଧ ବା ଆଲୁଅର ତୀବ୍ରତା ତାଙ୍କୁ ବିଚଳିତ କଲା ପରି ମୋଟେ ଜଣାଗଲା ନାହିଁ ।

ଗାନ୍ଧିଜୀ କହିଲେ ମୁଁ ହରିଜନ ଆନ୍ଦୋଳନରେ ବାହାରିଛି । ପୁରୀ ଯାଉଛି । ଫେରିବି ପୁଣି ଏଇ ବାଟେ । ହରିଜନ ପାଣ୍ଠି ପାଇଁ ଅର୍ଥ ଦରକାର । ଆପଣମାନଙ୍କ ଶକ୍ତି ମୁତାବକ ଦାନ କରନ୍ତୁ । '' ଘଣ୍ଟେ ପରେ ପୁଣି କହିଲେ ଓଡ଼ିଶା ବଡ଼ ଗରିବ ଦେଶ । ଓଡ଼ିଶା ବାସୀଙ୍କ ପାଖରୁ ମୁଁ ଟଙ୍କା, ଅଧୁଲି, ସୁକି, ଦୋଅଣି ଚାହୁଁ ନାହିଁ । ମୁଁ ସେମାନଙ୍କ ଠାରୁ ଚାହେଁ ପଇସା, ଅଧଲା, ପାହୁଲା । ଏତିକି କହି ଲମ୍ବା ହାତଟି ପତାଇ ଛିଡ଼ା ହୋଇ ରହିଲେ । ଯାହା ପାଖରେ ଯାହା ଥିଲା । ତାହା ଦେବା ପାଇଁ ସମସ୍ତେ ଆଗଭର ହେଲେ । ଟିକିଏ ବିଶୃଙ୍ଖଳା ହେଲା । ଠେଲା ପେଲାରେ ଠେଙ୍ଗା ଅଗରେ ଝୁଲୁଥିବା ଲଣ୍ଠନଟି ତଳେ ପଡ଼ି ଚୁରମାର ହୋଇଗଲା । ଭଙ୍ଗାକାଚ ଅନ୍ତର କରି,କର୍ମୀମାନେ ହାତକୁ ହାତ ଧରି, ଜଣ ଜଣ କରି ଲୋକ ଗାନ୍ଧିଜୀ ପାଖକୁ ଛାଡ଼ିଲେ । ଜଣେ ଟର୍ଚ୍ଚ ଆଲୁଅ ଗାନ୍ଧିଜୀଙ୍କ ମୁହଁକୁ ପକାଇଥାନ୍ତି । ତଥାପି ମୁହଁରେ ଅସ୍ୱସ୍ତିଭାବ ବା ବିରକ୍ତି ନାହିଁ ।

ତାପରେ ଜଣକୁ ଜଣ ଯାଇ ପଇସା ପତ୍ର ହାତରେ ଦେଉଥାନ୍ତି ଓ ସେ ହାତ ସ୍ପର୍ଶ କରି ନିଜକୁ ଧନ୍ୟ ମନେକରୁଥାନ୍ତି । କେହି କେହି କହୁଣୀ ପର୍ଯ୍ୟନ୍ତ ହାତକୁ ଆଉଁଷି ଯାଉଥାନ୍ତି । ତାଙ୍କ ପରବର୍ତ୍ତୀ ଲୋକେ ହାତ ପର୍ଯ୍ୟନ୍ତ ଆଉଁଷିବାକୁ ଲାଗିଲେ । ଗାନ୍ଧିଜୀ ନିର୍ବିକାର, ଅବିଚଳିତ । ଏମିତି ସୁଯୋଗ ଆସିବ ଜାଣିଛି କିଏ ? ପାଖରେ ଅଧଲା, ଛଦାମ୍ କିଛି ନାହିଁ । ''ରିକ୍ତ ହସ୍ତେ ନ ଯେ ଯାୟତେ ରାଜାନଂ ଦେବଂ ଗୁରୁମଂ ।'' ଯାହା ଠି ଯାହାଥିଲା ସେମାନେ ସବୁ ଦେଇ ସାରିଲେଣି । ଗାନ୍ଧିଜୀଙ୍କୁ ଦେଲା ବେଳେ ଗଣା ଗୁନ୍ଥା ବା ହିସାବ ନିକାଶ କରିବାକୁ ବେଳ ନଥାଏ ।

ହଷ୍ଟେଲକୁ ଫେରି ଯାଇ ପଇସା ଆଣିବାକୁ କ'ଣ ବେଳ ପାଇବ ? ଟ୍ରେନ୍ କ'ଣ ଏତେ ସମୟ ରହିବ ? ଦଉଡ଼ିକି ପଡ଼ିଆ ଭିତର ଦେଇ ଧଇଁ ସଇଁ ହୋଇ ହଷ୍ଟେଲ ଫାଟକ ନିକଟରେ ପହଞ୍ଚିଛି ଦୈବାତ୍ ଜଣେ ବନ୍ଧୁଙ୍କୁ ଭେଟିଲି । ମାଗି ଦେଲି ତାଙ୍କୁ ପଇସା । ଯାହା

ଦେଲେ ପକେଟରେ ପୂରାଇ ଚାଉଳିଆ ଗଞ୍ଜ ପୋଷ୍ଟ ଅଫିସ ପାଖ ଦେଇ ଷ୍ଟେସନ ରୋଡ଼ରେ ଦଉଡ଼ିବାକୁ ଲାଗିଲି । ବର୍ଦ୍ଧମାନ କୋଠା ପାରି ହୋଇ ମୋଡ଼ ପାଖରେ ପହୁଞ୍ଚିଛି ଦେଖିଲି ଟ୍ରେନ ଗାର୍ଡ଼ ଡବାଟିକୁ । ପାଇଯିବି ବୋଧ ହୁଏ । ରାସ୍ତାର ଦୁଇ ପାଖରେ ଆଣ୍ଠୁଏ ଉଚ୍ଚର ପଥର ଗୁଡ଼ାକ ମଣିଷ ବସିଲା ପରି ଦିଶୁଥାନ୍ତି । ସେଇଠି ବାଟ ଥାଏ ସିଧା ପ୍ଲାଟଫର୍ମକୁ ଯିବାର । ସେଠି ପଶୁଛି । ହଠାତ୍ ଅତିର୍କିତ ସେଇଠି ପହଞ୍ଚିଗଲା ଜୋରରେ ଗୋଟାଏ ଘୋଡ଼ାଗାଡ଼ି । ଡରରେ ଝୁଣ୍ଟି ପଡ଼ିବାରୁ ଘୋଡ଼ା ପିଠିରେ ହାତ ପଡ଼ିଗଲା । ଘୋଡ଼ାଟା ମଧ୍ୟ ଛିଡ଼ା ହୋଇଯିବାରୁ ବର୍ତ୍ତିଗଲି । ଖୁରା ଓ ଗାଡ଼ି ଚକ ତଳେ ମକଚି ଯିବାରୁ ବଞ୍ଚିଗଲି ।

ସେତେବେଳକୁ ଆଉ ଭିଡ଼ ନାହିଁ । ତେଣେ ସବୁଜ ଆଲୁଅ ଇଞ୍ଜିନ୍ ଆଗରେ ଦିଶିଲାଣି । ଗାଡ଼ି ଛାଡ଼ିବାକୁ ସମସ୍ତଙ୍କ ଅପେକ୍ଷା । ଗାନ୍ଧୀ କିନ୍ତୁ ସେମିତି ହାତ ପାତି ଛିଡ଼ା ହୋଇ ରହିଥାନ୍ତି । ଦଉଡ଼ି ଯାଇ ଯାହା ନେଇଥିଲି ଅନୁମାନରେ ତିନି ଚାରୋଟି ପଇସା ହାତରେ ଥୋଇ ଦେଲି । ତାପରେ ସାହସ ବାନ୍ଧି ପାପୁଲିରୁ କାନ୍ଧ ପର୍ଯ୍ୟନ୍ତ ଲମ୍ବା ହାତଟାକୁ ଆଉଁଷି ନେଇଗଲି । ବିରକ୍ତି, ଆପତ୍ତି, ଅଭିଯୋଗ ଲେଶ ମାତ୍ରାରେ ନାହିଁ । ଯେବେ ହାତ ଛୁଇଁ ଆଉଁଷି ଦେଲେ ଆନନ୍ଦ ପାଉଛନ୍ତି ତେବେ ବର୍ଷ ବର୍ଷ ଧରି ଝୁଲାଇ ରଖିବାରେ ତାଙ୍କର କ୍ଲାନ୍ତି, ଅବସାଦ ରହିବ ନାହିଁ । କେତେ ମାସ ପୂର୍ବେ ଶ୍ରୀ କ୍ଷେତ୍ରରେ ପ୍ରଥମ ଜଗନ୍ନାଥଙ୍କୁ ଦର୍ଶନ କରି ସ୍ପର୍ଶ କଲା ବେଳେ ଯେଉଁ ପୁଲକ ଓ ଅଲୌକିକ ଆନନ୍ଦ ପାଇଥିଲି ପୁଣି ତାହା ଅବିକଳ ପାଇଲା ପରି ଜଣାଗଲା । ରୋମାଞ୍ଚକର ଯାଦୁକାରୀ ସେ ସ୍ପର୍ଶ ଅତୀତରେ ସେମିତି ସ୍ପର୍ଶ କୁଷ୍ଠ ରୋଗୀକୁ ମୁକ୍ତ କରିଛି । ପଥରକୁ ବି ପ୍ରାଣବନ୍ତ କରିଛି ।

ନନ୍ଦ ଓ ଜ୍ୟୋତି ମୁହଁରୁ କଥା ସରି ନଥିବ ଯାଇ ପହଞ୍ଚିଲି ହଷ୍ଟେଲରେ । ଗୋଡ଼ ହାତ ଧୋଇ ରୁମ୍‌କୁ ଯିବି ବୋଲି ଏଗାର ନମ୍ବର ରୁମ୍ ସମ୍ମୁଖ ପାଣିକଳ ଖୋଲି ଗୋଡ଼ ବଢ଼ାଇଲା ବେଳକୁ, ଏ କ'ଣ ? ବାଁ ଗୋଡ଼ରେ ଏତେ ରକ୍ତ କୁଆଡୁ ଆସିଲା ? ଦେଖିଲି ବୁଢ଼ା ଆଙ୍ଗୁଠି ଛେଚି ହୋଇ ନଖଟା ନଷ୍ଟ ହୋଇ ଯାଇଛି ଓ ରକ୍ତ ପିଚ୍ ପିଚ୍ ହୋଇ ବାହାରୁଛି । ଏତେ ସମୟ ଧରି ଯନ୍ତ୍ରଣା ନଥିଲା କିପରି ? ଦେହ ବୋଧ ହୁଏ ମନର ଅଧୀନ । ପ୍ରେମ ଐଶରିକ ବା ମାନୁଷିକ ଯାହା ହେଲେ ମଧ୍ୟ ପ୍ରେମାନ୍ୱିତ ମନ ଦେହର ଦାସତ୍ୱ ସ୍ୱୀକାର କରେ ବୋଧହୁଏ । ଆଦର୍ଶ ମଜ୍ଜିତ ମଣିଷର ଶରୀର ଯନ୍ତ୍ରଣା ବିମୁକ୍ତ । ପରେ ନୂଆ ହୋଇ ନଖଟି ଅବଶ୍ୟ ଉଠିଲା କିନ୍ତୁ ମଝିରେ ଗୋଟାଏ ଫଟା ଦାଗନେଇ । ସେ ଫଟା ନଖଟି ମୋର ସେ ରାତିର ସ୍ମାରକୀ । କେହି ପିଲା ପିଲି ନଖ କଥା ପଚାରିଲେ ମୁଁ ସମସ୍ତ ଘଟଣା କହେ ଓ ପୂଣ୍ୟ ସ୍ପର୍ଶ ର ଅନୁଭୂତି ପୁଣି ଫେରି ପାଏଁ ।



# ଦ୍ୱିତୀୟ

ପ୍ରାୟ ସପ୍ତାହେ ବିତିଗଲା । ଖବର ଆସୁଥାଏ । (ଖବର କାଗଜ ଜରିଆରେ କି ଲୋକ ମୁଖରେ ମନେ ନାହିଁ ।) ଗାନ୍ଧିଜୀଙ୍କ ଅନୁମତି ନ ନେଇ କସ୍ତୁରବା ଜଗନ୍ନାଥ ଦର୍ଶନ କରିବାରୁ ଦୁହିଁଙ୍କ ମଧ୍ୟରେ ରାଗ, ରୁଷା । ଗାନ୍ଧିଜୀ ଜଗନ୍ନାଥ ଦର୍ଶନକୁ ଆଉ ଗଲେ ନାହିଁ । ପୁରୀଠାରୁ ପଦଯାତ୍ରା ଆରମ୍ଭ ହେଲା । ଶ୍ରୀମତୀ ମୀରା ବେନ୍ ପାଦରେ ଫୋଟକା ସତ୍ତ୍ୱେ ପଟି ବାନ୍ଧି ଚାଲିଛନ୍ତି । ହିନ୍ଦୁ ମହାସଭା ତରଫରୁ ପଣ୍ଡିତ ଲାଲନାଥ ବୋଲି ଜଣେ ସନାତନୀ ଗାନ୍ଧିଜୀଙ୍କ ପଛେ ପଛେ ଲାଗି ରହିଛନ୍ତି ଇତ୍ୟାଦି ।

ମଇ ମାସ ଷୋହଳ ତାରିଖ । ଗାନ୍ଧୀ କାଜି ଚଟାଣରେ ପହଞ୍ଚିଛନ୍ତି । ସେଠି ଝିଅଟିଏ ମାନପତ୍ର ଦେଇ ମାନପତ୍ର ସହିତ ସୁନା ଚୁଡ଼ି ଦେଇ ଦେଇଛି । ବେଳ ବୁଡ଼ୁକୁ ଗାନ୍ଧିଜୀ କଟକ ଆସିବେ ଏବଂ ବାଟରେ କାଠଯୋଡ଼ି ବାଲିରେ ବକ୍ତୃତା ଦେବେ ।

ପୁଣି ଗାନ୍ଧି ଦର୍ଶନ ପାଇଁ ଏକ ସୁଯୋଗ । ଅଙ୍ଗୁଳିର ଘାଆ ହୁଏତ ପଚିଛି । ପଟି ବନ୍ଧା ହୋଇଛି ତଥାପି ପ୍ରାୟ ଚାରିଟା ବେଳୁ ନଈ ବାଲିରେ ଉପସ୍ଥିତ । ପାଖରେ ପାଣି ଥିବାରୁ ଖରା ଟାଣ ବାଧୁ ନଥାଏ । ସଭାର ଆୟୋଜନ ବୋଲି କିଛି ନାହିଁ । ଟେବୁଲ ଗୋଟାଏ ଅଧେ ଥିଲା ପରି ମନେ ପଡୁଛି । ଦଉଡ଼ି ଟାଣି ସ୍ତ୍ରୀ, ପୁରୁଷଙ୍କ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ କରାଯାଇଛି । ଲୋକ ଚାରି ପାଞ୍ଚଶ ହୋଇଥିବେ । ପାଖରେ ନିର୍ମଳ ସଲୀଳା, ଅଗଭୀରା, ଶୀର୍ଣ୍ଣକାୟା କାଠ ଯୋଡ଼ି ଅଦୂର ପଠାରେ ଅରଖ ଗଛରେ ପେଣ୍ଠା ପେଣ୍ଠା ଫୁଲ, କଟକ ପଟେ ବନ୍ଧର ସାରି ସାରି ପାହାଚ ଓ ଦୂରରେ ନୀଳ ନରାଜ । ଖରା ନରମ ହେଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଥାନ୍ତି କାଜି ପାଟଣା ଆଡ଼କୁ । ଦେଖାଗଲା ସେପଟର ଅନୁଚ୍ଚ ନଦୀ ବନ୍ଧରୁ ତଳକୁ ଆସୁଛନ୍ତି ଦଳେ ଲୋକ । ତାଳ ପତ୍ରର ଛତାଟି ଦୂରରୁ ମଧ୍ୟ ଦିଶୁଛି । କିଛି ସମୟ ପରେ ଗାନ୍ଧିଜୀଙ୍କୁ ମଧ୍ୟ ଚିହ୍ନି ହେଲା ସେଇ ଛତା ପାଖରେ । ଦୂରରୁ ଗାନ୍ଧିଜୀଙ୍କୁ ଚିହ୍ନିବାରେ ଅସୁବିଧା ନାହିଁ । ପଦଯାତ୍ରା ବେଳେ ସମତା ଓ ଛନ୍ଦରଖି ଡେଇଁ ଡେଇଁ ପିଲାଟି ଭଳି ଚାଲନ୍ତି ସେ । ପ୍ରାୟ ଦଶ ମିନିଟ୍ ଭିତରେ ଗାନ୍ଧିଜୀ ସଭାସ୍ଥଳରେ ପହଞ୍ଚିଗଲେ । କାଠର ଆସନ ଉପରେ ଗୋଡ଼କୁ ଗୋଡ଼ ଛନ୍ଦି ହାତରେ ଭରା ଦେଇ ବସିଲାରୁ ଛବିରେ ଯେମିତି ଦେଖି ଥାଉଁ ଅବିକଳ ସେମିତି ଅଣ୍ଟାରୁ ଝୁଲୁଥିବା ଘଡ଼ିଟି ଏଥର ଦେଖି ହେଲା । ଗାନ୍ଧିଜୀ ଆରମ୍ଭ କଲେ, ''କୌଣସି ଶୁଭକର୍ମ କରିବା ପୂର୍ବରୁ ଭଗବାନଙ୍କ ନାମ ନେବା ଉଚିତ ।'' ଏତିକି କହି ସାରିଛନ୍ତି କି ନାହିଁ

ନୀରସ ପ୍ରାଣହୀନ ପରିବେଶ ଯେପରି ବୈଦ୍ୟୁତିକ ଶକ୍ତିରେ ହାଠାତ୍ ଜୀବନ୍ତ ହୋଇ ଉଠିଲା । ସେତେବେଳକୁ ଜବା କୁସୁମ ସଙ୍କାଶ ସୂର୍ଯ୍ୟଦେବ ନରାଜ ସିଂହାସନରେ ଅଧିଷ୍ଠିତ । ନଦୀରୁ ଶିକର ଶୀତ ବାୟୁର ମଧ ସଞ୍ଚାର ଆରମ୍ଭ ହେଲା । ବାମା କଣ୍ଠରେ ଗୀତାର ଦ୍ୱିତୀୟ ଅଧ୍ୟାୟର ଅମୃତ ନିସ୍ୟନ୍ଦନୀ ଶ୍ଳୋକ ଗୁଡ଼ିକ ଗଗନ ପବନରେ ପ୍ରସରି ଶ୍ରୋତାମାନଙ୍କ କର୍ଣ୍ଣକୁହର ରେ ଅଗ୍ନିର ଅବିନଶ୍ୱରତା ଓ ଆଧ୍ୟାତ୍ମିକତା ର ମହିମା ଢ଼ାଳି ଦେଇଗଲେ । ଋଷି ଆଶ୍ରମ ସୁଲଭ ସାନ୍ଧ୍ୟ ବାତାବରଣ ସୃଷ୍ଟି ହେଲା କ୍ଷଣିକ ମଧ୍ୟରେ । ସେଦିନର ପବିତ୍ର ସନ୍ଧ୍ୟାର ପ୍ଲାବନୀ ସ୍ପର୍ଶ ଜୀବନରେ କେବେ ହୁଏତ ମିଳି ନାହିଁ ।

ପ୍ରାର୍ଥନା ବେଳେ ଗାନ୍ଧିଜୀ ପ୍ରାୟ ସ୍ଥିତଧୀ ମୁନି ପରି ସମାଧିସ୍ଥ ହୋଇ ବସିଥାନ୍ତି । ପ୍ରାର୍ଥନା ଶେଷରେ ଗାନ୍ଧିଜୀ ସ୍ପୃଶ୍ୟ ଅସ୍ପୃଶ୍ୟ ଭେଦ ବିଚାର ସମ୍ପର୍କରେ ପାଞ୍ଚ ଦଶ ମିନିଟ୍ କହିଲେ । ବକ୍ତୃତାର ବିଷୟ ବସ୍ତୁ ଅପେକ୍ଷା କହିବାର ଅକପଟ ବାଗ ଓ ଭଙ୍ଗୀ ମନ୍ତ୍ର ମୁଗ୍ଧ କରେ ଶ୍ରୋତାଙ୍କୁ । ବକ୍ତୃତା ପରେ କର୍ମୀମାନେ ଲୁଗାଟିଏ ଧରି ସଭା ଭିତରେ ପାଣ୍ଠି ସଂଗ୍ରହ କରୁଥାନ୍ତି । ଏତେ ଅଳ୍ପ ସମୟରେ ପଇସାର ଏତେ ଅଭାବ ଯୁଗରେ ଏତେ ଟଙ୍କା ପଇସା ସଂଗ୍ରହ ହେବାର ଦେଖିଲେ ଗାନ୍ଧିଜୀଙ୍କ ମହିମା ଜଣେ ବେଶ୍ ଉପଲବ୍ଧ କରି ପାରିବ । ଗାନ୍ଧିଙ୍କୁ ଅଦେୟ ବୋଲି କିଛି ନଥିଲା ସେ କାଳର ଲୋକଙ୍କର ।

ଶେଷର ଗାନ୍ଧିଜୀ କହିଲେ – " ପଣ୍ଡିତ ଲାଲା ନାଥ ଆଜିର ଏ ସଭାରେ ବକ୍ତୃତା ଦେବାପାଇଁ ମୋର ଅନୁମତି ଚାହିଁଛନ୍ତି । ମୁଁ ତାଙ୍କୁ ଅନୁମତି ଦେଇଛି । ଆପଣ ମାନେ ମୋ କଥାକୁ ଯେପରି ଧୀର ସ୍ଥିର ହୋଇ ଶୁଣିଲେ ତାଙ୍କ କଥା ବି ସେହିପରି ଶାନ୍ତ ଶିଷ୍ଟହୋଇ ଶୁଣିବେ ବୋଲି ମୁଁ ଆଶା କରୁଛି । ସେ ପ୍ରାୟ ଆସି ଯିବେଣି ।"

ସତକୁ ସତ ଦେଖିଲୁଁ ଖଣ୍ଡେ ଦୂରରେ ଲଣ୍ଡିତ ମସ୍ତକ ସନାତନୀ ପଣ୍ଡିତ ଲାଲାନାଥ ଓ ଦଳବଳ ଉପସ୍ଥିତ । ସଂକୀର୍ତ୍ତନ ଚାଲିଛି । କେତେ ଜଣ ଲୋକ କଳା ପତାକା, ଚୁନକଳାରେ ଚିତ୍ର ବିଚିତ୍ର ହାଣ୍ଡି, ମୃଣ୍ଡି ଛାଞ୍ଚୁଣି ଧରି ସଂକୀର୍ତ୍ତନର ତାଳେ ତାଳେ ନାଚି ଆସୁଛନ୍ତି । କି ସେ ଧର୍ମସଭା, କି ବିକଟ ନିନାଦ, ଅଦ୍ଭୂତ ଉନ୍ମାଦନା ! ପଣ୍ଡିତଜୀ ସଦଳ ବଳେ ସଭା ସ୍ଥଳରେ ପହୁଞ୍ଚିଛନ୍ତି କି ନାହିଁ ଲୋକେ ଉତ୍ତ୍ୟକ୍ତ ହୋଇ ସେମାନଙ୍କ ଆଡ଼କୁ ଭିଡ଼ି ଗଲେ ଏବଂ ଆଖି ପିଚୁଳାକେ ହାଣ୍ଡି କୁଣ୍ଡି ସବୁ ଚୁରମାର କରି ଧୂଳିବାଲି ଫୋପାଡ଼ି ଦଳବଳଙ୍କୁ ଛିନ୍ନ ଛତ୍ର କରିଦେଲେ । ପଣ୍ଡିତ ଲାଲାନାଥ ମଧ କୁଆଡ଼େ ରହିଲେ ଦଣ୍ଡେତକ ଜଣାଗଲା ନାହିଁ । ଏସବୁ ଦେଖି ଶୁଣି ଗାନ୍ଧିଜୀ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ ଓ କର୍ମୀମାନଙ୍କୁ କହିଲେ ସେମାନଙ୍କୁ ସମ୍ମାନରେ ସଭାସ୍ଥଳକୁ ଆଣିବା ପାଇଁ । ଏପରିକି ନିଜେ ମଧ ଖଣ୍ଡେ ଦୂର ଯାଇ ସେମାନଙ୍କୁ ପାଛୋଟି ଆଣିଲେ ଓ ପାଖରେ ଆସନ ଦେଇ ବସାଇ ଆଖି ମୁହଁରୁ ଧୂଳି ବାଲି ଝାଡ଼ି ଝୁଡ଼ି ଦେଇ ତାଙ୍କୁ ସାନ୍ତ୍ୱନ କଲେ । ତା ପରେ ମଞ୍ଚସ୍ଥ ଲୋକଙ୍କୁ ଲକ୍ଷ୍ୟ କରି କହିଲେ, ମୋର ଅନୁରୋଧ ରକ୍ଷା ନ କରି ଅତିଥିଙ୍କୁ ଅପମାନ ଦେଇ ଆପଣମାନେ ଘୋର ଅପରାଧ କରିଛନ୍ତି ।

ମୁଁ ସେଥିପାଇଁ ଆପଣମାନଙ୍କ ତରଫରୁ ଭଗବାନଙ୍କଠାରେ କ୍ଷମା ପ୍ରାର୍ଥନା କରୁଅଛି ।'' ମନେ ପଡ଼ିଲା ବାଇବେଲର ''ପରମ ପିତା ! ଏମାନଙ୍କୁ କ୍ଷମା ଦିଅ । ବିଚରା ଏମାନେ ଜାଣନ୍ତି ନାହିଁ କ'ଣ କରୁଛନ୍ତି ।''

ତାପରେ ପଣ୍ଡିତ ଲାଲାନାଥ ହାତ ଉପରକୁ ଟେକି ତର୍ଜ୍ଜନ ଗର୍ଜ୍ଜନ କରି ସନାତନ ହିନ୍ଦୁ ଧର୍ମର ମହିମା ଗାନ କଲେ । ବ୍ରୁଟାସ ଏଣ୍ଟୋନିଓଙ୍କୁ ବକ୍ତୃତା କରିବାକୁ ଦେଇ ଯେଉଁ ଭୁଲ କରିଥିଲେ ଗାନ୍ଧିଜୀ ସେଇଆ କରୁନାହାନ୍ତି ତ ? ଭୟ ହେଲା । କିନ୍ତୁ ଲାଲାନାଥଙ୍କ ଯୁକ୍ତି କାହାରି ମନଃପୂତ ହେଲା ନାହିଁ । ବରଂ ତାଙ୍କ ଓଜସ୍ୱିନୀ ବକ୍ତୃତା ତାଙ୍କ ପ୍ରତି ଶ୍ରୋତାଙ୍କର ବିରକ୍ତି ଜାଗ୍ରତ କଲା । ମାଛି ଅନ୍ଧାର ବେଳକୁ ସଭା ସରିଲା । ଆଶ୍ଚର୍ଯ୍ୟ ହୋଇ ଦେଖିଲୁ ଗାନ୍ଧି ଓ ଲାଲାନାଥ ଦୁଇ ବନ୍ଧୁ ପରି କାନ୍ଧକୁ କାନ୍ଧ ଲଗାଇ ନଈ ବାଲିରେ ଚାଲିଛନ୍ତି କଟକ ସହର ଅଭିମୁଖରେ । ବିରୁଦ୍ଧ ମତକୁ ସମ୍ମାନ ଦେବା ଓ ଅନ୍ୟକୃତ ପାପ ପାଇଁ ପ୍ରାୟଶ୍ଚିତ୍ତ କରିବା ପ୍ରକୃତି ଉପଦେଶର ପ୍ରୟୋଗ ସାକ୍ଷାତ ଦେଖିଲୁଁ ।



# ଶେଷ

ଚଉଦ ବର୍ଷ ପରେ ପୁଣି । ଦେଶ ବିଖଣ୍ଡିତ ହୋଇ ମାତ୍ର କେତେ ମାସ ହେଲା ସ୍ୱାଧୀନ ହୋଇଛି । କାର୍ଯ୍ୟାନ୍ତରରେ ଦିଲ୍ଲୀ ଯାଇଥାଏଁ । ସୁଯୋଗ ଓ ଅବସର ନେଇ ପ୍ରତ୍ର ସ୍ମୃତି ପୀଠ ରାଜଘାଟରେ ଜାତିର ପିତାଙ୍କ ଉଦ୍ଦେଶ୍ୟରେ ଭକ୍ତି ନିବେଦନ କରିବା ପୂର୍ବରୁ ଯେଉଁ ପୁଣ୍ୟ ବେଦୀ ଉପରେ ଭାରତର ଜୀବନ ଦୀପ ନିର୍ବାପିତ ହୋଇଥିଲା ଓ ଗୋଟାଏ ମହାଜାତିର ହୃତ୍‌ସ୍ପନ୍ଦନ ସ୍ତବ୍ଧ ହୋଇଥିଲା ସେଠାକୁ ଯିବା ସମୀଚୀନ ମନେ କଲି ।

ବିରଳା ଭବନର ଅଦୂରରେପ୍ରାଙ୍ଗଣ ମଧ୍ୟରେ ଶ୍ୟାମଳ ତୃଣାଚ୍ଛାଦିତ ପ୍ରାର୍ଥନା ମଣ୍ଡପଟି । କେତେଦିନ୍ ଧରି ସେଇ ବେଦୀରୁ "ଈଶ୍ୱର ଆଲ୍ଲା ତେରେ ନାମ", ସଙ୍ଗେ ସଙ୍ଗେ "ନ ହନ୍ୟତେ ହନ୍ୟମାନେ ଶରୀରେ" ଉଚ୍ଚାରିତ ହୋଇ ନଥିବ !

୧୯୪୮ ଜାନୁଆରୀ ୩୦ ତାରିଖ ଦିନ ସେମିତି କାଳିମା ମୟ ଶୁକ୍ରବାର ସନ୍ଧ୍ୟା ଦିଲ୍ଲୀର ଆକାଶରୁ ଝରି ସମଗ୍ର ଭାରତ ତଥା ପୃଥିବୀ ବକ୍ଷରେ ପ୍ରସରିଗଲା । ପ୍ରତ୍ୟକ୍ଷ ଦର୍ଶୀ ଜନୈକ ପଥ ପ୍ରଦର୍ଶକ ସେହି ସନ୍ଧ୍ୟାର ବିଶଦ ବିବରଣୀ ଦେଉଥାନ୍ତି । ମୁଁ ମାନସପଟରେ ସେହି ହୃଦୟ ବିଦାରକ ଛବି ଗୁଡ଼ିକ ଆଙ୍କି ଯାଉଥାଏଁ । ସେଦିନ ମଧ୍ୟ କାଠ ଯୋଡ଼ି ନଈ ବାଲିର କ୍ଷୁଦ୍ର ପାର୍ଥନା ସଭାପରି ସେଇ ସ୍ଥାନରେ ଚାରି ପାଞ୍ଚଶ ଲୋକ ଗାନ୍ଧିଜୀଙ୍କୁ ଅପେକ୍ଷା କରି ବସିଥିବେ । ଠଙ୍ଗ୍ ଠଙ୍ଗ୍ କରି କୌଣସି ଘଣ୍ଟାରେ ପାଞ୍ଚ ବାଜିଥିବ । ସେମାନେ ଭାବୁଥିବେ କାହିଁକି ପାଞ୍ଚ ଦଶ ମିନିଟ୍ ଡେରି ହେଉଛି ଗାନ୍ଧିଜୀ ଆସିବାକୁ । ସେମାନେ ଅବା କେମିତି ଜାଣିବେ ଗାନ୍ଧିଜୀ ସର୍ଦ୍ଦାର ପଟେଲ ସହିତ ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରଣା କରୁଛନ୍ତି ବୋଲି ।

ଅବଶେଷରେ ଗାନ୍ଧିଜୀ ଆମ୍ଭ ମାନଙ୍କୁ ତୃଷ୍ଣ କରି ବିରଳା ଭବନରୁ ବାହାରିଥିବେ । ଖଣ୍ଡେ ଦୂରଆସୁ ନ ଆସୁଣୁ ଜନୈକ ଅନୁଚର ଆସି ତାଙ୍କୁ କହିଥିବେ, ବାପୁ କାଠିଆ ବାଡ଼ରୁ ଦୁଇଜଣ ଆପଣଙ୍କୁ ଭେଟିବାକୁ ଚାହୁଁଛନ୍ତି । ଗାନ୍ଧିଜୀ ଈଷଦ୍ ହସି କହିଥିବେ, "ତାଙ୍କୁ କୁହ ପ୍ରାର୍ଥନା ସଭାପରେ ମୋତେ ଭେଟିବାକୁ । ଯଦି ବଞ୍ଚି ଥାଏଁ ତେବେ ଅବଶ୍ୟ ଦେଖା ହେବ।" ତାପରେ ଆସୁ ଆସୁ ଥଟ୍ଟା କରି ନାତୁଣୀ ଆଭା କୁ କହିଥିବେ, ଆଭା, ତୁ ମୋତେ ଗୁଡ଼ାଏ ମୂଳା ଖାଇବାକୁ ଦେଉଛୁ । ସେଗୁଡ଼ାକ ପରା ପଶୁଙ୍କ ଖାଦ୍ୟ । ଯେଉଁ ଚିଜକୁ କେହି ପଚାରନ୍ତି ନାହିଁ ମୁଁ ତାକୁ ବହୁତ ଆଦର କରେ ନୁହେଁ ?

ମଣ୍ଡପ ପାଖ ପହଞ୍ଚିଲା ବେଳକୁ ରଙ୍ଗ ରଙ୍ଗ ଥଟ୍ଟା ତାମସା ବନ୍ଦହୋଇ ଯାଇଥିବ । ମୁହଁରେ ଦିବ୍ୟ ଭାବ ଖେଳାଇ ପାହ୍ୟଚ ଦେଇ ବେଦୀ ଉପରକୁ ଉଠିଥିବେ । ବସିବା ସ୍ଥାନକୁ

ଯିବା ପାଇଁ ରାସ୍ତା କରି ଦେଇ ଲୋକେ ବିନମ୍ର ନମସ୍କାର ଜଣାଇ ଥିବେ ଏବଂ ବାରବ୍ରତ ଉପାସରେ ସଂଯତ ଓ ପବିତ୍ରୀ କୃତ ଶରୀର ଦେଖି ହୁଏତ ଭଗବାନଙ୍କଠାରେ ସମସ୍ତେ ଦୀର୍ଘ ଜୀବନ କାମନା କରିଥିବେ ।

ପ୍ରତି ନମସ୍କାର ଜଣାଇବା ପାଇଁ ଗାନ୍ଧିଜୀ ଆଭା ଓ ମନୁ ଙ୍କ କାନ୍ଧରୁ ଦୁଇ ହାତ ଉଠାଇ ଆଣି ଯୋଡ଼ିବା ପାଇଁ ଗଲା ବେଳେ ସେଇ ସଇତାନ ର ଦୂତ – ଜାରା ବା ଜଡ଼ାସ, ଲାଲାନାଥ ବା ନାଥୁରାମ ଦକ୍ଷିଣ ପଟୁ ଭିଡ଼ି ଆସିଥିବେ । ଏବଂ ମନୁର ହାତକୁ ଜୋରରେ ଛିଞ୍ଚାଡ଼ି ଦେଇ ଗାନ୍ଧିଜୀଙ୍କ ଆଗରେ ନମସ୍କାର ଅଭିନୟ କରିଥିବେ । ମୁହୂର୍ତ୍ତକ ମଧ୍ୟରେ ତିନୋଟି ଗୁଳି ଶୁବ୍ଦର ପ୍ରତିଧ୍ୱନି ଶୁଭିଥିବ ସେଇ ପାଖ ଘରର କାନ୍ଥରେ । ଯେଉଁଠି ମାତ୍ର କେତେ ଦିନ ତଳେ ବୋମାଟିଏ ପଡ଼ିଥିଲା । ପାଖରେ ଥିବା ଲୋକେ ଗାନ୍ଧିଜୀଙ୍କ ମୁହଁରୁ ସେଦିନ ଶୁଣିଥିବେ ସବୁ ପ୍ରାର୍ଥନାର ମୂଳମନ୍ତ୍ର ଅସ୍ପଷ୍ଟ କ୍ଷୀଣ ଦୁଇଟି ଶବ୍ଦ – ହେ ରାମ ଅଥବା ''ରାମ, ରାମ'' ।

ଯେଉଁମାନେ ପରେ ଆସିଥିବେ ସେମାନେ ଗାନ୍ଧିଜୀଙ୍କ ଦର୍ଶନ ନ ପାଇ ବ୍ୟାକୁଳ ହୋଇ କେବଳ ସେହି ପୁଣ୍ୟ ବେଦୀରୁ ଧୂଳି ମାଟି ଟିକିଏ ନେଇ ମୁଣ୍ଡରେ ଛୁଇଁ ଥିବେ ଏବଂ ସତ୍ୟ ଓ ଅହିଂସାର ବୈଜୟନ୍ତୀ ଭଡ଼ାର ଘରକୁ ଫେରିଥିବେ ।



# ଆଧୁନିକ କେଶ-ବିନ୍ୟାସ ଗୃହ

କଲେଜ ଛକରେ ଉତ୍ତରପଟକୁ ରାସ୍ତା କଡ଼ରେ ଯେଉଁଠି 'ହେୟାର-କାଟିଂ ସେଲୁନ' ଲେଖାଥିଲା ତାହା ଆଞ୍ଚଳିକ ଭାଷାପ୍ରୀତିର ବନ୍ୟାରେ ଭାସି ଯାଇ ଏଇ ନୂଆ ନାଆଁରେ ଆତ୍ମପ୍ରକାଶ କରିଛି । ପଞ୍ଚଙ୍ଗୀ ପ୍ରଜ୍ଞାପନୀ ପଟାରେ ବଡ ବଡ ଅକ୍ଷର ତଳକୁ ବିଦ୍ୟୁତ ଲୋକରେ ଉଦ୍ଭାସିତ ନକ୍ସା କରା ଛୋଟ ଅକ୍ଷରରେ ପୁଣି ଲେଖା ହୋଇଛି ପ୍ର : ପଞ୍ଚୁ ବାରିକ । ପ୍ରଥମରେ ମୋର ଧାରଣା ହେଲା ଏଠି କେହି ପ୍ରଫେସର ରହୁଥିବେ । ଅନାଇ ଦେଖିଲି ନବୀନ ଅଧ୍ୟାପକ ମହାବିଦ୍ୟାଳୟମାନଙ୍କରେ ସଦ୍ୟ ଯୋଗଦାନ କଲାବେଳେ ଯେଉଁ ବେଶଭୂଷା ଓ ଭଙ୍ଗୀ ବିମଣ୍ଡିତ ହୋଇଥାନ୍ତି ସେଇ ରୂପରେ ଜଣେ ଭିତରେ ଏପଟ ସେପଟ ହେଉଛନ୍ତି । ଧଳା ଫ୍ଲାନେଲ,ନଳୀ ପେଣ୍ଟ, ମିଲଟନ କମ୍ପାନୀର 'ଇନ୍' କରା ଶାର୍ଟ ବାହୁରେ ଫୋଲଡ଼, ଡାହାଣ ହାତରେ ଘଡି, ମୁହଁରେ ଚାର୍ମିନାର ସିଗାରେଟ୍, ହାତରେ ଫରସେପ୍ ପରି କଣ ଯନ୍ତ୍ରଟାଏ । କିନ୍ତୁ କି ଆଶ୍ଚର୍ଯ୍ୟ ! ଏ ଯେ ମୋର ପୁରୁଣା ବାରିକ-ବନ୍ଧୁ ପଞ୍ଚାନନ । ଭାବିଲି ତାକୁ ପ୍ରଫେସର ଭାବି ଭୁଲ କରିନି କାରଣ ଯାଦୁକର ମାନଙ୍କୁ ଆମେ ପ୍ରଫେସର କହୁଁ ଯଥା ପ୍ରଫେସର ସରକାର, ପ୍ରଫେସର ମୂର୍ତ୍ତି । ଏଇ ଆଧୁନିକ କେଶ-ବିନ୍ୟାଶ ଗୃହର ପ୍ରପ୍ରାଇଟର ବା ସ୍ୱତ୍ତ୍ୱାଧିକାରୀ ପଞ୍ଚାନନବାବୁ (ଦେଖିଲି ତାଙ୍କୁ ଅନେକ ଲୋକ ଏଇ ଭାବରେ ସମ୍ବୋଧନ କରି ନମସ୍କାର ଆସୁଛନ୍ତି) ଜଣେ ବିଚିତ୍ରକର୍ମା, ଅଦ୍ଭୁତକର୍ମା । ନହେଲେ ମୋଫସଲରୁ ଯେଉଁ ପିଲାଏଁ କଲେଜର ପ୍ରାକ୍ - ବିଶ୍ୱବିଦ୍ୟାଳୟ ଶ୍ରେଣୀରେ ନାମ ଲେଖାନ୍ତି ତାଙ୍କୁ ରବିନସନ୍ କ୍ରୁସୋ ଅବସ୍ଥାରୁ ଲର୍ଡ କର୍ଜନ ବା ରାଜକାପୁର ଅବସ୍ଥାକୁ ଆଣେ କିଏ ଗୋଟାଏ ଦିନରେ ? ଅଝଟ ଅମାନିଆ ଚାଟକୁ ଖାଁ ଅବଧାନ ଯିମିତି ଦିନଗୋଟାକରେ ବାଗକୁ ଆଣେ, ଦକ୍ଷ ମାଳୀ ଯିମିତି କଟାଯନ୍ତ୍ର ସାହାଯ୍ୟରେ ଅନାବନା ଲତା ଗୁଳ୍ମ - ପରିପୂର୍ଣ୍ଣ ବାଡ଼କୁ ସଜାଇଦିଏ ପଞ୍ଚାନନ ସିମିତି ଯାଦୁବଳରେ କଦମ୍ବ ଫୁଲିଆ ଚୂଳକୁ ଶୁଆଇ ଦିଏ ବା ଇତସ୍ତତଃ ହେଉଥିବା ନିଶଗୁଡ଼ାକ ବରାଦ୍ ମୁତାବକ ସରଳ ବା ବକ୍ରରେଖାରେ ନିବଦ୍ଧ କରିଦିଏ । ହଜାମତ ପରେ ମୁହଁଟିକୁ ସ୍ନୋ ପାଉଡର ଦେଇ ସରସସୁନ୍ଦର କରି ସେ ଜଣକୁ ଜଣ ଛାଡ଼ିଦିଏ ଦୁନିଆଁକୁ ପ୍ରତିଯୋଗିତା କ୍ଷେତ୍ରକୁ ଯେଉଁଠି ପ୍ରେମିକ, ଛାତ୍ର, କର୍ମପ୍ରାର୍ଥୀ, ସଫଳତା ଆଶା କରିପାରନ୍ତି ।

ଭିତରକୁ ଯିବି ନ ଯିବି ଦୋ ଦୋ ମନା ହେଉଛି ମୁହଁରେ ଈଷତ୍ ହସ ଖେଳାଇ ଚିର ପରିଚିତ ଗଳା ସ୍ୱରରେ ବନ୍ଧୁ ସାଦର ସମ୍ଭାଷଣ କଲେ, "ନମସ୍କାର ଆଜ୍ଞା, ଭିତରକୁ ଆସନ୍ତୁ ।"

ବନ୍ଧୁଙ୍କ ଘଟ ଓ ପଟ ପରିବର୍ତ୍ତନର କାରଣ ପୁଚ୍ଛି (ମୁଁ ପୃଚ୍ଛା ନ କରିଥିଲେ ବି ସେ ଆପେ ଆପେ କହିଥାନ୍ତେ) ଜାଣିଲି ଯେ ସେ ଆଉ ହାନମାନିଆ ବୁଲା ବାରିକ କାମ କରନ୍ତି ନାହିଁ । ମୋଫସଲ ତ ସେ ଅନେକ ଦିନରୁ ଛାଡିଥିଲେ । ସେ କହିଲେ, ''ମୋଫସଲ ଲୋକେ ବି ଆଜିକାଲି ସହରକୁ ଆସି ଚୁଳ କାଟୁଛନ୍ତି । ତାଙ୍କ ବାପଅଜା ପଶ୍ଚିମ ଛାତ୍ରାବାସ ଓ ପୂର୍ବଛାତ୍ରବାସକୁ ଏକଚାଟିଆ ଚରାଭୂଇଁ କରି ଅଧ୍ୟାପକ ଓ ଅଧକ୍ଷମାନଙ୍କୁ କ୍ଷୌର କରି ନେଇଁ ଅର୍ଥ ଓ ଆନନ୍ଦ ପାଇଁ ଗର୍ବ ଅନୁଭବ କରୁଥିଲେ ସେ କାଳ ଅଠର ନାହିଁ ।'' ବ୍ୟବସାୟ, ତାଙ୍କ ମତରେ, ବିକେନ୍ଦ୍ରୀକୃତ ଏବଂ ସଂସ୍କୃତି, ସଭ୍ୟତା, ରାଜନୀତି ଏପରିକି କ୍ଷୌରକର୍ମ ରାଜଧାନୀ ଅଭିମୁଖୀ । ସେ ବୁଝାଇଲେ ଯେ 'ପ୍ର' ର ପୁରାଅର୍ଥ ପ୍ରଫେସର ନୁହେଁ ପ୍ରୋପ୍ରାଇଟର । ଗାଁର ପଚୁ ବାରିକ (କେହି କେହି ପଚା ବାରିକ ଡାକୁଥିଲେ) ନାମକୁ ଜିଲ୍ଲାନ୍ତରରେ ପଞ୍ଚାନନ କରିଥିଲେ; ଏବେ ବଡ଼ ଲୋକମାନେ ବଡ଼ ବଡ଼ ନାମକୁ ଛୋଟ କରୁଥିବାରୁ (ଯଥା ବିଜୟାନନ୍ଦ 'ବିଜୁ', ରାଜକିଶୋର'ରାଜୁ') ସେ ମଧ ମହାଜନୀ ପନ୍ଥା ଅନୁସରଣ କରି ନିଜକୁ ପଞ୍ଚୁ ନାମରେ ବିଦିତ କରାଉଛନ୍ତି ।

ଯେତିକି ସମୟ ଆଧୁନିକ-କେଶ-ବିନ୍ୟାସ ଗୃହରେ ରହିଲି ସେତିକିରେ ମୋର ବଦ୍ଧମୂଳ ଧାରଣା ହେଲା ଯେ ବନ୍ଧୁ ଗୋଟାଏ ବିରାଟ ଐତିହ୍ୟ, ସଂସ୍କୃତି ଓ ପରମ୍ପରାର ଯଥାର୍ଥ ଦାୟାଦ ହୋଇ ନିଜ ବଂଶମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିଅଛନ୍ତି । ''ନରାଣାଂ ଧୂର୍ତ୍ତଃ ଶ୍ଳୋକାଂଶଟି ସେ ବାରମ୍ବାର ଦରକାର ପଡ଼ିଲେ ଆବୃତ୍ତି କରନ୍ତି । (ଶ୍ଳୋକାଂଶଟିରେ ଜାତିବାଚକ ଶବ୍ଦଟି ଦେଲିନାହିଁ,କାରଣ ସ୍ୱାଧୀନତା ପରେ ଲୋକେ ରାଜକୀୟ ଜାତିଆଣ ଭାବରେ ମାତିଛନ୍ତି । ଆପଣ ଜାଣନ୍ତି 'ହରିଆ ତନ୍ତୀ' କବିତାଟି ପିଲାଙ୍କୁ ପଢ଼ିବାକୁ ଦିଆଯାଏ କାଳେ ତନ୍ତୀକୁଳ କ୍ଷୁବ୍ଧ ହେବେ ବୋଲି ? କିନ୍ତୁ ଗଙ୍ଗାଧରଙ୍କୁ ଆମେ ଜାତିନିର୍ବିଶେଷରେ ପୂଜା କରୁଁ) ''ଜାତି ଅତ୍ରେଶ କିଂ କିଶ୍ଚିଦ୍ ହନ୍ୟତେ ପୂଜ୍ୟତେ କ୍ୱଚିଦ୍'' ନୀତିରେ ମୁଁ ବନ୍ଧୁଙ୍କ ସହିତ କଥାବାର୍ତ୍ତା କରୁଥାଏଁ । ଶ୍ରୀକୃଷ୍ଣ ନାପିତୁଣୀ ବେଶ ନେଇ ଏମାନଙ୍କୁ ମହନୀୟ କରିଛନ୍ତି । ବର୍ଣ୍ଣାଶ୍ରମ ସୃଷ୍ଟିକାଳରୁ ବ୍ରହ୍ମଣଙ୍କ ସହିତ ସଂଶ୍ଳିଷ୍ଟ ଥାଇ କେତେକେତେ ଅମୋକ୍ଷ, ଅଶୁଦ୍ଧ ମଣିଷଙ୍କୁ ପିତୃମାତୃ ଋଣରୁ ନିଷ୍କୃତି ଦେଇ ନାହାନ୍ତି ଏମାନେ ? 'ଲଣ୍ଡିତ ମସ୍ତକ' ଅର୍ଥ ଓ ଋଣ ବିମୁକ୍ତ । ପାଶ୍ଚାତ୍ୟ ରାଜ୍ୟରେ ବାରିକ ଉଭୟ କ୍ଷୌରକର୍ତ୍ତା ଏବଂ ଚିକିତ୍ସକ । ଡନ୍ କୁଇକ୍‌ସୋଟ୍‌ରେ ଯେଉଁ ବାରିକଟି ମୁଣ୍ଡରେ ବେଲାଟାଏ ଦେଇ ଜନୈକ ରୋଗୀର ରକ୍ତ ବାହାର କରିଦେବାକୁ ଯାଉଥିଲା ତା କଥା ଅପାଣଙ୍କର ମନେ ନାହିଁ ? ଆମ ନିଜ ଦେଶର ସାହିତ୍ୟରେ ଫକୀରମୋହନଙ୍କ ଅମର ଚରିତ୍ର ହରିବୋଲ ବାରିକକୁ ମନେ ପକାନ୍ତୁ ତ । କେଡ଼େ ଅପରିଷ୍କାର ଓ ଅପରିଚ୍ଛନ୍ନ ସେଇଁ ଗାଉଁଲୀ ଭୂତ 'ରାଘୋ ମାହାନ୍ତି'ଟାକୁ କ୍ଷଣକେ ହରକଳା ଡାକି ଆଣିଥିବା ବାରିକଟା ରସିକରେ ପରିଣତ କରି ନ ଦେଲା । ବେଠିଆ ଗଉଡ଼ଟାକୁ ପ୍ରଭୁଦୟାଳର ଦୋସ୍ତ' କରି ଦେଲା । କେତେ ସମାଜସେବୀ ସେ ବାରିକଟି ଫକୀରମୋହନଙ୍କୁ ଅନୁସରଣ କରନ୍ତୁ, ରାଘବ ମହାନ୍ତିଙ୍କ

''ମୁଣ୍ଡ ବାଳଗୁଡାକ କେରା କେରା, ଆଉ ସାନ ସାନ । ତେଲ ବା ପାଣିଆ ନ ଲାଗିଲେ ଯେପରି ଜଟାଳିଆ ଆଉ ମେଣ୍ଢାଲୁମିଆ ହୋଇଯାଏ, ସେହିପରି ।'' ''ଭଣ୍ଡାରିଟାଏ ଆସି ଭାଇ ସାଆନ୍ତଙ୍କୁ କ୍ଷର କରି ବସିଲା । ଚଉକେ ଚଉକେ ବୁଢ଼ ସାଙ୍ଗରେ କାଦୁଅ ପରି ମେଞ୍ଚାକୁ ମେଞ୍ଚା ମଇଳା କ୍ଷୁର ଦାଢ଼ରେ ଲାଗି ଆସୁଥାଏ । ... ନଖ ଗୁଡ଼ାକ ଭାଲୁ ନଖ ପରି ଲମ୍ବ ଆଉ ମୋଟା, କାଟିଲାବେଳେ ନହୁରୁଣୀଟା ଠିକିରି ପଡୁଥାଏ ।'' ନହୁରୁଣୀର ଗୋଡ଼ର ମଲା ଚମ ଗୁଡ଼ାକ ଛେଲି ''ଫଟାକୁ ଫଡ଼ା ମଲାଚମ ଜମାହେଲାଣି । ଚାରଟା ନହୁରୁଣୀ କୁନ୍ଥା ।'' ଭଗବାନଙ୍କ କୃପାରୁ ପଞ୍ଚାନନକୁ ଆଜି ଏ କାମ କରିବାକୁ ପଡୁନି, ମୋତେ ଖୁସୀ ଲାଗିଲା ।

ବନ୍ଧୁଙ୍କୁ ଏତେ ଦିନ ପରେ ଭେଟିବାର ପ୍ରଥମ ଆନନ୍ଦମୟ ଅନୁଭୂତି ଅଳ୍ପ ଊଣା ପଡ଼ନ୍ତେ ମୁଁ କେଶ-ବିନ୍ୟାସ ଗୃହର ମନୋରମ ସାଜସଜ୍ଜା ଉପରେ ନଜର ଦେଲି । ମୋତେ ଜଣାଗଲା ଯିମିତି କି ଐତିହାସିକ ଆଗ୍ରା ଫୋର୍ଟର ସେଇ ପ୍ରକୋଷ୍ଠରେ ଅଛି ଯେଉଁଠି ଦୀପଟିଏ ବା ମୁହଁଟିଏ ହଜାର ହଜାର ସଂଖ୍ୟାରେ ପ୍ରତିବିମ୍ବିତ ହୁଏ, ସ୍ନାନ ସାରି ମୋଗଲ ବାଦଶାହା ବା ତାଙ୍କର ବେଗମ ମାନେ ନିଜ ଅପରୂପ ଛବି ଦେଖନ୍ତି। ମୁଁ ଆପେ ଆପଣାକୁ ଚିହ୍ନି ପାରିଲି ନାହିଁ । ତଳୁ, ଉପରୁ, ଆଗ, ପଛ ଚାରିପଟୁ ଆଇନାସବୁ ଏପରି ଜ୍ୟାମିତିକ ମାପ ଓ ରେଖାରେ ସଜା ହୋଇଛି ଯେ ମୁଁ ମୁଣ୍ଡ ଉପରେ କି ଗୋଡ଼ ଉପରେ ଆଗ କରି କି ପଛ କରି ଛିଡ଼ା ହୋଇଛି ଜାଣି ପାରିଲି ନାହିଁ । ଏଇ ତାଜବ ଦୁନିଆଁ ଭିତରେ ଥାଇ ମୁଁ ଦେଖିଲି ବନ୍ଧୁଙ୍କ 'ଚାରୁ ଚିତ୍ରଶାଳା'କୁ । କି ବିଚିତ୍ର ପରିକଳ୍ପନା ଓ ସାଜସଜ୍ଜା । ଗାନ୍ଧୀ, ଜବାହରଲାଲ, ଭୂତ ବରିମାନ ରାଷ୍ଟ୍ରପତି, ଉପରାଷ୍ଟ୍ରପତି, ବୁଦ୍ଧ, ଯୀଶୁ ଏବଂ ଶ୍ରୀ ମା ଆଦି ଯେତେଯେତେ ଦେଶସେବୀ, ଜନନାୟକ, ଧର୍ମଗୁରୁ ଅଛନ୍ତି ସେମାନଙ୍କ ଫଟୋ ସହିତ ପ୍ରାଚ୍ୟପଶ୍ଚାତ୍ୟ ଜଗତର ଚିତ୍ର ତାରକାମାନଙ୍କର ଅପୂର୍ବ ସମନ୍ୱୟ ଦେଖି ମୁଗ୍ଧ ହେଲି । ମନେ ପଡ଼ିଗଲା ରାଧାନାଥଙ୍କ ପଂକ୍ତିଦୁଇଟି

''ଦେଖି ପାସୋରିବ କହ'' କେଉଁ ଜନ
ଏ ଶୋକପାସୋରା ଅପ୍ସରାଭୁବନ ?''

ବନ୍ଧୁଙ୍କ କି ଧର୍ମପ୍ରାଣତା, ଦୂରଦୃଷ୍ଟି, ଦେଶାତ୍ମବୋଧ ଓ ସଂସ୍କୃତି ପ୍ରୀତି ! ଏଇ ଛୋଟ ଗୃହଟିରୁ ସେ ବଜ୍ରନିର୍ଘୋଷରେ ସର୍ବଧର୍ମର ସମନ୍ୱୟ, ଧର୍ମନିରପେକ୍ଷତା ଓ ଜାତୀୟ ସଂହତିର ପ୍ରଚାର ଚଳାଇଛନ୍ତି । ଇମିତି ଲୋକଙ୍କୁ ଏମିତି କାମ ପାଇଁ ପଦ୍ମଶ୍ରୀ ଉପାଧି ଖୁବ୍ ବଡ଼ ହେଲା !

ଘଡିର ସାତଟା ପନ୍ଦର ଯିମିତି ଟୁଂ କରି ବାଜିଲା ବନ୍ଧୁ ଗୋଟାଏ ଟେବୁଲ ଉପରକୁ ଉଠିଯାଇ ରେଡ଼ିଓ କଣ୍ଟାକୁ କଟକ ଷ୍ଟେସନ ଧରାଇ ଦେଲେ । ସଙ୍ଗେ ସଙ୍ଗେ ''ଖବର ପଢୁଛନ୍ତି ଯତୀନ ଦାସ'' । ଖବର ଶୁଣୁଶୁଣୁ ଆଖି ପଡ଼ିଗଲା । ବେଞ୍ଚ ମୁଣ୍ଡ ଟେବୁଲ ଉପରେ । ମେଞ୍ଚାଏ ଖବର କାଗଜ, ପତ୍ର ପତ୍ରିକା । ଖଣ୍ଡିକି ଖଣ୍ଡି ଓଲଟାଇଲି ପିକ୍‌ଚାର ପୋଷ୍ଟ, ସ୍କ୍ରୀନ୍, ଫେମିନା, ଫିଲ୍ମଲେଣ୍ଡ, ଫିଲ୍ମଇଣ୍ଡିଆ, ଚିତ୍ରପୁରୀ ସାଙ୍ଗକୁ ଦୈନିକ ଓଡ଼ିଆ ସମ୍ବାଦପତ୍ର (ଏ ଖଣ୍ଡିକ ମନ୍ତ୍ରୀ ପରିବର୍ତ୍ତନ ଅନୁଯାୟୀ ପରିବର୍ତ୍ତିତ ହୁଏ, କେତେବେଳେ କଳିଙ୍ଗ ଓ କେତେବେଳେ ପ୍ରଜାତନ୍ତ୍ର)

ପତ୍ରପତ୍ରିକାଗୁଡ଼ିକ ହୁଏ ଓ ପୁରୁଣା ସଂଖ୍ୟା । ତେବେ ଛବି ବହିର ନୂଆ ପୁରୁଣା କଣ ! ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗର ଲୋକସମ୍ପର୍କ ଶାଖା ତରଫରୁ ଦେଶର ଇତସ୍ତତଃ "ସମ୍ବାଦ ପରିବେଷଣ କେନ୍ଦ୍ର ଓ ପାଠାଗାର" ମାନ ଦେଖିଥିଲି । ମୁଁ ଭାବିଲି ଖର୍ଚ୍ଚକାଟ ବ୍ୟବସ୍ଥାରେ ସେଗୁଡ଼ିକୁ ତୁରନ୍ତ ଉଠାଇଦେବା ଉଚିତ । କାରଣ ପି. ବାରିକଙ୍କ ଏ ସମ୍ବାଦ ପରିବେଷଣ କେନ୍ଦ୍ର ଓ ପାଠାଗାର ତୁଳନାରେ ସେଗୁଡ଼ିକ କିଛି ନୁହେଁ । ସେଠି କାଁ ଭାଁ ପାଠକ, ଏଠି ଅବାରିତ ଲୋକ ସୁଅ ସବୁବେଳେ ସକାଳ ଛଅରୁ ରାତି ଏଗାର ପର୍ଯ୍ୟନ୍ତ ଛୁଟିଛି । ଏଠି ଲୋକ ସମ୍ପର୍କ ମଧୁର, ସେଠି ତିକ୍ତ । ଏଠି ପ୍ରେମ, ସେଠି ବିରକ୍ତି ବିତୃଷ୍ଣା, ଘୃଣାଭାବ । ବନ୍ଧୁ ପଞ୍ଚାନନଙ୍କ ଏଇ କୋଠରୀଟିରେ ସବୁ ସମ୍ବାଦ ସଂଗୃହୀତ, ସଂପ୍ରସାରିତ, ପରିବେଷିତ ହୁଏ ନାନା ଭାବରେ । ସରକାର 'କେଶ-ବିନ୍ୟାଶଗୃହ' ଗୁଡ଼ିକୁ ସାହାଯ୍ୟ ଦେବା ଉଚିତ ।

ମୁଁ ବସି ବସି କାଗଜପତ୍ର ଲେଉଟାଉଥାଏଁ ଏବଂ ଭାବୁଥାଏଁ କେଶ ବିନ୍ୟାସ ଓ ନିଶ ବିନାଶ କଥା । କିନ୍ତୁ ବନ୍ଧୁଙ୍କ ପୁଣ୍ୟପୀଠରେ ଜାତିବର୍ଣ୍ଣ ବିଚାର ନାହିଁ କି ସାନବଡ଼ ବିଚାର ନାହିଁ । ଜଗନ୍ନାଥ ଧର୍ମ ଓ କାର୍ଲମାର୍କସ ଧର୍ମର ଯୁଗପତ୍ ସମନ୍ୱୟ । ସାମ୍ୟ ମୈତ୍ରୀ ତଥା Each according to his needs, each according to his necessity ଏଠି ଅକ୍ଷରେ ଅକ୍ଷରେ ପାଳିତ ହୁଏ । ଅତଏବ ମୋତେ ମୋ ପାଳି ପାଇଁ କିଉ ରେ ଅପେକ୍ଷା କରବାକୁ ପଡ଼ିବ ।

ଇତି ମଧ୍ୟରେ ଦେଖିନେଲି ବନ୍ଧୁଙ୍କ କାର୍ଯ୍ୟକ୍ଷମତା କାର୍ଯ୍ୟଦକ୍ଷତା । ତାଙ୍କର ଚାରିଜଣ ସହକାରୀ । ଶୁଣାଯାଏ ବ୍ରିଟିଶ ପ୍ରଧାନମନ୍ତ୍ରୀ ଗ୍ଲେଡ୍‌ଷ୍ଟୋନ୍ ଏକାବେଳେ ବହୁ ଲୋକଙ୍କ କଥା ଶୁଣି ସେମାନଙ୍କୁ ଉତ୍ତର ମଧ୍ୟ ଦେଇ ପାରୁଥିଲେ । ବନ୍ଧୁଙ୍କୁ ସିମିତି ଅନେକ କଥା ନଜର ଦେବାକୁ ପଡ଼େ । ସହକାରୀଙ୍କୁ କାମ ବରାଦ କରିବା, ପାନ ଚା ସିଗାରେଟ୍ ନିଜ ପାଇଁ, ଅତିଥିପାଇଁ କେତେବେଳେ ଆସିବ ସେ କଥା ଚିନ୍ତା କରିବା, ଗରାଖଙ୍କୁ ସମ୍ଭାଷଣ କରିବା, କିଏ ରାଗି ରୁଷି ଚାଲିଯାଉଛି ତାକୁ ଫେରାଇବା ଇତ୍ୟାଦି ଅନେକ କାମ ଦେଖିବାକୁ ହୁଏ । ଠିକ୍ ଘଡି ଘଣ୍ଟା ପରି କାମ । ନିଜ ହାତରେତ ଫେର କାମ ରହିଛି । ସେ ବିରକ୍ତି ମୋଟେ ନ ଦେଖାଇ, ଧୈର୍ଯ୍ୟ ଓ ସହିଷ୍ଣୁତାର ଅବତାର ସାଜି ଏମିତିଭାବରେ ଗରାଖଙ୍କ ପରଚର୍ଯ୍ୟା କରନ୍ତି ଯେ ସଖାଳ ଠାରୁ ଦିନ ବାରଟାଯାକେ ବସି ମଧ୍ୟ କେହି କ୍ଳାନ୍ତି କ୍ଳେଶ ଭୋଗ କରନ୍ତି ନାହିଁ ।

ଶୁଣିଲି ବନ୍ଧୁ ଜଣକୁ ପଚାରୁଛନ୍ତି "ଆଜ୍ଞା ମହମିଡାନ ସ୍ପୋଟିଂ ଆଉ ରାଜାସ୍ଥାନ ମେଚ୍ କ'ଣ ହେଲା ?" ଗରାଖଟି ନିରୁତ୍ତର । ପୁଣି ପ୍ରଶ୍ନ "କେଶିୟାସ କ୍ଲେ ଏବେ ନୂଆ ହୋଇ ବାହାହେଲେ, ଛବି ଦେଖିଥିବେ ?" ଗରାଖ ପୁଣି ନିରୁତ୍ତର । ପଞ୍ଚାନନବାବୁ ଜାଣିଗଲେ ଗରାଖଟି "ବିଲୋ ଷ୍ଟାଣ୍ଡାର୍ଡ଼", ଆଉ ବୃଥା ବାକ୍ୟ ବ୍ୟୟ ନ କରି କର୍ତ୍ତବ୍ୟ କରିବାରେ ଲାଗିଗଲେଓ ଅନ୍ୟ ଜଣଙ୍କୁ ଉଦ୍ଦେଶ୍ୟରେ ପ୍ରଶ୍ନ କଲେ "ଆଜ୍ଞା ! ଜମି ଖଜଣା ଉଠିଗଲା କିନ୍ତୁ

ମାଲିକାନା ସତ୍ତ୍ୱ କଥା'' ମୁଁ ଭାବିଲି ପାବ୍ଲିକ୍ ସାରଭିସ୍ କମିସନ୍‌କୁ ଇଣ୍ଟରଭିଉ ପାଇଁ ଯାଉଥିବା ପ୍ରତ୍ୟେକ କେଣ୍ଡିଡେଟ୍‌କୁ ଏଇଠି ଦିଘଣ୍ଟା ବସାଇ ଦେବା ଉଚିତ୍ । ଚାଲିଚଳନ, ବେଶଭୂଷା, ସହିତ ପ୍ରଶ୍ନୋତ୍ତର ପାଇଁ ସର୍ବବିଧ ସୁବିଧା ଏଇଠି ମିଳିଯିବ ।

କେଶ ସୁବିନ୍ୟସ୍ତ ହେଲା ପରେ ଗରାଖଟି ଝାଡିଝୁଡି ହେଲା ଏବଂ କାତର ଓ କରୁଣ ନୟନରେ ବନ୍ଧୁଙ୍କ ଆଡ଼କୁ ଚାହିଁ କହିଲା, ''ମୁଣ୍ଡଟା ଭାରି ବିନ୍ଧୁଛି, ଟିକିଏ ଚିପି ଦବ ।'' ହଠାତ୍ ବନ୍ଧୁଙ୍କ ଆଙ୍ଗୁଠି ଗୁଡ଼ାକ ପ୍ରଖର, ଗତିଶୀଳ ହୋଇ ଉଠିଲେ । ପ୍ରତ୍ୟେକଟି ହାତୁଡ଼ି ପରି ଟାଣୁଆ ହୋଇ ତା ମୁଣ୍ଡଟାକୁ ପିଟି ଦେଇଗଲେ ପରସ୍ତେ । ଚୂଳ ଗୁଡ଼ାକ ଭିତରେ ପଶି ଘାସ ମୁଠାକୁ ଧରି ଉପାଡ଼ିବା ନ୍ୟାୟରେ ସେମାନେ କର୍ମଠ ବ୍ୟଗ୍ର ହୋଇଗଲେ । ବୁଢ଼ାଆଙ୍ଗୁଳିର ଜୋର ଟିପରେ ଗରାଖର କପାଳି ଦିଫାଳ ହୋଇଗଲା ପରି ସେ ଚିତ୍କାର କରି ଉଠିଲା ।. ''ଦିଛନକ ଏ ନାଶନ ବାଏସ୍ ପ୍ରୋ ଖାଇଥିଲେ ବି ଏତେ ଚଞ୍ଚଳ ଭୀଷଣ ମୁଣ୍ଡ ବିନ୍ଧା ଭଲ କରି ପାରି ନଥାନ୍ତେ କହି ବନ୍ଧୁ ଗରାଖକୁ ବିଦାୟ ଦେଲେ । ପଛ ଦରିଜା ଦେଇ ସେ ବାହାରି ଯାଇଥିଲା ବେଳେ ପରଦାଟା ଉଠିଲାରୁ ଦେଖିଲି ସଂଲଗ୍ନ ଛୋଟ କୋଠରୀରେ ଶୋଇବା ଟେବୁଲରେ ମୋଟା ଲୋକ ପେଟେଇ ଶୋଇଛି । କାଠର ମୁଗୁରାରେ ଦିଜଣ ପିଲା ତାକୁ ବାଡ଼େଇ ଚାଲିଛନ୍ତି ଆଉ ପୋଷେ ପୋଷେ ତେଲ ମାଲିସ୍ କରୁଛନ୍ତି । ସେଇଟା ବନ୍ଧୁଙ୍କ ମାଲିସ୍ ଡିପାର୍ଟମେଣ୍ଟ । ପୁରୁଣା ବାତରୋଗ ବି ମାଲିସ ଯେତେ ସେ କୁଆଡ଼େ ଭଲ କରୁଛନ୍ତି । କେତେ ପ୍ରକାର ତୈଳ ଓ ମୋଦକ ଯୋଗେ ଅସାଧ ଦୁରାରୋଗ୍ୟ ବ୍ୟାଧି ବି ଦୂର କରି ଗରାଖଙ୍କୁ ନିରାମୟ କରୁଛନ୍ତି । ଗୋଟାଏ କ୍ଲିନିକ୍ ଓ ନାର୍ସିଂହୋମରେ ବସିଥିଲା ପରି ମୋତେ ଲାଗିଲା ଘୂର୍ଣ୍ଣାୟମାନ  ଚେୟାରରୁ ଗରାଖଟି ଓହ୍ଲାଇ ନଜାଣି ହାବୁଡ଼ି ପଡ଼ିଲା । ଚେୟାର ଦୁଇଟା କୁଆଡ଼େ ସାଢ଼େ ପାଞ୍ଚଶ ଟଙ୍କାର । ଯାହାହେଉ ଗରାଖଟି ଯିବା ପରେ ପାଣି କଳ ପାଖରୁ ଟିକିଏ ଧୁଆଧୋଇ ହୋଇ ଆସି ବନ୍ଧୁ ଠିଆ ହେଲେ ମୋ ପାଖରେ । ଜଣେ ସହକାରୀ ଚା ନେଇ ଆସିଲା ତାଙ୍କ ପାଇଁ । ମୋ ପାଇଁ ବି ଥିଲା ଅବଶ୍ୟ । ଆଉ ଜଣେ ଗରାଖକୁ ଧରିବା ପୂର୍ବରୁ ଏ ଯେଉଁ ବିଶ୍ରାମ ସମୟ ଟିକକ ତାର ସୁବିଧା ନେବା ପାଇଁ  ପଚାରିଲି, ''ପଞ୍ଚାନନ ବାବୁ ! କାମ କିମିତି ଲାଗୁଛି ?'' ବନ୍ଧୁ କହିଲେ, ''ବାରିକକୁ କ'ଣ କେଶ ବିନ୍ୟାସ (ଚୂଳକଟା ଶବ୍ଦଟି ଗଣ୍ଠିକଟା ଶବ୍ଦ ସହିତ ସମାନ ଥିବାରୁ ସେ ତାହା ବ୍ୟବହାର କରନ୍ତି ନାହିଁ) ବଡ଼ ନା ମାମୁଲି କ୍ଷୌରକର୍ମ ବଡ଼ ? ଅସଲ କାମ ହେଲା ଗରାଖ ମନ ଚିହ୍ନିବା, ଖବରଅନ୍ତର ଜାଣିବା ଓ ଜଣାଇବା । ଆମେ ଚୂଳ ନ ଛୁଇଁ କଇଁଚିଟା କଚ୍ କଚ୍ କରି ଗରାଖକୁ ମନ ଖୁସି କରି ଛାଡ଼ିଦେଲେ ସେ କଣ ପଇସା ଦବ ନାହିଁ । ତେବେ ଆଜିକାଲି ବେଶୀ ଅଡୁଆ କାମ ଏଇ ନିଶ କଟା ।''. ଚା ପିଇ ସାରି ବନ୍ଧୁ ସିଗାରେଟ୍‌ଟାଏ ଧରାଇଲେ ଛୋଟ କିରାସିନୀ ବତୀଟିରୁ । କହିଲେ, '' ଫେଶନ ଦିନକୁ ଦିନ  ବଦଳୁଛି । କେତେ ପ୍ରକାର ନିଶର ରୀତି ଆସିଲାଣି, ଗଲାଣି । 'ହିଟ୍‌ଲରୀ, 'ପ୍ରଜାପତିଆ', 'ଛେଳି ନିଶ', 'ତୋରାଣିପିଆ ନିଶ',

'ବେପରୱା ନିଶ', 'କ୍ଷମା ମାଗୁଛି' ନିଶ ଆସିଲାଣି ଗଲାଣି । ସେ ଦିନ ଜଣେ କଲେଜ ପ୍ରଫେସର ଆସିଥିଲେ ଯେ ତାଙ୍କ ସହିତ ଏଇ ନିଶ ନେଇ କଳିଗୋଳ ହେଲା । ତାଙ୍କ ବାଆଁନାକ ପୁଡ଼ା ତଳେ ଏଗାରଟି ଡାହାଣ ପୁଡା ତଳେ ନଅଟି ଚୂଳ ଥିଲା । ଅସମାନ ଅଛି ଭାବି ମୁଁ ଏଗାରକୁ ନଅ ଯିମିତି କରି ଦେଇଛି ସେ ମୋତେ ମାରିବା ଉପରେ । ସେ ବରାବର ଏଗାର ନଅ ରଖନ୍ତି ବୋଲି ଜାଣିଲି କ୍ଷମା ମାଗିଲି । ଏବେ ଯେଉଁ ଗାରେ ନିଶ ଉଠିଛି ତାକୁ ବନାଇବା କମାଇବା କାଠିକର ପାଠ । ଟିକିଏ ଏପାଖ ସେପାଖ ହେଲେ ସର୍ବ ନାଶ ତାଙ୍କର, ମୋର ଦୁର୍ନାମ ।''

ମୋଟା, କଳା, ନିଶୁଆ ଯେଉଁ ଗରାଖଟା ଅପେକ୍ଷା କରିଥିଲା ସେ ଏତିକିବେଳେ ଟିକିଏ ବିରକ୍ତ ହୋଇ କହିଲା, ''ଦି ଘଣ୍ଟା ହେଲା ବସିଲିଣି ଆଉ କେତେ ଡେରି କରୁଛ ?'' ବନ୍ଧୁଙ୍କ ଦିହରେ ଏତେ ପରାକ୍ରମ ରାତି ନଅଟାରେ ପ୍ରାଣପ୍ରାଚୁର୍ଯ୍ୟ ଥିଲା ବୋଲି ଜାଣି ନଥିଲି । ''ଆସନ୍ତୁ'' କହି ଦେଇ ଚେୟାର ପାଖକୁ ଚାଲିଗଲେ । ଲୋକଟା ଯିମିତି ବସିଛି ତାକୁ ବୁଲାଇଦେଇ ବାଘ ଗୋରୁଙ୍କ ଉପରେ ଲମ୍ଫ ଦେଲା ଭଙ୍ଗୀରେ ମାଡି ବସିଲେ । ମାଳୀ ଯେମିତି ଘାସକଟା କଳ ନେଇ ଲମ୍ୱା ଘାସଥିବା ପଡ଼ିଆରେ ସଫା କରିବାରେ ଲାଗିଯାଏ ସେମିତି କଳକଇଞ୍ଚି ଧରି କଚ୍ କଚ୍ କରି କାଟି ଦେଇ ଗଲେ ଯେ ଦଣ୍ଡକେ ଲୋକଟାର ମୁଣ୍ଡଟା ଉଭା ଲଙ୍ଗଳା ପରି ଦିଶିଲା । ତାପରେ ଚେୟାରର ପଛ ପଛ କାଠଟାକୁ ଉଠାଇ ଲୋକର ମୁଣ୍ଡଟାକୁ ଦି ହାତରେ ଧରି ସେଇ କାଠ ପଟାରେ ଜୋରେ ଥୋଇଦେଲେ । ଜଣାଗଲା ଯିମିତି ସେ ଗୋଟାଏ ମେଜର ଅପରେସନ୍ କରିବେ । ଗରାଖଟି ଟିକିଏ ଅତିଷ୍ଠ ହୋଇ ଉଃ ଆଃ ଯିମିତି କରିଛି ସେ ଚେୟାଟାକୁ ସାମନା ଆଡ଼କୁ ବୁଲାଇ ଆଣି ତା ଛାତିରେନିଜ ଆଣ୍ଠୁକୁ ଜୋରେ ଭିଡି ଲଗାଇ ଦେଲେ ଏବଂ ଚାହୁଁ ଚାହୁଁ ତା ମୁହଁରେ ଗୁଡ଼ାଏ ସାବୁନ ଲଗାଇଦେଲେ । କିଛି ଫେଣ ପାଟି ଭିତରକୁ ଚାଲିଗଲା । ଗରାଖ କ'ଣ କହିବାକୁ ଯାଇଥିଲା କିଛି କହି ନ ପାରି ଗଁ ଗଁ ଶବ୍ଦ କରନ୍ତେ ପୁଣି ଆଉ ଗୁଡାଏ ସାବୁନ ସର୍ଫ ଗୁଣ୍ଡରେ ଛାଞ୍ଚୁଣି ସାହାର୍ଯ୍ୟରେ ଚଟାଣ ଧୋଇଲା ପରି ଲୋକଟାର ଗାଲ ମୁହଁକୁ ବ୍ରାସ ସାହାଯ୍ୟରେ ପୁଣି ଫେଣାୟିତ କରି ଆଖିରେ କିଛି ବି ଫେଣ ପୂରାଇଦେଲେ । ଯାହା କିଛି ଜୀବନ ଥିଲା ତାହା ବି ଲୋକଟାର ଚାଲିଗଲା । ସେ ଧୀରସ୍ଥିର ହୋଇ ରହନ୍ତେ ବନ୍ଧୁ ବାରଣ୍ଡାକୁ ଯାଇ ସିଗାରେଟ୍ ପାନ ବରାଦ କଲେ ଓ ସିଗାରେଟ୍‌ଟାଏ ପୁଣି ଲଗାଇଲେ । ପନ୍ଦର ମିନିଟ୍ ପରେ ନୂଆ ଦମ୍ ନେଇ ଆସି ବାକୀ କାମ ଶେଷ କଲେ । ଚୂଳ ଝାଡ଼ିବା ଛଳରେ ବିଧାମାଡ଼ ଚଢ଼ାଇଲେ ବି ଲୋକଟା ଲଜ୍ଜାରେ ଉଁଚୁଁ କଲା ନାହିଁ । ''ଯାଆନ୍ତୁ, ଏଥର, ଫେର ଆସିବେ'' କହୁଁ କହୁଁ ମୁହଁନାକରେ ଅଧବୋତଲ ପାଣି ପିଚିକାରିରେ ମାରି ଆବାକାବା କରିଦେଲେ । ଜୀବନର ଚୋସ୍ତ ଅଭିଜ୍ଞତା ନେଇ ଲୋକଟି ଚାଲିଗଲା ।

ବନ୍ଧୁଙ୍କୁ ମାନସିକ ଚିକିତ୍ସା ମଧ୍ୟ ଆସେ । ଯେବେ ସେ କୌଣସି କାରଣ ଗରାଖ ବିଶେଷ ପ୍ରତି ବିମୁଖ ତେବେ ତାଙ୍କୁ ସେ ମାନସିକ ଯନ୍ତ୍ରଣାର ବ୍ୟବସ୍ଥା କରନ୍ତି । ''ସାର୍,

ଆପଣଙ୍କ ଚୂଳ ଉଠି ଯାଇଛି ।'' ''କେତୁଟା ଚୂଳ ପାଚି ଗଲାଣି, ଏତେ କମ ବୟସରେ ।'' ''ନିଶ ଗୁଡ଼ାକ ଆଉ ବୋଲ ମାନୁନାହାନ୍ତି । ଟାଉଁଶିଆ ରଙ୍ଗ ହୋଇଗଲାଣି ।'' ''ଆଚ୍ଛା, ଆପଣଙ୍କ ଚୂଳରେ ଅଣ୍ଡାଟାଏ ଭାଙ୍ଗି ଘଷିଦିଏଁ ?'' ''ଚୂଳ ଗୁଡ଼ାକର ମହମ ଲଗାଇ ଦେବି ?'' ''ଯାହା କୁହନ୍ତୁ, ଆପଣ ବୁଢ଼ା ହୋଇଗଲେଣି ।'' ''ଆପଣଙ୍କ ବାପାଙ୍କ ମୁଣ୍ଡ କ'ଣ ଚନ୍ଦା ପଡ଼ିଥିଲା କି ?'' ଏସବୁ ପ୍ରଶ୍ନର ଫଳ ଏଇ ହେଲା ଯେ ଗରଖ କେଶ-ବିନ୍ୟାସ-ଗୃହରୁ ବାହାରି ଗଲାବେଳେ ଭାବିବ ''ମୁଁ ବୁଢ଼ା ହେଲିଣି, ମୁହଁରେ ରେଖା ଦିଶିଲାଣି, ଚୂଳ ପଡ଼ିଯାଇଛି, ଚନ୍ଦାମୁଣ୍ଡିଆ ହୋଇଯିବି ଆଉ କେତେ ଦିନ ପରେ ।'' କି ମନସ୍ତାପ ! କି ଦୁଶ୍ଚିନ୍ତା ! ଯଦି ଏସବୁ ରୋଗର ନିଦାନ ମାଗିବେ ତେବେ ଯେଉଁ କାୟାକଳ୍ପ ଚିକିତ୍ସା ବନ୍ଧୁ ଆରମ୍ଭ କରିଦେବେ ସେଥିରୁ ବର୍ତ୍ତିବାର ଉପାୟ ପାଇବା କାଠିକର ପାଠ ହେବ ।

ଏଥର ମୋର ପାଳି ପଡିଲା । ଯେତିକି ଦେଖିଶୁଣି ଅଭିଜ୍ଞତା ହୋଇଥିଲା ସେଥିରେ ମୁଁ ଯୂପକାଷ୍ଠକୁ ନିଆଯାଉଥିବା ନିରୀହ ମେଷପରି ବ୍ୟବହାର ଦେଖାଇବାକୁ ବାଧ ହେଲି । ବନ୍ଧୁ ଦୟା ପରବଶ ହୋଇ ମୋତେ ଅନେକ ମହର୍ଘ ବହୁ ଦିର୍ଶିତାରୁ ଅବ୍ୟାହତି ଦେଲେ । କଥା ପ୍ରସଙ୍ଗରେ କହିଲେ ସେ ଏବେ ଏକ ନୂଆ ଡିପାର୍ଟମେଣ୍ଟ ଖୋଲୁଛନ୍ତି ; ସେଥିରେ କେଶ ଓ ନିଶ ବିନ୍ୟାସ ସହିତ ଗରାଖମାନଙ୍କର ଯୋତା ରଙ୍ଗ କରାଯିବ, ଛିଣ୍ଡା ମୋଜା ସିଲାଇ ହବ, ବୋତାମ ସାର୍ଟପେଣ୍ଟରେ ଲଗାଯିବା ବା ବଦଳ କରାଯିବ, ନଖ କଟାଯିବ, ଦାନ୍ତ ସଫା କରାଯିବ, ଦରକାର ପଡ଼ିଲେ ଉପାଡ଼ି ଦିଆଯିବ, କାନର ମଇଳା ସଫା କରାଯିବ ଓ ଆଖିରେ ଭ୍ରୂଲତାରେ ଓ ଆଖିରେ କଜଳ ଓ ସୁରମା ଦିଆଯିବ । ବଙ୍କା ଆଙ୍ଗୁଳି ସଳଖ କରାଯିବ । ସବୁ କାମ ଏକାବେଳେ ହେବ, ଆଠ ଦଶ ଜଣ ଏକତ୍ର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ତତ୍ତ୍ୱାବଧାନ ନେବେ । ଏ ଯୋଜନା ପୂଜାରେ ଯେଉଁ ଦିନ ବଳି ପଡିବ ସେଇ ଦିନଠାରୁ ଚାଲୁ କରାଯିବ । ଇୟାଡେ ସିଆଡେ ଚାହିଁ ଯେତେବେଳେ ସେ ଦେଖିଲେ ଯେ ମୋ ଛଡା କେହି ଗରାଖ ନାହାନ୍ତି ସେ ଏକାନ୍ତରେ ତାଙ୍କ ଉପୁରି ରୋଜଗାର କଥା କହିଲେ । ବାରବାଟୀ, କେସି ଚେରିଟିସ୍, ଆଦି ଲଟାରି ଖେଳର ଏଜେଣ୍ଟ ହିସାବରେ ଦୁଇ ତିନି ହଜାର ଟିକଟ ବିକି ସାରିଲେଣି । ସନ୍ତୋଷ ଟ୍ରଫି ଫୁଟବଲ ଖେଳର ସିଜନ ଟିକଟ ମଧ୍ୟ ବିକ୍ରି କରିଛନ୍ତି । ଓଡିଶା ଫୁଟବଲ ଏସୋସିଏସନର ଜଣେ ଅବୈତନିକ କର୍ମକର୍ତ୍ତା ହିସାବରେ ବଡ ବଡ ଖେଳ ପାଇଁ ଗୁଡାଏ ଟିକଟ ପାଆନ୍ତି । ପୁରୁଣା ପ୍ରେସିଡେଣ୍ଟଙ୍କ ସ୍ଥାନରେ ସେ ନିର୍ବାଚିତ ହୋଇପାରିଥାନ୍ତେ । କର୍ମ ବ୍ୟସ୍ତତା ଯୋଗୁଁ ସେ ନା କରିଦେଲେ । ବାରିକ ବାରିକାଣୀ ମିଶି ଦି ହଜାର ଭୋଟ ଯୋଗାଡ଼ କରି ପ୍ରାୟ ହଜାରେ ପାଇଥିଲେ । ଭୋଟ ସଂଗ୍ରହରେ ତାଙ୍କ ଦିହିଙ୍କ ଟାଉଟର ବଳିଯିବ ?

ପୂର୍ବ ଘନିଷ୍ଠ ସମ୍ପର୍କ ଦୃଷ୍ଟିରୁ ଏବଂ ବର୍ତ୍ତମାନର ମେଜାଜ୍ ଓ ପରିସ୍ଥିତିରୁ ସାହସ କରି ପଚାରିଲି ''ପଞ୍ଚୁ ବାବୁ, ମାସକୁ ପ୍ରାୟ ପାଞ୍ଚ ଛଅଶ ହେଉଥିବ ?'' ମୋର ଅନ୍ଦାଜ ଶକ୍ତି

ମୋଟେ ନଥିବାରେ ସେ ଦୟା ପ୍ରକାଶ କରି ଉତ୍ତର ଦେଲେ'' ହଜାରେ ବାରଶ କମ୍‌ରେ ଆଜି କାଲି କେଉଁ ବ୍ୟବସାୟ ବା ପେଷା ବା ଚାକିରି ଲୋକଙ୍କୁ ପୋଷାଇବ ? ମୁଁ ତ ଚାରିଜଣ ଏସିଷ୍ଟେଣ୍ଟଙ୍କୁ ନଗଦ ଆଠଶ ମାସ ଶେଷକୁ ଦିଏଁ । ତାପରେ ଘରଆଡେ ରୋଜଗାର ମଧ୍ୟ ଅଛି ବୋଲି ଚଳିଯାଏଁ ।'' ଆଶ୍ଚର୍ଯ୍ୟ ହେଇ ପଚାରିଲି ''ଘରଆଡେ ?'' ଆଖି ଖେଳାଇ ଭୂଲତା ନଚାଇ ଆତ୍ମାଶ୍ଳାଘାରେ ବନ୍ଧୁ କହିଲେ, '' ବାରିକାଣୀ ଶହେ ପାଞ୍ଚପା ମାସକୁ ରୋଜଗାର କରନ୍ତି । ପର୍ବ ପର୍ବାଣି ବିବାହ ବ୍ରତରେ ତାଙ୍କୁ ପ୍ରାୟ ସାରା ସହରରୁ ଡାକ ଆସେ । ଘରେ ଲୋକ ମଧ୍ୟ କମ୍ । ଦୁଇଟି ସନ୍ତାନ ଯଥେଷ୍ଟ'' – ଆମେ ମାନିଛୁଁ ।'' ବୈଷୟିକ, ପାର୍ଥିବ ଦୃଷ୍ଟିକୋଣରୁ ମଧ୍ୟ ପଞ୍ଚୁ ବାବୁ ମୋଠୁଁ ଗରୀୟାନ୍ ଜାଣି ହୀନ ପ୍ରଭ ହେଲି । କିନ୍ତୁ ମୋ ମୁହଁରେ ଜ୍ୟୋତି ଫୁଟାଇବା କାମ ବନ୍ଧୁ ସେତେବେଳକୁ ଆରମ୍ଭ କରିଦେଲେଣି । ଡେଟଲ, ଫିନାଇଲ, ବ୍ଲିଚିଂ ପାଉଡର ଆଦି ଯେତେ ଯେତେ କୀଟ ଦୁର୍ଗନ୍ଧନାଶକ ପଦାର୍ଥ ତାହାର ଗନ୍ଧ ମୁଁ ପାଇଲି । ଜଳୀୟ ଚିକିତ୍ସା ପରେ ପାଉଡର ଓ ସ୍ନୋ ଯଥାଯଥ ବୋଳାଗଲା । ଚୂଳରେ 'କଲପ' ଦିଆଗଲା । ପ୍ରାୟ ତନ୍ଦ୍ରାନ୍ୱିତ ଅବସ୍ଥାରେ ରଖି ସେ ମୋତେ ବିଦାୟ ଦେଲେ କାଙ୍କର କି ଅଭାବନୀୟ ପରିବର୍ତ୍ତନ । ଏଇ 'ପଞ୍ଚୁ'ର ପୂର୍ବପୁରୁଷ ଗୋବିନ୍ଦା ଚମ୍ପା ବେକରେ ନିର୍ମଳ ଭାବରେ ଖୁର ଚଲାଇଥିଲା । ଅଥଚ ଆଧୁନିକ କେଶ ବିନ୍ୟାସ ଗୃହରେ ସେଇ ଗୋବିନ୍ଦାର ଦାୟାଦ ମୋ ତଣ୍ଟିକୁ କେତେ ଆଦରରେ ଆଉଁଷାଆଉଁଷି କରି ମୋ ଦିହରେ ଶିହରଣ ଆଣି ଦେଲା । ଯେଉଁ ତପସ୍ୱୀ ବାବାଜିଗଣ ବା ଗାଲ ମୁଣ୍ଡରେ କେଶ ଅସ୍ପୃଷ୍ଟ ଅବସ୍ଥାରେ ରଖିଥିବା ବ୍ୟକ୍ତିମାନେ ଓ ମହିଳାବୃନ୍ଦ ପଞ୍ଚୁ ହାତରେ ମେଜିକ୍ ସ୍ପର୍ଶ ପାଇବାରୁ ବଞ୍ଚିତ ତାଙ୍କ ପ୍ରତି ଦୟା ସହାନୁଭୂତି ଦେଖାଇ ଯୋଡିଏ ମୁଦ୍ରା ବନ୍ଧୁଙ୍କୁ ଦେଇ ଋଣମୁକ୍ତ ହେଲି । ସିନେମାଟାଏ ଦୁଇଟଙ୍କା ଚାରିଅଣାରେ ଦେଖିଥିଲେ ବି ଏତେ ଆନନ୍ଦ ପାଇ ନଥାନ୍ତି ।

ଘରକୁ ଫେରିବା ବାଟରେ ଅନର୍ଗଳ ମୋ କାନରେ କଇଁଚିର କଚ କଚ ଶବ୍ଦ ଓ ବୋତଲରୁ ପାଣି ଛିଞ୍ଚାର ସେଁ ସେଁ ଶବ୍ଦ ଶୁଭୁଥାଏ । ମୁଁ ଭାବୁଥାଏଁ ସାମାଜିକ କ୍ଷେତ୍ରରେ ପଞ୍ଚୁ ବାବୁଙ୍କ ଅପରିସୀମ ତଥା ମୂଲ୍ୟବାନ୍ ଅବଦାନ ପ୍ରତି । ମେଡିକେଲ କଲେଜ ପାଖ ଦେଇ ଗଲାବେଳେ ମୁଁ ଭାବିଲି ପୂର୍ବକାଳରେ ପାଶ୍ଚାତ୍ୟ ଦେଶର ଡାକ୍ତର-ବାରିକ ପ୍ରଥା ଫେରାଇ ଆଣିଲେ ବୋଧହୁଏ ଭଲ ହୁଅନ୍ତା । ସେ ପ୍ରଥାର ପୁନଃପ୍ରବର୍ତ୍ତନ ଯିମିତି କାଳୋପଯୋଗୀ ସିମିତି ହିତକାରୀ ହୁଅନ୍ତା । ଦେଶରେ ଲୋକେ ଆପତ୍ତି ଓ ଚିତ୍କାର କରୁଛନ୍ତି ଯେ ଶିକ୍ଷା ପଦ୍ଧତି ବୈପ୍ଳବିକ ହେଉନାହିଁ । ତେଣେ ଡାକ୍ତରମାନେ ମଫସଲର ବ୍ଲକ ଅଞ୍ଚଳକୁ ଯିବାକୁ ଅନିଚ୍ଛା ପ୍ରକାଶ କରି ପ୍ରତିରକ୍ଷା ବିଭଗର ବିପଜ୍ଜନକ ଓ ଅସ୍ୱାସ୍ଥ୍ୟକର ସ୍ଥାନକୁ ଶ୍ରେୟ ମଣୁଛନ୍ତି । ସେମାନଙ୍କୁ ଯଦି ଛଅଟି ମାସ ଅଧିକା ଏମ୍.ଏସ. ପରି ସ୍ନାତକୋତ୍ତର ଶିକ୍ଷା କେଶ ଓ ଶ୍ମଶ୍ରୁ ବିଭାଗର (ଇ.ଏନ.ଟି. ପରି) ଦିଆଯାଆନ୍ତା ତେବେ ସେମାନେ ସହରମାନଙ୍କର ଗଳି ସନ୍ଧିମାନଙ୍କରେ ପି. ବାରିକଙ୍କ ହେଲ୍‌ଥ ସେଣ୍ଟାରମାନ ଖୋଲି ବସିଯାଆନ୍ତେ । ମୋଫସଲର

ବା ସହରର ବିପଜ୍ଜନକ ନେଫା ଅଞ୍ଚଳକୁ ଯିବାକୁ ବାଧ କରିବା ଦରକାର ପଡନ୍ତା ନାହିଁ । ବୈଜ୍ଞାନିକ ରୀତି ଓ ପ୍ରଣାଳୀରେ କେଶ ଓ ଶ୍ମଶ୍ରୁ ସେମାନେ ବିନ୍ୟାସ କରି ପାରନ୍ତେ ନାନାବିଧ ଅପରେଶନ୍ ମଧ କରନ୍ତେ । ଡାକ୍ତରଖାନାରେ ଭିଡ କମିଯାଆନ୍ତା । ହଜାରଙ୍କରୁ କମ୍ ପାଆନ୍ତେ ନାହିଁ । ଇଞ୍ଜିନିୟରଙ୍କ ପରି ଡାକ୍ତରମାନଙ୍କ ବେକାରୀ ସମସ୍ୟା ଭୟ ଦୂରୀଭୂତ ହୁଅନ୍ତା । ସୁସ୍ଥ ଓ ସୁଶ୍ରୀ ଏକା ଛାଞ୍ଚ ଓ ଡାଞ୍ଚାର ମଣିଷ ଗୁଡିଏ ଦେଶରେ ବୁଲୁଥାଆନ୍ତେ । ଜାତୀୟ ସଂହତି ଓ ଜାତୀୟତା ବାଦର ବିକାଶ ହୁଅନ୍ତା । ସେଥିପାଇଁ ମେଡିକେଲ୍ ସିଲାବସ୍ ବା ପାଠ୍ୟକ୍ରମରେ (ପି. ବାରିକଙ୍କୁ ସେତିକି ଜାଣିବା ପାଇଁ କୋଡିଏ ବରଷ ଲାଗିଛି ମନେ ରଖନ୍ତୁ) ଏଇ କେତୋଟି ବିଷୟ ବିଶ୍ୱବିଦ୍ୟାଳୟକୁ ଯୋଡିବାକୁ ପଡିବ । ଯେଉଁ ନାରୀ ଜାତିକୁ ଅଦ୍ୟାପି ପଞ୍ଚୁ ତା କବଳରୁ ଆଣି ପାରିନାହିଁ ସେମାନେ ମଧ ଲେଡି ଡାକ୍ତରଙ୍କ ତତ୍ତ୍ୱାବଧାନରେ ରହି ପୁରୁଷ ସହିତ ସମାନ ଅଧିକାର ପାଇପାରନ୍ତେ। ତେଣୁ ଲେଡି ଡାକ୍ତରଙ୍କ ପାଇଁ ପାଠ୍ୟକ୍ରମରେ ସାମାନ୍ୟ ଯୋଗ ଆବଶ୍ୟକ । ଉଭୟ ପୁରୁଷ ଓ ସ୍ତ୍ରୀ ଡାକ୍ତରଙ୍କ ପାଇଁ ପାଠ୍ୟକ୍ରମର ସୂଚନା । (୧) ଫିଜିଓ ଲଜି : - ଚୁଳ ଏବଂ ତାହାର ବିନାଶ; ନିଶର ଜନ୍ମବୃତ୍ତାନ୍ତ ଓ ତହିଁର ବୃଦ୍ଧି; ସାବୁନର ଦୃଷ୍ଟିଶକ୍ତି ସହିତ ସମ୍ପର୍କ (୨) କେମିଷ୍ଟ୍ରି:- ଚକ ଖଡିରୁ କିମିତି ପାଉଡର ପ୍ରସ୍ତୁତ କରାଯାଏ, ସାବୁନ ଫେଣରୁ କିମିତି ଫେସ୍ କ୍ରୀମ ପ୍ରସ୍ତୁତ ହୁଏ, ହାଣ୍ଡିକଳାରୁ କିମିତି କଜଳ ହୁଏ । (୩) ପ୍ରାକ୍ଟିକେଲ୍ :- ମୁଣ୍ଡ ଚମଡ଼ା, ତାକୁ କିମିତି ଉପାଡି ହୁଏ କାନଦ୍ୱୟ ଓ ସେ ଦୁଇଟି କିମିତି ଅନ୍ତର କରାଯାଏ । ମୁହଁର ଶିରାପ୍ରଶିରା କିମିତି ସେଗୁଡ଼ିକୁ ଇଚ୍ଛାମୁତାବକ କାଟି ବନ୍ଦ କରାଯାଏ । (୪) ରିସାର୍ଚ୍ଚ ପେପାର :- ଚୁଳ ସହିତ ଆଙ୍ଗୁଳିର ସମ୍ପର୍କ, ନିଶ ଓ ପ୍ରେମ , କୁନ୍ତଳ ଓ ପ୍ରେମ, ନାରୀର ନିଶ କିମିତି ମାଖୁନା ବା ହେଞ୍ଜେଡା ମୁହଁରେ ଲଗାଯାଇପାରେ । ଏଇ ବିଷୟ ନେଇ ପାସ୍ କରିଥିବା ଗ୍ରେଜୁଏଟଙ୍କୁ MBBH ଅର୍ଥାତ୍ ବେଚେଲର ଅଫ୍ ମୁଷ୍ଟାଶ୍ (ନିଶ) ବେଚେଲର ଅଫ ହେୟାରସ୍ (ଚୁଳ) କୁହାଯିବ । ଆଜିଠୁ ଆନ୍ଦୋଳନ କଲେ ପରବର୍ତ୍ତୀ ନିର୍ବାଚନବେଳକୁ ପ୍ରଥମ ଦଳ ଡାକ୍ତର-ବାରିକ ବାହାରିଥିବେ । ସେମାନେ ଇଚ୍ଛା କଲେ ଜଣେ ବାରିକ - ଡାକ୍ତର ବିଭାଗ ପାଇଁ ମନ୍ତ୍ରୀଟିଏ ଦାବି କରିପାରନ୍ତି । ଦୁର୍ନୀତିଗ୍ରସ୍ତ ବାରିକ-ମିସ୍ତ୍ରୀ (କି ଅଦ୍ଭୁତ ଅନୁବାଦ ନାମକରଣ) ବିଭାଗ ବାରିକ - ଡାକ୍ତର ବିଭାଗର ଅଭ୍ୟୁଦୟରେ ଛାଏଁ ଛାଏଁ ଉଠିଯିବ । ପି. ବାରିକ ହୁଏତ ଏ ନୂତନ ବିଭାଗକୁ ଅଳଙ୍କୃତ କରିବେ ।



# ପ୍ରୀତ୍ୟୁପହାର

'କୁନିଅପାର ବାହାଘର'' , ''ଟୁନୁ ଭାଇର ପଇତା ଘର'' ବୋଲି ଚିତ୍କାର କରି, ନାଚି ନାଚି ବୁଲ୍‌ବୁଲ୍ ଓ ଟୁନ୍‌ଟୁନି ଘର ଭିତରକୁ ପଶି ଆସି ବାପାଙ୍କଠାରୁ ସଂଗୃହୀତ ଶୁଭ ସଂବାଦଟି ଯିମିତି ପରିବେଷଣ କରି ଦେଇଛନ୍ତି ଗୃହିଣୀଙ୍କ ସରସ ବଦନରେ ହସ ସହିତ 'କେବେ' କେଉଁଠି 'କିଏ କହିଲା ?' 'ସତେ ନା କଣ ?' ଆଦି ଶତ ପ୍ରଶ୍ନ ଫୁଟି ଉଠିଲା । ସେ ମାଡିଆସିଲେ ପିଲାଦିହିଙ୍କଆଡକୁ ଆଗ୍ରହାତିଶଯ୍ୟରେ ।

ପିଲାଏ ଖୁସୀ; ଖିରିପିଠା ପାଚିଲା, ନୂଆ ଜାମାପଟା ମିଳିବ, ବାଣ ଫୁଟିବ, ସାଜସଜା ନାଚତାମସା ହବ, ଆହୁରି କେତେ କଣ । ଗୃହିଣୀ ବି ଆନନ୍ଦେ ଏକେବାରେ 'ଆଠ ଖାନା; କାରଣ ବାପଘରକୁ ଯିବାର ସୁଯୋଗଟାଏ ମିଳିଲା । ନିଜ ଭାଇଭଉଣୀ,ତାଙ୍କ ପିଲାଝିଲାଙ୍କ ସହିତ ପୁଣି ଭେଟଘାଟ ହବ । ବଡ଼ ଝିଅର କର୍ତ୍ତୃତ୍ୱ ଜାହିର କରି ବାପ ଘରେ ପୁଣି ନିଜ ବିବାହ ପୂର୍ବର ବନ୍ଧନହୀନ ଦୁନିଆଁର ମଧୁମୟ ଅଭିଜ୍ଞତା ପୁନରୁଜ୍ଜୀବିତ କରିବେ ।

କିନ୍ତୁ ଗୃହକର୍ତ୍ତା ଏ ସମ୍ବାଦ ଶ୍ରବଣରେ ନିଦାରୁଣ ବ୍ୟଥିତ, ଚିନ୍ତିତ, ବିଷଣ୍ଣ । ହଠାତ୍ ଗୁରୁଗୁରୁ ହୋଇ ତାଙ୍କ ପାଟିରୁ ବାହାରି ପଡ଼ିଲା ''ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ.... ପୁନ ର୍ଦ୍ୱିତୀୟଂ ସମୁପସ୍ଥିତଂ ମେ ..'' ଗୋଟିଏ ଦୁଃଖ ସରୁ ନ ସରୁଣୁ ଅନ୍ୟ ଏକ ଦୁଃଖ । ମାତ୍ର କେତୁଟା ଦିନ ପୂର୍ବରୁ ଜନୈକ ଆତ୍ମୀୟଙ୍କ ପୁଅର ଅନ୍ନ ପ୍ରାଶନରେ କିଛି ଶ୍ରାଦ୍ଧ ହୋଇଯାଇଛି, ଦି ଦିନ ପୂର୍ବରୁ ଉପରିସ୍ଥ ହାକିମଙ୍କ ବଦଳି ଉପଲକ୍ଷରେ ଯେଉଁ ଭୋଜିଭାତ ଓ ଉପହାର ପ୍ରଦାନ ଉତ୍ସବ ଅନୁଷ୍ଠିତ ହେଲା ସେଥିରେ ଚାନ୍ଦା ବାବଦ୍‌ରେ ଯେଉଁ ମୋଟା ଅର୍ଥବ୍ୟୟ ଘଟିଛି ସେଥିରେ ଅଣ୍ଟା ଜଖମ ହୋଇ ଯାଇଛି । ତାର ଅବ୍ୟବହିତ ପରେ ପରେ ଏ ଯେଉଁ ଯୁଗଳ ଉତ୍ସବର ଦୁଃସମ୍ବାଦ ତାର କୁଫଳ ବୋଝ ଉପରେ ନଳିତା ବିଡା ତ ନୁହେଁ ଦୁଇ କୁଇଣ୍ଟାଲ୍ ପଥରର ଗୁରୁ ଚାପ; ମେରୁଦଣ୍ଡ ସମ୍ଭାଳିବ ତ ? ଏଡିବାର ପ୍ରଶ୍ନ ତ ମୋଟେ ନାହିଁ, ଅନ୍ତକେ ଖସିଯିବାର ବି ଉପାୟ ନାହିଁ । ଦୂର ଜାଗା ହୋଇଥାନ୍ତା ଆଳ ଦେଖାଇ ଶୁଭେଚ୍ଛା ଆଶୀର୍ବାଦସୂଚକ ଆଠ କି ଦଶନମ୍ବରିଆ (ଡାକତାର ବିଭାଗକୁ ଧନ୍ୟବାଦ, କେତେ ଶସ୍ତାରେ ଝୁଡି ଝୁଡି ଆଶୀର୍ବାଦ ପଠାଇ ଲୋକେ ତ୍ରାହି ପାଉଛନ୍ତି, କେତେ ବିପଦରୁ !) ଟେଲିଗ୍ରାମଟିଏ ଉପନୟନ ବା ବନ୍ଦାପନା ଦିନକୁ ପଠାଇଥିଲେ ଚଳିଥାନ୍ତା ! ଏ ତ ତିନି ନମ୍ବର ଇଉନିଟ୍‌ରେ, ଏଇ ହାତ ପହୁଞ୍ଚରେ ଖସିଯିବେ କିମିତି ?

ଭାବିଲେ, ମୋଫସଲ ଅଞ୍ଚଳରେ ଥିଲେ, ଭଲ ଥିଲେ । ଆଗ କାଳରେ, କେଉଁଠି କେଉଁଠି ଏବେ ବି, ଗାଁ ଗଣ୍ଡାରେ (ଅବଶ୍ୟ ଗ୍ରାମାଞ୍ଚଳରେ ବି ସହରିଆ (ଅ) ସଭ୍ୟତା ଓ (କୁ) ପ୍ରଥାର ଅନ୍ଧାନୁସରଣ କରି ନବ୍ୟ ସଭ୍ୟଗଣ କ୍ରମେ ଦୁର୍ଦ୍ଦଶାଗ୍ରସ୍ତ ହେଉଛନ୍ତି ଅଜାଗା ଘାଆର ଯନ୍ତ୍ରଣାରେ) ଅନ୍ନପ୍ରାଶନ, ଜନ୍ମଦିନ, ବିବାହବ୍ରତବନ୍ଦାପନା ପାଇଁ ନିମନ୍ତ୍ରଣ ଆସିଲେ ନିମନ୍ତ୍ରଣ ରକ୍ଷାର ବିଶେଷ କିଛି ଅସୁବିଧା ନଥାଏ । ବଂଶପ୍ରାଣୀ ଦଳ ବାନ୍ଧି ଚାଲିଗଲ, ବନ୍ଧୁ ଯାହା ଦେଇ ପାରିଲା ତାକୁ ଆନନ୍ଦରେ ଖାଇ 'ଭଲ' 'ଖରାପ' କିଛି ମନ୍ତବ୍ୟ ନ ଦେଇ ସକୁଟୁମ୍ବେ ଫେରିଲେ । ଏ ଉପଲକ୍ଷରେ କିଏ ଫେଣାଏ କଦଳୀରେ ସତ୍ୟପୀର ପୂଜାଟାଏ ଆୟୋଜନ କରିଛି, କିଏ ତିନି ପଇସିଆ ତ୍ରିନାଥ ମେଳାର ବ୍ୟବସ୍ଥା କରିଛି, କିଏ ଅବା ମହାଦେବମନ୍ଦିରରେ ସହସ୍ର କୁମ୍ଭ କରୁଛି – ବେଶ୍, ସାମାନ୍ୟ ଅନାଡମ୍ବର ଉତ୍ସବରେ ଶିରଣି ପାଇଲ, ଥରେ ଚିଲମ୍ ଟାଣିଦେଲ ଭାଙ୍ଗମିଶା କଦଳୀଚକଟା ଟିକିଏ ସେବା କଲ, ଭୋଗ ବା ପ୍ରସାଦରେ ବସିଗଲ ଏବଂ ମୁଣ୍ଡରେ ପୂଜା ଫୁଲ ଛୁଇଁ ବା କାନରେ ଗୁଞ୍ଜି ଉଦ୍‌ଯୋକ୍ତାଙ୍କୁ ଆଶୀର୍ବାଦ କରି ବା ଟଙ୍କାଏ ଶଷାଏ ବରକନ୍ୟା ବା ବ୍ରହ୍ମଚାରୀ ହାତରେ ଲୋକଲୋଚନ ଅଗୋଚରରେ ଗୁଞ୍ଜି ଦେଇ ଶାନ୍ତିରେ ଘରକୁ ଫେରିଲ ବିଶ୍ରାମ ସମୟକୁ । ବାସ୍, ମନରେ ଗାଲିଜ୍ ନାହିଁ, କାହା ପ୍ରତି ଅଭିମାନ, ଈର୍ଷ୍ୟା, ଅସୂୟା ଆକ୍ଷେପ ନାହିଁ ।

କିନ୍ତୁ ବଡ ସହରରେ ବଡ଼ ବଡ଼ିଆଙ୍କ ଘରେ (ଯେତେ ବଡ଼ ସେତେ ବିରାଟ, ସେତେ ବିଭ୍ରାଟ !) ବଡ ବଡ କ୍ରିୟା କାଣ୍ଡ । ଦରିଦ୍ର ମଧ୍ୟବିତ୍ତ ବନ୍ଧୁ ବା ଜ୍ଞାତି କୁଟୁମ୍ବଟି ଦଳି ପେଷି ହୋଇ ମ୍ରିୟମାଣ ହୋଇଥାଏ । ଉତ୍ସବରେ ଯୋଗ ଦେଲେ ବା ନିମନ୍ତ୍ରଣ ରକ୍ଷା କରିବାକୁ ଗଲେ ନିଜର ମାନ ସମ୍ମାନ ଖ୍ୟାତି ଯେତିକି ଅଛି ତାକୁ ରଖିବାକୁ ପଡିବ । ପୁଣି, ଯାହାର ଉତ୍ସବ ତାର ମାନ ସମ୍ମାନ ଖ୍ୟାତି ଅନୁରୂପ ବ୍ୟବସ୍ଥା ଓ ବ୍ୟବହାର କରିବାକୁ ହେବ । ନିମନ୍ତ୍ରଣ ରକ୍ଷା ନ କରି ରକ୍ଷା ନାହିଁ; ରକ୍ଷା କଲେ ଅରକ୍ଷ, ନିରେଖ ।

ନିମନ୍ତ୍ରଣ ପତ୍ରରେ ଅବଶ୍ୟ ଲେଖାଥାଏ "ଲୌକିକତା ପରିବର୍ତ୍ତେ..." (ଏଇ ଲୌକିକତାର ଅର୍ଥ ସଂଜ୍ଞା କାହାକୁ ଜଣା ନାହିଁ) । କିନ୍ତୁ ତାହା ସରକାରଙ୍କ ତନଖି ବିଭାଗ – ଯାହା ସବୁଠି ଥାଏ କେଉଁଠି ନଥାଏ – ବା ଉପହାର କର (ସରକାରଙ୍କ କି ବିଚିତ୍ର ବୁଝାମଣା ! ଉପହାର ଉପରେ ବି କର !) ଆଖିରେ ଧୂଳି ଦେବା ପାଇଁ । ମନ୍ତ୍ରୀମାନଙ୍କ ସଂସଦୀୟ ସଭ୍ୟଙ୍କ ନିମନ୍ତ୍ରଣ ପତ୍ରରେ ଏମିତି ଲେଖାଥିବା ଆପଣଙ୍କ ଭଲା ମନେ ପଡୁଛି ? ଆଦାୟ ବ୍ୟବସ୍ଥାରେ ଯିମିତି, ଫନ୍ଦି, ଦେବା ବ୍ୟବସ୍ଥାରେ ମଧ୍ୟ ଆଇନ୍‌ର ଗଫିଲତି, ଗଲ୍‌ତି, ଲେକ୍ୟୁନା । ସେଇ ଆଇନ୍‌ଟି ହେଲା ଅତିଥି ନିୟନ୍ତ୍ରଣ ଆଇନ୍; ତାରି ସାଙ୍ଗକୁ ଖାଦ୍ୟ କଣ୍ଟ୍ରୋଲ ଆଇନ୍ । ଛୋଟ କାଗଜ ପ୍ଲେଟ୍‌ରେ କେବଳ ତିନି ଆଙ୍ଗୁଳିରେ ଚେନାଚୂର ଓ ଝୁରିଭଜା ସହିତ କଦଳୀଟିଏ ଥୋଇ ବିନମ୍ର ଭଙ୍ଗୀ ଓ କଣ୍ଠରେ ଅତିଥିବର୍ଗଙ୍କୁ କର୍ତ୍ତା ବେଳକାଳ ଉଣ୍ଡି କହିପାରନ୍ତ " ମଣିଷର ଇଚ୍ଛା ଅନୁସାରେ ଏବେ କ'ଣ କାମ ହୋଇପାରୁଛି ? ସବୁଥିରେ ତ କଣ୍ଟ୍ରୋଲ,

ଖାଦ୍ୟ କଣ୍ଟ୍ରୋଲ, ଅତିଥି କଣ୍ଟ୍ରୋଲ (ଉପହାରରେ କଣ୍ଟ୍ରୋଲର କଥାଟି କହିବେ ନାହିଁ) ପୁଣି ଜିନିଷ ପ୍ରତି ମିଳୁଛି କାହିଁ, ପଇସା ସିନା ଦେବି, ଚିଜ ନାହିଁ ? ଦୁନିଆଁ ସାରା ଲୋକ ପଠାଇ ବଡ ମାଛ ପାଇଲି ନାହିଁ, କିଲୋ ଦିକିଲୋ ମାଛ ଗୁଡାକ ଖାଲି କଣ୍ଟା ।'' ଆପଣଙ୍କ ଜଣେ ଦିଲ୍ଲଣ ନିଜ ଲେକା ସେତିକିବେଳେ 'ସତ ସତ' କହିଦେଲେ ହେଲା । (ରାମଚନ୍ଦ୍ର ମଙ୍ଗରାଜ, ଜଗନ୍ନାଥ କୃଷ୍ଣ ସମାଧିରେ ବଡ ଲେଉଟାଉ ଥିବେ ।) ଲିଙ୍ଗରାଜ ବା ଜଗନ୍ନାଥଙ୍କ ଦୟାରୁ ମହାପ୍ରସାଦଟି ପୁରୀ କଟକ ଲୋକଙ୍କୁ ରକ୍ଷାକରେ ।

ତେଣେ କିନ୍ତୁ ଉପହାର ସଂଗ୍ରହର ବିଧିବଦ୍ଧ ବ୍ୟବସ୍ଥା ହୋଇଥିବ । ବେଦୀରେ ଆଣ୍ଠେଇ ପଡି ପିଲା ଝିଲା ଟିଏ ଡଟ୍ ପେନ୍‌ରେ ଟିପା ଖାତାରେ ଲେଖି ଚାଲିଥିବ ବ୍ରହ୍ମଚାରୀକି କିଏ କ'ଣ ଭିକ୍ଷା ଦେଲା; ମୁରବୀ ସ୍ଥାନୀୟ ଜଣେ କେହି ନାଁ ଗାଁ ଉପହାର ମୁଦ୍ରା ପଦାର୍ଥ ଡାକି ଡାକି ଦେଉଥିବ । ପଛରେ ଯେଉଁମାନେ ଆସିବେ ବା ଲୁଚାଚୋରାରେ ନେଇଁଯିବେ ଦେବେ ସେମାନଙ୍କ ପାଇଁ ଘର ଭିତରେ ସ୍ୱତନ୍ତ୍ର ବ୍ୟବସ୍ଥା । ବର ବା କନ୍ୟା ପାଇଁ ଅନୁରୂପ ବନ୍ଦୋବସ୍ତ ବେଦୀରେ ନୁହେଁ, ନିଭୃତ ପ୍ରକୋଷ୍ଠରେ । କନ୍ୟା ପାଇଁ ଅଧିକ ସ୍ୱତନ୍ତ୍ର ବ୍ୟବସ୍ଥା । ଚତୁର୍ଥୀ (ଦ୍ୱିତୀୟା, ତୃତୀୟା, ସଦ୍ୟକ୍ରିୟା ବି ହୋଇପାରେ) ବନ୍ଦାପନା ସନ୍ଧ୍ୟାରେ କନ୍ୟାକୁ ଘଣ୍ଟାଏ ଦିଘଣ୍ଟା ଧରି ପାରଦର୍ଶୀଙ୍କ ସହାୟତାରେ ମଣ୍ଡନ୍ ଅଳଙ୍କରଣ ସିନେମା ଷ୍ଟାଇଲରେ କରାଯାଇ ଫଟୋ ନେବା ପରେ ସହଜ ପ୍ରବେଶସାଧ ଏକ କୋଠରୀରେଗଦି ଉପରେ ଠାକୁରାଣୀ କରି ବସାଇ ଦିଆଯାଏ । (ବାସର ଗୃହ ନୁହେଁ ସେ ପ୍ରକୋଷ୍ଠ ।) ସେଠି ବି ବରପକ୍ଷର ପ୍ରାୟଶଃ ନଣନ୍ଦଟି ଟିପା ଖାତା ଧରି ବସିଥାଏ । ରାତି ନଅ, ଦଶ, ଏଗାର, ଏପରି କି ବାର ବାଜିଲାଣି । ମଲ୍ଲିମାଳ ବାସି ହେଲାଣି । ଏଣେ କିନ୍ତୁ ଉପହାର ପ୍ରଦାନ ଉତ୍ସବ ଚାଲିଛି । ବହୂର ଆଖି ତେଣେ ଢୁଳୁଢୁଳୁ ହେଲାଣି । ଡାଙ୍କିଢୁଙ୍କି ହୋଇ ବସି ଝାଳରେ ତିନ୍ତି ଗଲାଣି ବିଚାରି, ଶୁଖିଗଲାଣି ମୁହଁଟି ମାନ ଘର କଥା ମାଆ ବାପ କଥା ଭାବି ଭାବି । କିନ୍ତୁ କ'ଣ କରିବ; ଉପହାର ଆସୁଛି । ପେଣ୍ଟାକୁ ପେଣ୍ଟା ହାର, ପୁଞ୍ଜାକୁ ପୁଞ୍ଜା ମୁଦି ।

କୋର୍ଟ କଚେରୀ ଥାନାର ଡାକ ସମନ ଆପଣ ଏଡି ଦେଇ ପାରିବେ; ବ୍ରତ ବିବାହର ନିମନ୍ତ୍ରଣ ପାରିବେ ନାହିଁ କୌଣସିମତେ । ଆପଣ ଦୋଦୋପାଞ୍ଚ ହେଲାବେଳକୁ ଆପଣଙ୍କ ସ୍ତ୍ରୀ ଓ ପିଲାଝିଲା ଆପଣଙ୍କୁ ବାଧ କରିବେ ବାହାରିବାକୁ । ଏ ବାହାରିବା କାମଟି ଏତେ ସହଜ ? ଗହଣାଗଣ୍ଠି ପଦେ ଉପହାର ଦେବାକୁ ବାହାରିଲେ ହଜାର ଉପରକୁ; ଲୁଗାପଟା ବାସନକୁସନ କଥା ଭାବିଲାବେଳକୁ ଶହ ଉପରେ କଥା । ତାଛଡା ସ୍ତ୍ରୀ ଝିଅପିଲାଙ୍କ ସଜବାଜ ଅଛି । କାହାର ଭଲ ଶାଢ଼ୀ ନାହିଁ ତ ଆଉ କାହାର ଭଲ ଚପଲ ନାହିଁ । ଯେଉଁଠିକି ଯାଇଛନ୍ତି ସେହି କ'ଣ ଆଳାପ ମେଳାପ, ଦେଖାସାକ୍ଷାତ୍ ପାଇଁ ? ସେଠି Doomday; ଆପଣଙ୍କର ବିଚାର ହେବ ଅନ୍ୟମାନଙ୍କ ତୁଳନାରେ, ସୌନ୍ଦର୍ଯ୍ୟ ତଥା ସମ୍ପଦରେ ।

ବନ୍ଧୁବାନ୍ଧବ ଅତିଥି ଅଭ୍ୟାଗତ ବିଦାୟ ନେବା ପରେ କିଏ କ'ଣ ଦେଲେ ସେଥିରେ ହିସାବ ନିକାଶ କରି ନିନ୍ଦାପ୍ରଶଂସାର ବିତରଣୀ ଉତ୍ସବ ହେବ । ତେଣୁ ନିମନ୍ତ୍ରିତ ବନ୍ଧୁ କୁଟୁମ୍ବ

ବା ଆତ୍ମୀୟ ସ୍ୱଜନଙ୍କ ମସ୍ତକରେ 'ଚକ୍ରଂ ଭ୍ରମତି' ଯେ ପର୍ଯ୍ୟନ୍ତ ନିମନ୍ତ୍ରଣର ଗୁରୁଦାୟିତ୍ୱଟି ସୁଚାରୁ ରୂପେ ତୁଲାଇ ପାରି ନାହାନ୍ତି । ତେଣୁ ଗୃହସ୍ଥର ନିମନ୍ତ୍ରଣ ବେଦନା ସହଜରେ ଉପଲବ୍ଧି କରି ପାରିବେ ଭୁକ୍ତଭୋଗୀମାତ୍ରେ ।

ଛୋଟ ଛୋଟ ମାମୁଲି କାମ ତ ଯା ସାଙ୍ଗକୁ ଅଛି । ରିକ୍ସା, ଡାକ, ଯୋଡା ମରାମତ କର, ରଙ୍ଗ ଦିଅ; ଦୋକାନରୁ ଦୋକାନକୁ ଚାଲ (ଅବଶ୍ୟ ଆଜିକାଲି ସେ କଷ୍ଟ ଓ ଖର୍ଚ୍ଚର ରକ୍ଷା କରିବା ପାଇଁ ସହର ବଜାରର ପ୍ରତି କ'ଣରେ ପ୍ରେଜେଣ୍ଟେଶନ ହାଉସ୍ ଖୋଲିଲାଣି ।) ଉପହାର ନିର୍ବାଚନରେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ମତ ପାର୍ଥକ୍ୟ, ବିଚ୍ ବଜାରରେ ଦୁଇଜଣଙ୍କ ମଧ୍ୟରେ କଳି, ଦ୍ୱନ୍ଦ୍ୱ । କାରଣ ଉପହାରଟି ଏମିତି ହେବ ଯାହା ଆଖି ଦୃଶିଆ ହବ, ଦାମ କମ୍ ହେବ, ଅମିଳ ହେବ ଏବଂ ନିଶ୍ଚୟ ନୂଆ ହବ । (ଯଦିଓ ଯନ୍ତ୍ରଯୁଗରେ ସେ ନୂଆ ବୋଲାଉଥିବା ଚିଜଟି କୋଟି କୋଟି ସଂଖ୍ୟାରେ ପ୍ରସ୍ତୁତ ହୋଇ ପୃଥିବୀଯାକ ଖେଳି ଯାଇଥିବ) ସିମିତି ଚିଜ ବା ସହଜେ ମିଳୁଛି କେତେକେ ? ଯାହା ହେଉ ନାନା ଆଶଙ୍କା ଦୁଷ୍ଚିନ୍ତା, ବିବେଚନା, ବେଦନା ଭିତର ଦେଇ ଯାଇ ସେ ମହାର୍ଘ ( ? ) ଅପୂର୍ବ ଚିଜ ଉପହାରଟି ପାଇଲେ ଏବଂ ଅତି ସନ୍ତର୍ପଣରେ ନିଜେ ହେଉ ବା ସ୍ତ୍ରୀଙ୍କ (ଚାଞ୍ଚଲ୍ୟକର ଆକର୍ଷଣୀୟ ନ ହେଲେ ସେ କେବେ ନାହିଁ ନିଶ୍ଚୟ) ଜରିଆରେ ପାତ୍ରସ୍ଥ ବା ପାତ୍ରୀସ୍ଥ କଲେ; ଏବଂ ରକ୍ଷା ପାଇଲେ, ଶାନ୍ତି ପାଇଲେ । କିନ୍ତୁ ଯଦି ସେଇ ମୁହୂର୍ତ୍ତରେ ମୁଣ୍ଡକୁ ଭାବନା ପଶିଲା ଯେ କସ୍ମିନକାଳେ ସେ ଉପହାରର ପ୍ରତିବଦଳର କ୍ଷୀଣତମ ଆଶାନାହିଁ ତେବେ ତଦଣ୍ଡେ ଆପଣଙ୍କ ମୂର୍ଚ୍ଛା ଓ ପତନ ଅଥବା ମସ୍ତିଷ୍କରୁ ରକ୍ତସ୍ରାବ ହେବ ନାହିଁ ତ ?

ସେ ଯାହା ହେଉ ଯେଉଁ ଦ୍ରବ୍ୟଟି ଏତେ ଚିନ୍ତା ବିବେଚନା ପରେ ଉପହାର ଦେଇ ଶାନ୍ତି ଲଭିଲେ ସେ ଚିଜଟି ଉପହାର ବା ଆଉ କଣ ଭାବିଛନ୍ତି ତ ? କାରଣ ଯିମିତି ସବୁ ମଣିଷ ମଣିଷ ନୁହନ୍ତି, ସବୁ ବହି ବହି ନୁହନ୍ତି ସିମିତି ସବୁ ଉପହାର ଉପହାର ପଦବାଚ୍ୟ ନୁହନ୍ତି । କେତେଗୁଡିଏ ତଥାକଥିତ ଉପହାରର ସ୍ୱରୂପ ଅନୁଧ୍ୟାନ କରନ୍ତୁ ତ ଯାହାକୁ ଆପଣ ଉପହାର କହୁଛନ୍ତି । ତାର ଅନେକ ନାଆଁ ଅଛି ଦେଶକାଳପାତ୍ର ଭେଦରେ । ଆମେ ଜାଣୁ 'ଦାନେନ ଭଗବାନ୍ ସ୍ୱୟମ୍' ତଥାପି ଦାନକୁ ଆମେ କସ୍ମିନ କାଳେ ଉପହାର କହିବୁ ନାହିଁ ।

ମୁଖ୍ୟମନ୍ତ୍ରୀ ବା ଲାଟ୍ ସାହେବ ଦୁର୍ଭିକ୍ଷ ବନ୍ୟାପ୍ରପୀଡିତଙ୍କୁ ହଜାରେ କମ୍ବଳ ଦେଲେ । ତାହା ଦାନ ନା ଉପହାର ?

ଆପଣ ପୁଅର ଏକୋଇଶିଆ, ଅନ୍ନପ୍ରାଶନ, ଜନ୍ମଦିନ ବା ଉପନୟନ ପାଇଁ ବନ୍ଧୁବାନ୍ଧବ ପ୍ରୀୟାପ୍ରୀତିଙ୍କି ନିମନ୍ତ୍ରଣ କଲେ । ସେମାନେ ଲୋକାଚାର (ଲୋକଲଜ୍ଜା)ରେ ଯେତେ ଯେତେ ଚିଜ ବା ଖେଳନା ଆଣିଥିଲେ ସେ ସବୁ ରଖିବାର ଖେଳିବାର ଜାଗା ନାହିଁ, ପିଲାର ଲୋଡା ନାହିଁ, ତାର ଖେଳିବାର ଶକ୍ତି ନାହିଁ । ସେଗୁଡାକୁ ଉପହାର କହିବେ ନା ବାପପୁଅ ଉଭୟଙ୍କୁ ବୋଝ ବୋଲି କହିବେ ? ଧରନ୍ତୁ ଆପଣଙ୍କର ରେଡିଓ, ଘଡି, ମୁଦି, ହାର,ଗୁଡାଏ ଅଛି ।

ପୁଅକୁ ଯେବେ ବିବାହବେଳେ ସେ ସବୁ ମିଳିଲା ତେବେ ଆଗ୍ରହ ବା ଆନନ୍ଦ ଥିବ ତ ? ଯାକୁ ଉପହାର କହିବେ ?

ପୁଅକୁ ବାହା ଦେବାପାଇଁ ଆପଣ କନ୍ୟାପିତାଠାରୁ ମଟର ସାଇକେଲ, ରେଡିଓ, ଟେପ୍‌ରେକର୍ଡ଼ାର ଏବଂ ପୁଅର ପଢ଼ାଖର୍ଚ୍ଚ ବାବାଦ୍ ମାସକୁ ତିନିଶ ଚାହିଁଲେ । ଯଦି ଦାୟଗ୍ରସ୍ତ ପିତା ସେ ସବୁ ଦେଲେ ତେବେ ଆପଣ ଉପହାର ପାଇଲେ ନା ଦାବି ହାସଲ କଲେ ? ଯାରି ଅନ୍ୟ ନାଆଁ ଡିମାଣ୍ଡ । ଖୁବ୍ ଛୋଟକାଟର ଡିମାଣ୍ଡ । ଯାହାର ମିଠା ନାଆଁ ଯଉତୁକ, ଯେଉଥି ପାଇଁ ଶହ ଶହ ଆତ୍ମୋତ୍ସର୍ଗ, ଆତ୍ମହତ୍ୟା, ହତ୍ୟା, ନିର୍ଯାତନା, ପ୍ରତିଦିନ କାଗଜରେ ପଢୁଛନ୍ତି ।

ସେ ଦିନ ଜନୈକ ଗ୍ରାମ୍ୟ ବ୍ୟାଙ୍କ ମେନେଜର ସହିତ ଗାଈଆଳ ମଇଁଷିଆଳଙ୍କ ଆଡ୍‌ଡ଼ାକୁ ଯାଇଥିଲି । ସେମାନେ କହିଲେ, " ଯଦି ଦଶଟା ଗାଈ ଆମଠୁଁ କିଣିବେ ତେବେ ଗୋଟାଏ ଗୋଟାଏ ଆପଣଙ୍କୁ 'ପାନଖିଆ' ଦେଇଦେବୁ । ଉପହାର ବି କହି ପାରିଥାନ୍ତେ । ବକ୍‌ସିସ୍, ପାନଖିଆ ଆଦି ଶବ୍ଦରେ ପରିମାଣଗତ ପାର୍ଥକ୍ୟ ଦିନେ ଥିଲା, ମଫସଲରେ 'ବିଡ଼ିଖିଆ' ଦୋକ୍‌ତାଖିଆ, ସହରରେ 'ଚାଖିଆ' ପଇସା ବୋଲି 'ଉପହାର' ର ଅନ୍ୟ ନାଆଁ ଶୁଣିବାକୁ ମିଳୁଛି ।

କଲେକ୍ଟର ସାହେବ ବଦଳି ହୋଇଯାଇଛନ୍ତି ତୃତୀୟ ଚତୁର୍ଥ ପାହିଆର କର୍ମଚାରୀ ତାଙ୍କୁ ଟିସେଟ୍ ଟିଏ ଉପହାର ଦେଲେ ଏକ ଚା ଭୋଜୀରେ ଜନୈକ ବଡ଼ ଇଞ୍ଜିନିୟର, ଜନୈକ କ୍ଷମତାପନ୍ନ ଏମ୍.ପି. ଏକ ବଡ଼ ଫେକ୍ଟରୀର ଜେନେରେଲ୍ ମେନେଜର ପ୍ରତ୍ୟେକ ପୁଅ ଝିଅର ବିବାହ ଉତ୍ସବକୁ ଅଫିସ କର୍ମଚାରୀ, ଫେକ୍ଟରୀ ୱାର୍କାର ବା କଣ୍ଟ୍ରାକ୍ଟରମାନଙ୍କୁ ନିମନ୍ତ୍ରଣ କଲେ ଏବଂ ସେମାନେ ଆଲମାରୀ, କୁଲର୍, ରେଫ୍ରିଜରେଟରଠାରୁ ଆରମ୍ଭ କରି ଏମ୍ବାସାଡାର କାର୍ ଏବଂ ବଡ଼ ଏମାଉଣ୍ଟର ଚେକ୍ ଉପହାର ନାଆଁରେ ସ୍ତୂପୀକୃତକଲେ ଏସବୁ ସ୍ଥାନରେ । ସେମାନେ ସମସ୍ତେ ପରମାର୍ଥୀ ତେଣୁ ଭୋଜିଭାତ ମହୋତ୍ସବ ଚାଲିଥିଲା ବେଳେ ରୁଦ୍ରାକ୍ଷମାଳାବିଭୂଷିତ କଣ୍ଠ ହୋଇ ମନ୍ତ୍ରୋଚ୍ଚାରଣରେ ସେମାନେ ବ୍ୟସ୍ତ ଥାନ୍ତି । ସେମାନେ ତିନିହେଁ ଉପହାର ନେଉଥାନ୍ତି ନା ଉତ୍କୋଚ୍ ନେଉଥାନ୍ତି ଯାହା ପାଇଁ ଉଭୟ ଦାତା ଓ ଗ୍ରହୀତାଙ୍କ ପ୍ରତି ଦଣ୍ଡବିଧାନ ବ୍ୟବସ୍ଥା ଅଛି । କଲେକ୍ଟର ସାହେବ ଯାହା ଗ୍ରହଣ କଲେ ତାହା ଉପହାର ନୁହେଁ ସମ୍ମିଳିତ ଚାନ୍ଦା । ଅଧୁନା କର୍ମଚାରୀଙ୍କ ସମସ୍ତ ଦୁଷ୍କୃତ ଏବଂ 'ପାନଖିଆ' ପ୍ରତି କାର୍ଯ୍ୟକାଳ ମଧ୍ୟରେ ଆଖିବୁଜି ଦେଇଥିବାର ପୁରସ୍କାର ।

ଆମେରିକା ବା ଅନ୍ୟାନ୍ୟ ବିଦେଶୀ ରାଷ୍ଟ୍ର ଯେଉଁ ଜାହାଜ ଜାହାଜ ଗହମ ଓ ଗୁଣ୍ଡଦୁଧ ଆମ ଦେଶବାସୀଙ୍କ ଉଦ୍ଦେଶ୍ୟରେ ପଠାଇ ଥାନ୍ତି ତାହା ଉପହାର ନୁହେଁ ଡୋନେସନ୍, ବଦାନ୍ୟତାର ଲକ୍ଷଣ ଗୋଟାଏ ଜାତିର ଅନ୍ୟ ଏକ ଜାତି ପ୍ରତି । ବ୍ୟକ୍ତି ପ୍ରତି ବ୍ୟକ୍ତିର ଉପହାର ନୁହେଁ । ବଦାନ୍ୟତା ଓ ଆତ୍ମୀୟତାରେ ପୃଥକ । ଏକା କୁଟୁମ୍ବ, ବନ୍ଧୁବାସ ମଧ୍ୟରେ କେତେବେଳେ କେତେବେଳେ ଯେଉଁ ଦିଆସିଲି, ଚଉକି, ଛତା ଟର୍ଚ୍ଚଲାଇଟ୍ ଆଦି ନିତ୍ୟ ବ୍ୟବହାର୍ଯ୍ୟ ଆବଶ୍ୟକୀୟ ପଦାର୍ଥର ଦିଆନିଆ ହୁଏ ତାହା ମଧ୍ୟ ଉପହାର ନୁହେଁ ।

ଶ୍ୟାମର ରାଜା ତାଙ୍କ ପରିଷଦ ବିଶେଷଙ୍କ ସର୍ବନାଶ କରିବାକୁ ଚାହିଁଲେ ତାଙ୍କୁ ଗୋଟିଏ ଅଭିନବ ଉପହାର ଦେଉଥିଲେ ଯାହା ହେଲା ଧଳା ହାତୀ । କାମ କିଛି କରିବ ନାହିଁ ଗୁଡ଼ାଏ ଖାଇ ମାଲିକର ସର୍ବନାଶ କରିବ । ଯାକୁ ଆମେ ପୁରସ୍କାର କହିବା ?

ଯିଏ ଅନ୍ଧ ତାକୁ ଛବି ଉପହାର ଦେବା, ଯିଏ ନିରକ୍ଷର ତାକୁ ବହି ଉପହାର ଦେବା, ଯିଏ ବଧିର ତାକୁ ରେଡିଓ ଉପହାର ଦେବା ଅର୍ଥ ସେମାନଙ୍କୁ ଅପଦସ୍ତ କରିବା ଅପମାନ ଦେବା । ଲୋକର ମନ ନ ଜାଣି ଉପହାର ଦେଲେ ଉପହାରର କିଛି ମୂଲ୍ୟ ହୁଏନାହିଁ । ଜାମା, ପେଣ୍ଟ, ଚିନି ଚା ଆଦି ଦରକାରୀ ଚିଜ କେବେ ଉପହାର ପଦବାଚ୍ୟ ହେବେନାହିଁ । ମାତ୍ର ଏସବୁ ମୁଁ ଯଦି ଗୋଟିଏ ବୁଢ଼ୀକି ଦିଏଁ ସେ ହୁଏତ ସେସବୁକୁ ଉପହାର ବିଚାରିପାରେ । ପୁଣି ସମୟ ଅନୁସାରେ ଯେଉଁ ଉପହାର ମିଳେ ତାହା ଉଭୟ ଗ୍ରହୀତା ଓ ଦାତାର ପରିତୃପ୍ତି ଆଣେ ନାହିଁ । ପୂଜାକୁ ପୂଜା ଲୁଗା, ପୂଜାଛୁଟୀକି ପୂଜା ବୋନାସ୍, ଚାନ୍ଦା ବା କର ବା ଖଜଣା ଆଦାୟ ପରି ।

ପ୍ରକୃତ ଉପହାର ଜଣକ ପାଖରୁ ଅନ୍ୟ ଜଣକ ପାଖକୁ ଯାଏ । ପୁଣି ଜିନିଷର ମୂଲ୍ୟ ବା ପରିମାଣ ବା ପ୍ରକାର ଉପରେ ପ୍ରକୃତ ବନ୍ଧୁତାର ମୂଲ୍ୟାୟନ ହୁଏ ନାହିଁ । ମିଳିମିଶି ଚାନ୍ଦା ସଂଗ୍ରହ କରି ଉପହାର ଦିଆଯାଏ ନାହିଁ । ଉପହାର ଯୋଡ଼ିଏ ହୃଦୟ ଯୋଡ଼ିଏ ମନର କଥା । ଉପଯୁକ୍ତ ଉପହାର ଉଭୟ ଦାତା ଓ ଗ୍ରହୀତାକୁ ଧନ୍ୟ କରେ । ମାଗି କରି ସମୁଧି ପାଖରୁ ଯେଉଁ ଫାଇଲ ବେଗ୍‌ଟା ଆଣିଛି ତାକୁ ମୁଁ ପ୍ରୀତ୍ୟୁପହାର ବୋଲି କହି ପାରିବି ? ଭିକ୍ଷାରେ ଯିମିତି ପ୍ରେମର ଇଙ୍ଗିତ ନ ଥାଏ ଦରିଦ୍ରକୁ ଅନ୍ନଦାନରେ ସେହିପରି ଉପହାରରେ ସୂଚନା ନାହିଁ ।

ଆଉ ଏକ କଥା ଭାବନ୍ତୁ । ଜନୈକ ବନ୍ଧୁ ତାଙ୍କ ମନ ଇଚ୍ଛାରେ ଜନୈକା ରମଣୀଙ୍କ ସହିତ ବିବାହସୂତ୍ରରେ ବାନ୍ଧି ହେଉଛନ୍ତି । ମୁଁ ଅବା କାହିଁକି ବାଧବାଧକତାରେ ପଡି ତାଙ୍କୁ କଲମଟାଏ ଉପହାର ଦେବି ତାଙ୍କ ପାଖରେ ଦୁଇ ଡଜନ ସିମିତି କଲମ ଥିଲେ ବି ? ମୋତେ ଧନ୍ୟବାଦ ଜଣାଇ ପୋଷ୍ଟକାର୍ଡ ପିଛା ଯେଉଁ ପନ୍ଦର ପଇସା ଖରଚ କରିବେ ସେଇ ପନ୍ଦର ପଇସାର ଆନନ୍ଦ ପାଇବେ ମୋର ପ୍ରଦତ୍ତ ସେଇ କଲମଟିକୁ ? ଅଦିନ ଫୁଲର ମହକ କେତେ ! ଫଗୁଣ ମାସରେ ମଲ୍ଲୀଟିଏ, ଶୀତ ଦିନରେ ଚମ୍ପାଟିଏ (ଯଦି ମିଳେ) ଯିମିତି ଆଶାତୀତ୍ ଅପ୍ରତ୍ୟାଶିତ ଯଥାର୍ଥ ଉପହାରଟି ସିମିତି । କିନ୍ତୁ ଶହ ଶହ ସଂଖ୍ୟାରେ ଯେଉଁ ଉପହାର ଅଜାଡ଼ି ହୁଏ ତାହା ନିନ୍ଦର ଭୂତ ପରି ଛାତିକୁ ଭାରାକ୍ରାନ୍ତ କରେ ଅଶ୍ୱସ୍ତିକର ହୁଏ । ଅଯାଚିତ ହୋଇ ଛାଏଁ ଛାଏଁ ଉପହାରଟିଏ ଆସେ ମୁକୁଳା ହାତରୁ ଆକାଶର ବାରିଧାରା ପରି ।

ମୋଫସଲ ଅଞ୍ଚଳରେ କାଁ ଭାଁ ଏବେ ବି ବିଧି ଅଛି କେହି ଆତ୍ମୀୟ ସ୍ୱଜନ ବନ୍ଧୁବାସର ଦଶାହକୁ ଭାର ପଠାଇବାର ଯିମିତି କନ୍ୟା ବିଦାୟ ବେଳକୁ ସାଙ୍ଗରେ ଭାର ଯାଏ ବାପଘରକୁ ବୋଇଁ ଘରକୁ । ତାକୁ ଉପହାର କହି କୁହନ୍ତି 'ପାଣି ସମ୍ଭାଳ' ଭାର ଅର୍ଥାତ୍ ବନ୍ଧୁ ବିପଦରେ ପଡ଼ିଛି ତା ଘର ଭାସିଯାଇଛି ସାହାଯ୍ୟ ଦେଇ ତାକୁ ବିପଦ ବନ୍ୟାରୁ ସମ୍ଭାଳି ରଖ, ନହେଲେ ବୁଡିଯିବ । ଏ କ୍ଷେତ୍ରରେ ପରିବେଶ ଓ ବାତାବରଣ ଭିନ୍ନ ଧରଣର । ଏ କ୍ଷେତ୍ରରେ ଫୁଟାଣି,

ବାହାଦୁରୀ, ପ୍ରତିଯୋଗିତା କିଛି ନାହିଁ, ନିନ୍ଦା ପ୍ରଶଂସାର ଅବକାଶ ନାହିଁ । ପାଣି କଖାରୁ ଥୋଡାଏ, ଦହି ହାଣ୍ଡିଟିଏ, କଦଳୀ କାନ୍ଧିଏ ବିବାହ ବ୍ରତର ଦୁଇ ଭରି ଓଜନର ହାରର ଉପହାରକୁ ବଳି ପଡେ ।

ପୂର୍ବ କାଳରେ ଉପହାରର ସ୍ୱରୂପ କିପରି ଥିଲା ତହିଁର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ନିଅନ୍ତୁ । କାଳିଦାସଙ୍କ ନାୟକ ଦୁଷ୍ମନ୍ତ ପ୍ରେମିକା ଶକୁନ୍ତଳାକୁ ଅଙ୍ଗୁରୀୟଟିଏ ଦେଇଥିଲେ । ତାଙ୍କର ରାଜଭବନରେ କ'ଣ ଅଭାବ ଥିଲା ? ସେମିତି ସେକ୍ସପିଅରଙ୍କ ଅର୍ଲାଣ୍ଡୋ ବାସାନିଓ ରୋସାଲିଣ୍ଡ ଓ ପୋର୍‌ଶିଆଙ୍କୁ ମୁଦିଟିଏମାନ ଦେଇଥିଲେ ଉପହାର ସ୍ୱରୂପ । ଏଇ ପ୍ରେମିକ ପ୍ରେମିକାଗଣ କେବେ କେଉଁଠି ଡିଣ୍ଡିମ ପିଟିନାହାନ୍ତି କ'ଣ ଦେଲେ କ'ଣ ପାଇଲେ ବୋଲି । ଅନସୂୟା ପ୍ରିୟମ୍ବଦା ପରି ସଖୀ ଆଗରେ ମଧ୍ୟ କହିନାହାନ୍ତି ଏଇ ଏକାନ୍ତ ଗୋପନୀୟ କଥାଟି, ଚିଜଟି । ରୋସାଲିଣ୍ଡ ପୋରଶିଆଙ୍କ ପକ୍ଷରେ ମଧ୍ୟ ତାହା ପ୍ରଯୁଜ୍ୟ । ଉପହାର ବିଜ୍ଞାପନର ଅପେକ୍ଷା କରେନି ଯିମିତି ରାଶି ରାଶି ଉପହାର ବିଜ୍ଞାପନ ଆମ ପାଞ୍ଜିର ପୃଷ୍ଠାମାନଙ୍କରେ ଥାଏ । ଆମ ଦେଶର ବହୂମାନେ ଯାହାକୁ ଦେଖନ୍ତି ତା ଆଗରେ କେତେ ଓଜନର କି କି ଗହଣା ପାଇଛନ୍ତି ତାକୁ ବଖାଣନ୍ତି; ତାଙ୍କ ସ୍ୱାମୀ ଅପେକ୍ଷା ଗହଣା ବେଶୀ ମୂଲ୍ୟବାନ୍ ଯିମିତି । ମୋର ଜଣେ ଗରିବ ବନ୍ଧୁ ଚଉଠି ରାତିରେ ତାଙ୍କ ସ୍ତ୍ରୀଙ୍କୁ ଟଙ୍କାଟିଏ ଉପହାର ଦେଇଥିଲେ । ତାଙ୍କ ସ୍ତ୍ରୀ ମରିଯିବା ପରେ ସେଇ ରୂପା ଟଙ୍କାଟି ତାଙ୍କ ସ୍ତ୍ରୀଙ୍କ ଫଟୋ ସହିତ ରଖିଛନ୍ତି ଚନ୍ଦନ ଫୁଲଦେଇ ।

ଏ ପ୍ରସଙ୍ଗରେ ସେ ଦିନର ଏକ ବିଚିତ୍ର ଘଟଣାର ଉଲ୍ଲେଖ କରୁଛି । ସକାଳୁ ଚା ପିଉଛି କାଳିଆ ଆସି ହାଜର । କାଳିଆ ମୋର ଦିନ ମଜୁରିଆ, ଖୁବ୍ ବିଶ୍ୱସ୍ତ ଓ ଅନୁଗତ । କହିଲା "ଗିରିହା ! ଆଜ୍ ଶଗଡ଼ ଗାଡ଼ି ଆଉ୍, ହଳିଆ ହଳକ ମୁଁ ନେବି ।" "କ'ଣ କରିବୁ ? କାଠ ଟାଣିବୁ ?" "ନାଇଁ ବାବୁ ! ବାହା ହେବି; ଖଣ୍ଡେ କନିଆଁ ପାଇଛି ଯେ ଆଜ୍, ଘିନି ଆସିବି ।" ମନେ ମନେ ହସି ହଁ କହିଦେଲି । ବେଳ ପ୍ରାୟ ତିନିଟା ହବ ମୁଁ ବେଶବସନ ହୋଇ ଅପେକ୍ଷା କରୁଛି ଗୋଟାଏ ଗାଡ଼ିକୁ ମୋତେ 'ବରାନୁଗମନ'କୁ ନେଇଯିବା ପାଇଁ ଦେଖିଲି ମୋ ଶଗଡ଼ ଗାଡ଼ିରେ କାଳିଆ ମୁଣ୍ଡରେ ପଗଡ଼ି ଓ ଆମ୍ବ ଡାଳ ଖଞ୍ଜି ସିନ୍ଦୂର ଲଗାଇ ବଳଦ ଅଡାଇ ଅଡାଇ ଆସୁଛି । ତା ପଛକୁ ତା ବାପ ମାଆ ଆଉ କନିଆଁ ଏବଂ ଆଉ ଜଣେ ବୋଧହୁଏ କନିଆଁର ସାନ ଭାଇ ବସିଛନ୍ତି । ନାଲି ଧଡିର ଅଣଓସାରି ଶାଢ଼ୀ ପିନ୍ଧି ବହୂ ବିନା ଓଢ଼ଣାରେ ବସିଛି । ଖୁସୀ ଲାଗିଲା ପିଲାଟା କେତେ କମ୍ ସମୟ ଭିତରେ ହାତକୁ ଦିହାତ ହେଲା । ନା ବାଜା, ନା ପ୍ରଶେସନ, ନା ଭୋଜୀ, ନା ଭାତ, ନା ନିମନ୍ତ୍ରଣ ନା ଉପହାର । ମିଆଁ ବିବି ରାଜି । ଆଶ୍ଚର୍ଯ୍ୟ କଥା ପରଦିନ ସକାଳେ ଦୁହେଁ ମୋ ଘରେ ହାଜର କାମ କରିବା ପାଇଁ । କୁତୁହଳୀ ହୋଇ ପଚାରିଲି "କାଳିଆରେ କି ପାଇଲୁ ? କାଳିଆ ଅପ୍ରତିହ ତ ହୋଇ ସାଙ୍ଗେ ସାଙ୍ଗେ କହିଲା " କି ଯେ ତୁ ପଚାରୁ, କନିଆଁଟା ଦେଲା ଯେ ହେଲାନି, ଆଉ କି ଦବ ? ପଚାରିଲୁ ଯଦି କହୁଛି ଏଇ କୋଦାଳଟା, ଏଇ କୁରାଢ଼ିଟା, ଏଇ ଦାଆ ଆଉ୍ ଏଇ ଶିକାବାହାଙ୍ଗିଟା ଦେଇଛି । ଆଉ ପାଛିଆରେ ତାର ନୁଗାପଟା ଖଣ୍ଡେ, ବେଲା ଗୁଟେ । ଆମର ଆଉ୍ କି ଦରକାର ।" ଏଇସବୁ

ଯଉତୁକ ଦେଇ ବାହାଘର ବାସି ଦିନ କାଳିଆ କାମ ପାଇଁ ମୋ ଦୁଆରେ ହାଜର ଅଥଚ ମୋର ପୁତୁରା ଚଉଠି ବାସି ଦିନ ତିନିମାସ ପାଇଁ କାଶ୍ମୀର ଯିବେ ମଧୁଚନ୍ଦ୍ରିକା ପାଇଁ ଏଠି ଆମ ଦେଶରେ କୁଆଡ଼େ ଭାରି ଭିଡ, ଗରମ ଯଦିଓ ଚଉଠି ପରଦିନ ବୁଢ଼ୀ ମାଆ ଛଡ଼ା ଘରେ କେହି ନ ଥିବେ ଏବଂ ବାତାନୁକୂଳ ଯନ୍ତ୍ର ଠିକ୍ କାମ କରୁଛି ।

ଆଜିକାଲି ସହରୀ ସଭ୍ୟତାର ଯେତେ ଯେତେ ପ୍ରସାର ହେଉଛି ସେତେସେତେ ଅପ-ଉପହାର (ଅପସଂସ୍କୃତି !) ପରି ବଢ଼ି ଚାଲିଛି ଏବଂ ପ୍ରକୃତ ଅପ୍ରାକୃତ ଉପହାର ବାଛବିଚାର ହେଉନାହିଁ । ଉଦ୍ଦେଶ୍ୟହୀନ ଓ ସ୍ୱେଚ୍ଛାକୃତ ଆଦାନ ପ୍ରଦାନ ହିଁ ଉପହାରର ମୂଲ୍ୟ ଓ ମର୍ଯ୍ୟାଦା ନିରୂପଣ କରିଥାଏ । କାଳିଆ ଓ ତା ଶ୍ୱଶୁର ମଧ୍ୟରେ କୋଡି କୁରାଢ଼ି ଦାଆ ଆଦି ଯେଉଁ ଉପହାର ଆଦାନ ପ୍ରଦାନ ହେଲା ତାକୁ ଆମେ କଣ କହିବୁଁ ? ଶ୍ରୀରାମଚନ୍ଦ୍ର ଦିନେ ଛବାକୁର ପାଣ୍ଡ ସୀତାଙ୍କ କପାଳରେ ସୁଗନ୍ଧି ସୁନୀଳ କଅଁଳ ତମାଳ ପତ୍ରଟି ଖଞ୍ଜି କର୍ଣ୍ଣପୂର କରିଦେଇଥିଲେ । ସେ ଉପହାର ସହିତ ଆଦିବାସୀ ଯୁବକଟିଏ ତାରସଙ୍ଗିନୀର ଗଭାରେ ଉଟଙ୍ଗ ବା ଅଖଣ୍ଡି ବା ଭୁରୁଡି ଫୁଲ ଉପହାର ସ୍ୱରୂପ ଦେବାର ଛବି ତୁଳନା କରନ୍ତୁ ! ସ୍କୁଲକଲେଜରେ ଯେଉଁ ଟଫିର ଆଦାନପ୍ରଦାନ ଚାଲେ ତାକୁ ଉପହାର ବୋଲି କେଉଁଠି ବିଚାରିବା ?

ମୋର ଜଣେ ଏକାନ୍ତ ଅନ୍ତରଙ୍ଗ ଯମଜ ସଦୃଶ ଜନୈକ ବିପତ୍ନୀକ ବନ୍ଧୁଙ୍କ କଥା କହି ଉପସଂହାର କରିବି । ରବିବାରିଆ ସକାଳେ ଦିନେ ତାଙ୍କ ଆଶ୍ରମକୁ ଯାଇଥାଏଁ । ଆଉଜା ହୋଇଥିବା କବାଟ ପେଲି ଦିଅନ୍ତେ ବନ୍ଧୁ ଚମକି ପଡିଲେ । ଦେଖିଲି ତାଙ୍କ ଆଖିରେ ଧାରଧାର ଲୁହ । ଚାରିପଟେ ଗୁଡାଏ ଫିକା ଗୋଲାପୀ ରଙ୍ଗର ପୁରୁଣା ଚିଠି ଫିଟା ହୋଇ ପଡ଼ିଛି । ମୁଁ ତତ୍‌କ୍ଷଣାତ୍ ଜାଣି ପାରିଲି ବନ୍ଧୁ ଖିଆଲରେ ତାଙ୍କ ସ୍ୱର୍ଗତା ପତ୍ନୀଙ୍କ ଏକଦା ଲିଖିତ ଚିଠିଗୁଡ଼ିକ ଫିଟାଇ ଫିଟାଇ ପଢୁଥିଲେ । ଆଶ୍ୱାସ, ପ୍ରବୋଧ ଦେଇ ବହୁବାର ଅନୁରୋଧ କରନ୍ତେ ବନ୍ଧୁବର କହିଲେ "ଏ ଚିଠି ଆମର ପ୍ରଥମ ବର୍ଷର ଚିଠି, ୧୯୩୯ ସାଲର । ବିଚାରୀ ବେଶୀ ପଢ଼ି ନଥିଲା, ଗୋଲ ଗୋଲ ପିଲାଳିଆ ଅକ୍ଷର, ବେଶି ଲେଖି ପାରେ ନି ଆଠ ଦଶ ଧାଡ଼ିରେ ଘର ଖବର ଲେଖିଥାଏ; ଫେଣାଇ ମୋ ପରି ଲେଖି ପାରେନି ଏଇ ଚିଠିଟା ମୋତେ ମୁହ୍ୟମାନ କରିଦେଲା, ସମ୍ଭାଳି ପାରିଲି ନାହିଁ । ଏ ଲଫାଫା ଭିତରେ କ'ଣ ଅଛି ଜାଣୁ ?" ଚିଠିର ଶେଷାଂଶ ପଢ଼ିଲେ " ତୁମେ ଯେଉଁ ବେଦାନା ଗଛ ଲଗାଇଥିଲ, ଯାହାର ଫୁଲ ତୁମେ ଥିଲାବେଳେ ଫୁଲଟି ଫୁଟିଥିଲା ତାହା ଝଡି ଯାଇ ଫଳ ଧରିଛି । ତୁମେ ଆସିଲା ବେଳକୁ ଫଳଟି ବଡ ହୋଇ ଯାଇଥିବ । ମୁଁ ଲଗାଇଥିବା ହେନାଗଛର ପ୍ରଥମ ଫୁଲର କେତୋଟି ଏ ଚିଠିରେ ପଠାଇଲି, ମୋର ତୁମକୁ ଉପହାର ।" ଛୋଟ ଛୋଟ କଳା ଶୁଖିଲା ଫୁଲ ହାତ ପାପୁଲିରେ ରଖି ଭୋ ଭୋ ଏଡେ ପାଟି କରି କାନ୍ଦିଲେ ଯେ ମୁଁ ବି ତାଙ୍କରି ସାଙ୍ଗରେ କାନ୍ଦିଲି । କି ପ୍ରୀତ୍ୟୁପହାର !



# ଦୋଷ ଧରିବେନି

ସେ ଦିନ ବରଯାତ୍ରୀ ସାଜି ଗୋଟାଏ ବାହାଘରରେ ଯୋଗ ଦେଇଥାଏଁ ଏବଂ ଇତର ଜନ ହିସାବରେ ଚିତାଚନ୍ଦନ ନେଇ ବେଦୀପାଖରେ ମିଷ୍ଟାନ୍ନ ଭୋଜନର ଡକରାକୁ ଅପେକ୍ଷା କରୁଥାଏଁ, ଶୁଣୁଥାଏଁ, କନ୍ୟା ଦାନ ବେଳର ମର୍ମସ୍ପର୍ଶୀ କରୁଣ, ଓ ମଧୁର ଶ୍ଳୋକଟି, 'ଅବ୍ୟଙ୍ଗେଚ ପତିତେଚ କ୍ଲୀବେ ଦଶଦୋଷ ବିବର୍ଜିତେ' । ମୋ ସାମନାରେ କରପତ୍ର ଯୋଡ଼ି ଷାଠିଏ ବର୍ଷର କନ୍ୟାପିତା ଏକ ଛବିଶ ବର୍ଷର ଅର୍ବାଚୀନ ଯୁବକକୁ ସାକ୍ଷାତ୍ ନାରାୟଣ ସ୍ଥାନରେ ସମ୍ବୋଧନ କରି କହୁଛନ୍ତି ''ଆପଣ ନିର୍ଦୋଷ, ନିଷ୍ପାପ; ମୁଁ ମହାପାପୀ ଝିଅ ଜନ୍ମ କରିଛି, ପୂର୍ବ ଜନ୍ମରେ ସତ୍ୟ କରିଥିଲି ଆଜି ସେ ସତ୍ୟ ପାଳନ କରି ପାଞ୍ଚୋଟି ହରତକୀ ସହିତ ଏ କନ୍ୟାକୁ ସମର୍ପଣ କରୁଛି, ଭଲ କରି ପାଳିବେ । ସେ କୁଳଟା, ଦୋଚାରୁଣୀ, କଳହା,ଡାକିନୀ,ହେଲେବି, ତାର ଦଶଦୋଷ ଧରିବେନି । ଏଇ ହେଲା ଆମ ଭାରତୀୟ ସଂସ୍କୃତି ଓ ଶିଷ୍ଟାଚାରର ପରଂପରା, ନିଦର୍ଶନ, ଆଦର୍ଶ । ମହାନୁଭବତାର ସେ ବରପାତ୍ରର ଶତସହସ୍ର ଦୋଷକୁ ନଧରି ସ୍ୱୀୟ କନ୍ୟାର ଆଦୌ ଦୋଷ ନଥିଲେ ବି ଅନୁନୟ ବିନୟ ହୋଇ 'ଦୋଷଧରିବେନି' କହୁଛନ୍ତି । ବରପାତ୍ର ବି ଦେବାଗ୍ନି ଗୁରୁ ସନ୍ନିଧିରେ ଅଂଗୀକାର କରି ଧର୍ମ ପତ୍ନୀ ଗ୍ରହଣ କରୁଛନ୍ତି । କିଂତୁ ବିବାହ ପରେ ପରେ କ'ଣ ହେଲା ? ନିଜ ସହଧର୍ମିଣୀଙ୍କ ସହ ଏଇ ଯେଉଁ 'ଦୋଷଧରିବେନି' ମହାମନ୍ତ୍ରଟି ଆଣିଲେ ତାକୁ ସେ ପ୍ରୟୋଗ କରୁନାହାନ୍ତି କାହିଁକି ? ସେକ'ଣ ନିଦରେ ଶୋଇଥିବା ନିରୀହବୁଢ଼ା ରଜାକୁ ହାଣିଛନ୍ତି ଯେ ମାକ୍‌ବେଥଙ୍କ ପରି ତାଙ୍କ ତଣ୍ଟିରେ କ୍ଷମା ପ୍ରାର୍ଥନା ସୂଚକ 'ଦୋଷଧରିବେନି' ପଦକ ଲାଖି ଯାଉଛି ? ବଚନେକା ଦରିଦ୍ରତା ? ଦୋଷ ଧରିବେନି ! କିଏ କାହିଁକି ଦୋଷଧରିବ ? ସେ କ'ଣ ନିଜେ ଦୋଷମୁକ୍ତ ? ମର୍ତ୍ତ୍ୟମଣ୍ଡଳେ ଜନ୍ମହୋଇ ଦେବତା ହେଲ ମଧ ଦୋଷ କରିବସିବେ । ସତୀ ସାବିତ୍ରୀ ବୋଲାଉଥିବା ଦଳେ ନାରୀ ଭ୍ରଷ୍ଟା ସଂଗିନୀକୁ ଯୀଶୁଙ୍କ ଆଗରେ ଉପସ୍ଥାପନ କରି ଦଣ୍ଡାଦେଶ ପ୍ରାର୍ଥନା କଲାରୁ ପ୍ରଭୁ କ'ଣ କହିଲେ ? ''ତୁମ୍ଭ ମାନଙ୍କ ଭିତରୁ ଯେ କେବେ ପାପକାମ କରିନି ସେ ପ୍ରଥମେ ତା ଉପରକୁ ଢେଲା ପଥର ଫିଙ୍ଗୁ '' । କେହି ଫୋପାଡ଼ିଲେ ? ନା ବିବେକର ଦଂଶନରେ ଜଣ ଜଣ ଚୋରଣୀ ପରି ଅନ୍ତର୍ଦ୍ଧାନ ହେଲେ ।

ଆମେ ମଣିଷ, ଏକାଠି ଏକ ସମାଜରେ ରହିବୁଁ । ଅବଶ୍ୟ କଳି ଉପୁଜିବ । ସାର୍ତ୍ରେ ଓ କାମ୍ୟୁଙ୍କ ଭିତରେ ମତ ପାର୍ଥକ୍ୟ ଥିଲା । ହେଲେ ମରିବାର ଆଠବର୍ଷ ପୂର୍ବେ ସାର୍ତ୍ରେ ପୁରୁଣା

ଅହନ୍ତା ଭୁଲି କହିଥିଲେ, A quarrel is nothing just another way of living together, ''କଳିଗୋଳଟା କିଛି ନୁହେଁ, ଏକାଠି ବଞ୍ଚି ରହିବାର, ସହବସ୍ଥାନରୁ, ଏକ ଉପାୟ ମାତ୍ର।'' ଯଦି ବଞ୍ଚିବାକୁ ହେବ ତେବେ ଭଲଭାବରେ ବଞ୍ଚିବ ନାହିଁ କାହିଁକି ?

''ଦୋଷଧରିବେନି'' କହିଲାବେଳେ ଆମେ ହତ୍ୟା, ଧର୍ଷଣ ଆଦି ଗୁରୁତର ଧର୍ତ୍ତବ୍ୟ ଅପରାଧ କହୁନୁ । ଯଦିଓ ଧର୍ମଶାସ୍ତ୍ର ମାନଂକରେ ମହାପାତକୀର ବି କ୍ଷମା ଅଛି, ଯଦି ସେ ଅନୁତାପ କରେ, ଦୋଷ ସ୍ୱୀକାର କରେ ପ୍ରକାଶ କରେ ଭଗବାନଙ୍କର ସମକ୍ଷରେ ।

ଆମର ପଡ଼ିଛି ନିତିଦିନଆଁ କଥା, ଆମ ନିଜ ଚଳଣି, ରୀତିନୀତି, ଆଚାର ବ୍ୟବହାର କଥା, ଯହିଁରେ ଆମେ ସାବଧାନତା ସତ୍ତ୍ୱେ ବାରଂବାର ଭୁଲ ଭଟକା କରିବସୁଁ , ଯାହା ହୁଏତ ଅପରାଧ ନୁହେଁ; ଧର୍ତ୍ତବ୍ୟନୁହେଁ । ଯାହାର ସାକ୍ଷୀ ସାବତ ଲୋଡ଼ାନାହିଁ, ଯାହା ଧରିଲେ ହୁଏତ କୋର୍ଟ କଚେରୀ ଦଣ୍ଡ ନାହିଁ, ନ ଧରିଲେ କ୍ଷତି ବି ନାହିଁ । ମାତ୍ର ଏଇ ସମାନ୍ୟ, କଥା ଆଚରଣରୁ ଏମିତି କ୍ଷତି ବିଭ୍ରାଟ୍ ଘଟିପାରେ ଯାହାର ପରିଣାମ ଯୁଦ୍ଧରେ ପରିଣାମଠାରୁ ଅଧିକ ଭୟାବହ । ଘଟଣାସ୍ଥଳରେ ରୋକ୍ ଠୋକ୍ ସମାଧାନ ନହେଲେ ରାସ୍ତାଘାଟ ଯୁଦ୍ଧକ୍ଷେତ୍ର ପାଲଟିଯିବ, ଜାନୁଆର ପରି ଆଂପୁଡ଼ା ଆଂପୁଡ଼ି ହୋଇ ଆମେ ଖଣ୍ଡିଆ ଖାବରା ହୋଇଯିବୁଁ, ପରିବାର ରାଷ୍ଟ୍ର ସର୍ବତ୍ର ଅଶାନ୍ତି ଲାଗିରହିଥିବ ।

ଧରନ୍ତୁ କଥା କହୁଁ କହୁଁ ପାଟିରୁ ପଦେ ଅକଥା କୁକଥା ବାହାରିଗଲା, ଯାଉଁ ଯାଉଁ କାହା ଦିହରେ ହାତ ବାଜିଗଲା, ଭୁଲରେ ଅନ୍ୟ କାହା ଆସନରେ ବସିପଡ଼ିଲୁଁ, ଠିକ୍ ସମୟରେ ଅଫିସରେ ପହଂଚି ପାରିଲୁଁ ନାହିଁ, କଥାଦେଇ କଥା ରଖିପାରିଲୁଁ ନାହିଁ- ଏସବୁ ଦୋଷ ତ୍ରୁଟିରୁ ଆମେ ସସମ୍ମାନେ ମୁକ୍ତିପାଇବା ଯଦି ଆଗରୁ ଟିକିଏ ତଳି, ମୁଣ୍ଡକୁ ନୁଆଇଁ ନରମ ଗଳାରେ କହୁଁ 'ଦୋଷଧରିବେନି' । ମନେ ରଖିବେ, ଶାଳୀନତା, ସୌଜନ୍ୟ, ଶିଷ୍ଟାଚାର ଏକ ତରଫା ନୁହେଁ । କିଏ ଜଣେ ଯଦି ଆପଣଙ୍କୁ ଲାଲି ଆଖି ଦେଖାଇଲା, ନିଶ ମୋଡ଼ିଲା, ମୁହଁକୁ ଧୂଆଁ ଛାଡ଼ିଲା ଇତ୍ୟାଦି ଇଚ୍ଛା ଅନିଚ୍ଛାକୃତ ଦୋଷ କରିବା ପରେ ଅନ୍ତରତା ସହିତ 'ଦୋଷଧରିବେନି' କୁହେ ତେବେ ତାକୁ ମାର୍ଜନା ପାଇଁ ପ୍ରସ୍ତୁତ ଥିବେ । ଯେ କ୍ଷମା ମାଗେ ସେ ଯିମିତି ଧନ୍ୟ ଯେ କ୍ଷମା ଦିଏ ସେ ବି ସେମିତି ଗୌରବର ଅଧିକାରୀ । ଅଂହିସା ଯେପରି ଦୁର୍ବଳତାର ପରିଚୟ ନୁହେଁ କ୍ଷମା ପ୍ରାର୍ଥନା ବି ସେହିପରି ହୀନବାର୍ଯ୍ୟର ଲକ୍ଷଣ ନୁହେଁ ।

କେହି କେହି କହିବେ, ଦେଷାଃ ବାଚ୍ୟା ପୁରୋତରପି । ସାଧୁ ସାବଧାନ ! ଦେଶ କାଳ ପାତ୍ର ଭେଦରେ ଦୋଷ ଧରିବା ବ୍ୟବସ୍ଥା କରିବେ । ଏବକାର ଗୁରୁଶିଷ୍ୟ ଉଭୟ ଅତିମାତ୍ରାରେ ଭାବପ୍ରବଣ, ସ୍ପର୍ଶକାତର, ମାଡ଼ ଖାଇଯିବେ । ବନ୍ଧୁଙ୍କ ଦୋଷତ୍ରୁଟି ଦେଖାଇଲେ ହୁଏତ ବନ୍ଧୁଙ୍କ ହରାଇବେ । ତେଣୁ ଦୋଷତ୍ରୁଟି ଧରିବା ଅଭ୍ୟାସ ଛାଡ଼ନ୍ତୁ । ଅନ୍ୟର ଦୋଷ ଧରୁଁ ଧରୁଁ ନିଜକୁ ବି ଧରିବେ ଏବଂ ଯାହା ଧାଡ଼ିଏ ଅଧେ ଲେଖୁଛନ୍ତି ତା ବି ଲେଖିପାରିବେ ନାହିଁ । ପିଠାରୁ ରନ୍ଧ୍ର ଗଣୁଥିଲେ ପିଠାରୁ ସୁଆଦ ପାଇବେ ନାହିଁ । ମାଛି ବ୍ରଣ ଖୋଜେ, ଆପଣ ଫୁଲ ଖୋଜନ୍ତୁ । ନିଜ ମୁହଁରେ ଅଗଣିତ ବସନ୍ତ ଦାଗ ଥାଉଁ ଥାଉଁ ସାଂଗ ସାଥୀର ମୁହଁର ଗୋଟିଏ ବ୍ରଣକୁ ଆଂଗୁଳି ଦେଖାଇଲେ ଜନେ ହସିବେ ।

ଆମ ସମାଜରେ ଯିମିତି ସୌଜନ୍ୟ ସୂଚକ ଦୋଷ ଧରିବେନି, ଆଜ୍ଞା, ମାଫିଦେବେ, ଅବଧାନ ମାଫ୍ କରିବେ, 'ମାଫି ମାଗୁଛି' 'ଭୁଲ ହୋଇଗଲା' 'କ୍ଷମା ଦେବେ' 'ଦୟାକରି' 'କିଛି ମନେ କରିବେନି' 'କିଛି ଭାବିବେନି', ଆଦି ପଦମାନ ଅଛି । ଇଂରାଜୀରେ ବି ସିମିତି ରାଶି ରାଶି ଶବ୍ଦ ରହିଛି ଯଥା Excuse me sir, 'Never mind please, Thank you,sorry pardon me, forgive and forget, beg apology, ଆଦି । କିଂତୁ ଶିଷ୍ଟାଚାର ଦୃଷ୍ଟିରୁ ଇଂରେଜ ମାନେ ଯେମିତି ସ୍ୱାଭାବିକ ରୀତିରେ, ଅଭ୍ୟାସ କଲାପରି ବ୍ୟବହାର କରିଥାନ୍ତି । ଆମେ ନିହାତି ଦରକାର ନ ପଡ଼ିଲେ କରୁନ; କେବଳ ଖୋସାମତ ପାଇଁ ସେ ସବୁର ଅପବ୍ୟବହାର କରିଥାଉଁ । ଆମେ ଭୁଲିଯାଉଁ ସେ ଆପାତତଃ ଅଦରକାରୀ ଏଇ କଥା ଗୁଡ଼ାକ ହାଟ ବଜାର କଲାବେଳର ରେଜା ଖୁଚୁରା ପଇସା ପରି ଦୁନିଆଁ ହାଟରେ ଅତ୍ୟାବଶ୍ୟକ ଏଇ ଶବ୍ଦ-ଗୁଡ଼ାକ ସମାଜ କୁଳକୁ ଚଳାଇବାରେ ମୋବିଲର କାମ ଦିଏ । ଆମର ସାଧୁ ସନ୍ଥମାନେ ଯେତେ ଯେତେ ମହାବାଣୀ ଦେଇଛନ୍ତି, 'ଦୋଷଧରିବେନି' ତା'ର ସଂକ୍ଷିପ୍ତସାର । ଏଇଟି ଗୋଟିଏ ଚାବିକାଠି, ଯାଦୁମନ୍ତ, ଯାହା ଅକ୍ଳେଶରେ ରୁଦ୍ଧଦ୍ୱାର ଫିଟାଏ, ଲୌହ ପାଚେରୀ ଭାଙ୍ଗି ଦିଏ ।

ଦୁଃଖର କଥା ଯେ ଯୋଡ଼ାଏ ମହାଯୁଦ୍ଧ ପରେ ପରେ ସ୍ୱାଧୀନତା ପରର ସର୍ବବ୍ୟାପୀ ଦୁର୍ଗତି ଅଧୋଗତି ଆମକୁ ଏକ ଶିଷ୍ଟାଚାର ବିରହିତ ଦୁନିଆଁକୁ ଆଣିଛି ଯାହାଫଳରେ ତୁ, ତା, ବେ, ବା ଆଦିର ବହୁଳ ବ୍ୟବହାର ହେଉଛି । ଅଶିଷ୍ଟାଚାରର ସଂକ୍ରାମକ ରୋଗ ପରି ମାରାତ୍ମକ । ଶିଷ୍ଟାଚାର ଯିମିତି ସୁସ୍ଥ ବାୟୁମଣ୍ଡଳ ସୃଷ୍ଟିକରେ, ଆଶାଳୀନତା ସିମିତି ଅନିଷ୍ଟକର ପ୍ରତିକ୍ରିୟା ଶୃଙ୍ଖଳା ଗଢ଼େ । 'ଶାଶୁ ମାରୁଥାଏ ବୋହୂକୁ, ବୋହୂ ଛାର ହୋଇ ମାରିବ କାହାକୁ, ମାରୁଥାଏ ଚୂଲିମୁହଁକୁ ।' ତେଣୁ ଦୋଷ କଲାମାତ୍ରେ, ଦେଖିଲାମାତ୍ରେ ମୂଳରୁ ତାକୁ ମାରିବା ଦରକାର । ଦେଖିବେ ଗୋଇଁଠା ମାରି 'ବିଷ୍ଣୁ' କରୁନାହାନ୍ତି; ନରହତ୍ୟା କରି ଗୋଦାନରେ କେବେ ପାପମୋଚନ କରୁନାହାନ୍ତି ।

ଏଥର ଶାସ୍ତ୍ର ପୁରାଣ ଗାଥା ଶୁଣନ୍ତୁ । ମଦନ ଓ ରତି ଅଭିଷେକୋତ୍ସବକୁ ପଛେ ଆସି ଆଗେ ପଶିଲେ ଏବଂ ବିଧି ଲଘନ କରି 'ଦୋଷ ଧରିବେନି' କହିଲେ ନାହିଁ । ସୂର୍ଯ୍ୟଦେବ ବି ଏ ସାମାନ୍ୟ ବ୍ୟତିକ୍ରମକୁ ଛାଡ଼ି ଦେଲେନି । ଦୁହିଁଙ୍କ ସଂଘର୍ଷ ଫଳରେ ବିଚାରୀ ଚନ୍ଦ୍ରଭାଗା ମଲା, ସୂର୍ଯ୍ୟଦେବଙ୍କର ମନ୍ଦିର ଭାଙ୍ଗିଲା । ଅନସୂୟା ପ୍ରିୟମ୍ବଦା ବାରମ୍ବାର 'ଦୋଷ ଧରିବେନି' କହିଲେ ସୁଦ୍ଧା ଦୁର୍ବାସା 'ଘେନ ପୂଜ୍ୟପୂଜା ବ୍ୟତିକ୍ରମ' କହି ଅଭିଶାପ ଦେଲେ । ଶକୁନ୍ତଳାଙ୍କ ଦୋଷ କ'ଣ ନା ସେ ସ୍ୱାମୀଙ୍କଠାରେ ଲୟ ରଖିଥିଲା । ଗୌତମ ସାମାନ୍ୟ କଥାକୁ ଧରି ବସି ଅହଲ୍ୟାକୁ ପାଷାଣ କରି ଦେଲେ । ସାକ୍ଷାତ ପ୍ରଭୁ ରାମଚନ୍ଦ୍ର ସତୀସ୍ୱାଧୀ ସୀତାଙ୍କୁ ନିଆଁରେ ପୋଡ଼ି ଜଳାଇ 'ଦୋଷ ଧରିବେନି' କହିଲେ ନାହିଁ ବରଂ ଆଳ ଦେଖାଇ ଅନ୍ତସତ୍ତ୍ୱାକୁ ଅରଣ୍ୟକୁ ପଠାଇଦେଲେ । ଉତ୍ତର ରାମ ଚରିତ ତ ଉତ୍ତର ସୀତା ଚରିତ । କାରଣ ସ୍ୱାମୀଙ୍କ ସବୁ ଦୋଷକୁ ମୋ ଅର୍ଜିତ ପାପ ବୋଲି କହି ସୀତା ଦେବୀ ଓଲଟି କ୍ଷମା ଦେଲେ । ଯଜ୍ଞବେଦୀରେ

ସର୍ବସାଧାରଣରେ'ଦୋଷଧରିବେନି' ପଦକ କହିଥିଲେ ବସୁଧା ଫାଟି ନଥାନ୍ତା । କ୍ରୋଧଂ ପ୍ରଭୋ ସମ୍ବର' ଅର୍ଥାତ୍ ଦୋଷଧରିବେନି ପଦକ ମର୍ତ୍ତ୍ୟରେ ପହୁଂଚୁ ନ ପହୁଂଚୁଣୁ ଦେବାଦିଦେବ ମଦନକୁ ଭସ୍ମ କରି ଦେଲେ । ସତରେ କେଡ଼େ କ୍ରୋଧୀ ମୁନି ଋଷି ଦେବତାଗୁଡ଼ାକ ! ଆମ ସାଙ୍ଗରେ ସେମାନେ ଚଳି ପାରନ୍ତେ ! ଘର କଥା ଶୁଣନ୍ତୁ । ସେଦିନ ଦୁର୍ବାସା ପ୍ରତିମ ପ୍ରିନ୍ସିପାଲଙ୍କ ଠାରୁ ଭର୍ତ୍ସନା ଶୁଣି ମୁଁ ଯଦି 'ଦୋଷ ଧରିବେନି' କହିଥାନ୍ତି ସବୁ ମାମଲା ତୁଟିଥା'ନ୍ତା । ତା' ନ କରି ମୁଣ୍ଡ ଗରମରେ ଘରକୁ ଆସି ଦେଖେ ଦରଜାରେ ତାଲା । ଠଣାରେ ଚାବିକାଠି ନାହିଁ । ଖାଡ଼ାପହରା ଦେଉଁଥାଏ, ତର୍କଣା କରୁଥାଏ । ସ୍ତ୍ରୀଙ୍କ ମୁଣ୍ଡ ଫଟାଇବି ନା ଛାଡ଼ପତ୍ର ଦେବି । ଏତିକିବେଳେ ଦେଖିବି ଧଇଁସଇଁ ଝାଳଗମ ଗମ ହୋଇ ସେ ଆସୁଛନ୍ତି । ମୋ ଡିମା ଡିମା ଲାଲ ଆଖି ଦେଖିଲା ମାତ୍ରେ ସେ ଦୂରରୁ ଟିକିଏ ହସି ହୃଦ୍ୟଠାଣିରେ କାନ୍ଦ କାନ୍ଦ ହୋଇ କହିଗଲେ ''ହେ ମୋର ଭୁଲ ହୋଇ ଯାଇଛି । ଦୋଷ ଧରିବେନି' ତୁମକୁ ନ କହି ତରବରରେ ଚାବିକାଠି ନେଇ ସିନେମା ଚାଲିଗଲି'' ସାଙ୍ଗେ ସାଙ୍ଗେ ପିତ୍ତ ତଳକୁ ଖସି ଆସିଲା । ସେଦିନ ରାତିଟା କେଡ଼େ ଆନନ୍ଦରେ ନ କଟିଲା !

ପରଦିନ ସାଇକେଲରେ ଅଣଓସାରିଆ ରାସ୍ତାଦେଇ କଲେଜକୁ ଯାଉଥାଏ ଦେଖିଲି ସଡ଼କ ମଝିରେ ଯୋଡ଼ାଏ ଟୋକା ସାଇକେଲ ଉପରେ ଫରକଟା ଗୋଡ଼ରଖି, କାନ୍ଧରେ ହାତପକାଇ କଡ଼ା ଜରଦାଦିଆ ପାନ ପାଟିରୁ ସିଗାରେଟ ଧୂଆଁ ଛାଡ଼ୁଛନ୍ତି । ଅକସ୍ମାତ ମୋ ହାତମୁଠା ଜଣକ ଦିହରେ ବାଜିଗଲା ଦୁଇ ନାଗବଚ୍ଛା ଫଣାଟେକି ଯିମିତି ଫଁ କରି ଦଶିଂବାକୁ ଉଦ୍ୟତ ହୋଇଛନ୍ତି ମୁଁ ଓହ୍ଲାଇ ପଡ଼ି ତାଙ୍କୁ ଠେଙ୍ଗାରେ ନ ମାରି ଗାରିଡ଼ିମନ୍ତ୍ର ପଢ଼ିଦେଲି 'ଦୋଷ ଧରିବେନି' । ସେମାନେ ମୋ ଦୋଷ ଧରିବେ କ'ଣ ଓଲଟି ନିଜ ଦୋଷ ମାନି କହିଲେ ''ଆପଣଙ୍କ ଦୋଷ ନାହିଁ ସାର, ଆମେ ରାସ୍ତା ମଝିରେ ଛିଡ଼ା ହେଇ ଭୁଲ କରିଛୁ ।'' ମୁଁ ଆଜି ଭାବୁଛି ସେଦିନ ଓପରଓଳି ବାସକଣ୍ଡକ୍ଟରଟା ମୋ ବୁଦ୍ଧି ପ୍ରୟୋଗ କରିଥିଲେ ଯୋଡ଼ାଏ ବାସ ପୋଡ଼ି ନଥାନ୍ତା କି ଲୁହବୁହା ଗ୍ୟାସ ଓ ସାନ୍ଧ୍ୟ ଆଇନ ଯାକେ କଥା ଯାଇ ନଥାନ୍ତା ।

ଆମର କାବ୍ୟ ସାହିତ୍ୟ ଏପରିକି ପାଲାଗାଆଣ ଦାସ କାଠିଆରେ ବି 'ଦୋଷ ଧରିବେନି' ର ବହୁଳ ବ୍ୟବହାର । ବଳ୍ଲାଦାସଙ୍କ ଠାରୁ ଆରମ୍ଭ କରି ସାଲବେଗ ଭୀମଭୋଇ ପର୍ଯ୍ୟନ୍ତ ଆଦି ମଧ୍ୟଯୁଗର କବିମାନେ ପାଠକକୁ ବୁଧ, ସୁମନା, ସୁଜ୍ଞଜନ, ବିଦୂଷକ ଉଚ୍ଚସ୍ଥାନ ଦେଇ ଭଣିତାରେ ନିଜକୁ ତୃଣାଦପି ସୁନୀତ ସ୍ଥାନରେ ରଖି ବିବାହ ବେଦୀର କନ୍ୟାପିତା ପରି 'ଦୋଷ ଧରିବେନି' ପଦଟି ଯୋଡ଼ି ଦିଅନ୍ତି । ଚଉତିଶା ମାନଙ୍କରେ 'କ୍ଷ' ଅକ୍ଷରଟି ଯେମିତି ଖାଲି କ୍ଷମା ଶବ୍ଦର ବ୍ୟବହାର ପାଇଁ ରହିଛି । ଆଧୁନିକ ଯୁଗର କବି ଲେଖକ ଦୋଷ କରନ୍ତି ନାହିଁ, କ୍ଷମା ମାଗନ୍ତି ନାହିଁ । ତଥାପି ମୁଁ ଯଦି କଥା କହି ଜାଣିଲି ନାହିଁ ବା ଏଣୁ ତେଣୁ ଆଜେ ବାଜେ ଗୁଡ଼ାଏ ଲେଖି ଆପଣଙ୍କୁ ବିରକ୍ତ ଉତ୍ୟକ୍ତ କଲି ତେବେ ଅନୁରୋଧ ଦୋଷ ଧରିବେନି ।



# ଜୀବନ ବୀମା

ଜୀବନ ବୀମାର ଏଜେଣ୍ଟମାନଙ୍କୁ ଦେଖିଲା ମାତ୍ରେ ମୁଁ ଚୁପେଚାପେ ଖସି ଯିବାର ଚେଷ୍ଟା କରେ । କାରଣ, ସେମାନଙ୍କୁ ମୁଁ ଯେତିକି ଡରେ ସେତିକି ଘୃଣା କରେ । ସେମାନେ ଯେବେ ଥରେ କାହା ପଛରେ ଲାଗିଛନ୍ତି ତେବେ ତାର ରକ୍ଷା ନାହିଁ । ଅକାଳେ ସକାଳେ ଆସି ହାଜର ହେବେ । ସଂକ୍ରାମକ ବ୍ୟାଧି ପରି ସେମାନଙ୍କ ଆଚରଣ ! ପହିଲା ବା ଦରମା ମିଳିବା ଦିନଗୁଡ଼ାକରେଏମାନେ ବେଶୀ କର୍ମଠ ଓ ତତ୍ପର ହୋଇ ଉଠନ୍ତି, ସେହି ସମୟରେ ସେମାନଙ୍କ ବୌଦ୍ଧିକ ବିଚକ୍ଷଣତା ଓ ପ୍ରଖରତା ଚୂଡ଼ାନ୍ତ ସ୍ତରରେ ପହୁଞ୍ଚି ଥାଏ ।

ଜୀବନ ବୀମାର କୌଣସି ଆବଶ୍ୟକତା ବା କାର୍ଯ୍ୟକାରିତା ନାହିଁ–ଏହି କଥାକୁ ପ୍ରମାଣ କରିବା ପାଇଁ ଆପଣ ଯେତେ ଯେତେ ଯୁକ୍ତି ବାଢ଼ି ବସିବେ ସେଗୁଡ଼ିକୁ ସେମାନେ ଅଙ୍କକେ ରୋକଠୋକ୍ କାଟି ଦେବେ । ସେଥିପାଇଁ ମଧ୍ୟ ଯିମିତି ତାଙ୍କର କମ୍ପ୍ୟୁଟର ମେସିନ ଅଛି । ଆପଣ ଯେଉଁ ଯୁକ୍ତି ଦେବେ ତାହା ସେମାନେ ଭବିଷ୍ୟ ଦୃଷ୍ଟିରେ ଜାଣି ପାରନ୍ତି, କେଉଁ କେଉଁ ବୁଦ୍ଧି କୌଶଳ ପ୍ରୟୋଗ କରି, ସେମାନଙ୍କୁ ଫାଙ୍କି ଦେବା ଚେଷ୍ଟାରେ ଅଛନ୍ତି ସେସବୁକୁ ଅକାମିକା କରିବା ପାଠ ସେମାନେ ପଢ଼ିଛନ୍ତି । ପ୍ରିମିୟମ୍ ଦେଇ ଟଙ୍କା ହରାଇବା ଦୁଃଖ କଷ୍ଟ ଯେତେ ମୋତେ ନ ବାଧେ ମୋ ବୁଦ୍ଧିର ଅପଚୟ ଓ ବିପର୍ଯ୍ୟୟ ମୋତେ ସେତେ ପଶ୍ଚାତ୍‌ତାପ ଓ ଅନୁଶୋଚନା ଦିଏ । ଅଙ୍କ ପାଠ ସେମାନଙ୍କର ହେଲେ ଶାଠର ସେମାନେ ଜଣେ ଜଣେ ଅପ୍ରତିଦ୍ୱନ୍ଦୀ ଅଧ୍ୟାପକ । ଅସମ୍ଭବକୁ ସେମାନେ ସମ୍ଭବ କରନ୍ତି ।

ନାନା ଆଳ ଛଳ ଦେଖାଇ ସେମାନେ ଆପଣଙ୍କ ସହିତ କଥାବାର୍ତ୍ତାର ସୁଯୋଗ ଲୋଡ଼ନ୍ତି ଏବଂ କୁଶଳ ମଙ୍ଗଳ ପୃଚ୍ଛା କରି ହୋମିଓପାଥିଠାରୁ ଆରମ୍ଭ କରି ରୋଗ ବୈରାଗ୍ୟର ସମସ୍ତ ନିଦାନ ଓ ଚିକିତ୍ସା ପ୍ରୟୋଗ କରି ଆତ୍ମୀୟତା ଓ ସୌହାର୍ଦ୍ଦ ଦାବୀ କରି ବସନ୍ତି । ଥରେ ଯେବେ ତାଙ୍କ କଥାକୁ କାନ ଦେଇଛନ୍ତି ତେବେ ଆଉ ରକ୍ଷା ନାହିଁ । ପାଲରେ ପଡ଼ିଗଲେ ମୁକୁଳିବାର ଉପାୟ ନାହିଁ, ଜାଲ ଯେତିକି ଛିଣ୍ଡାଇବାର ଚେଷ୍ଟା କରୁଥିବେ ଓଲଟି ତାହା ଦୁଇଗୁଣ ଗୁଡ଼ାଇ ଆପଣଙ୍କୁ କାବୁ କରିବ ।

ବଜାରରେ ବୁଲୁ ବୁଲୁ ସେଦିନ ବେଣୁ ବାବୁଙ୍କ ସହିତ ଦୈବାତ୍ ଦେଖା ହେଲା । କଟକରେ ସେ ଥିଲେ ଜଣେ ନାମଜାଦା ହୋମିଓପାଥ୍ । ମୁଁ ଥାଏଁ ରେଭେନ୍‌ସାରେ ଜଣେ ସାଧାରଣ ଲେକ୍‌ଚରର୍ ବା ଅଧ୍ୟାପକ । ଡାକ୍ତର ହିସାବରେ ତାଙ୍କ ଖାତିରି ଓ ପ୍ରତିପତ୍ତି ମୋତେ

ତାଙ୍କ ଆଡ଼କୁ ଆକୃଷ୍ଟ କରିଥିଲା । ସେ ଥିଲେ ଆମର ଫେମିଲି ଡାକ୍ତର । ବାପାଙ୍କ ପୃଷ୍ଠବ୍ରଣ, ଝିଅର ନେଫ୍ରାଇଟିସ୍‌କୁ ସେ ଅକ୍ଳେଶରେ ଆରୋଗ୍ୟ କରିଥିଲେ ।

କୃତଜ୍ଞତା ପାଶରେ ଆବଦ୍ଧ ଥାଇ ଏବଂ ପୁରୁଣା ପରିଚିତ, ଉପକାରୀ ବନ୍ଧୁଙ୍କ ଦର୍ଶନ ଲଭି ସ୍ୱତଃସ୍ଫୂର୍ତ୍ତ ଆବେଗରେ କହି ଉଠିଲି, ''ନମସ୍କାର ଡାକ୍ତରବାବୁ । କିମିତି ଅଛନ୍ତି ?'' ସେ ପ୍ରତି ନମସ୍କାର ଜଣାଇ ମୋତେ ସମ୍ବୋଧନ କଲାପରି ଗଳାରେ କହିଲେ, ''ମୁଁ ଆଉ ଡାକ୍ତରବାବୁ ନୁହେଁ । ଡାକ୍ତରି ଛାଡ଼ି ଏବେ ଇନସ୍ୟୁରେନ୍‌ସ ଧରିଛି ।'' ଦଣ୍ଡେ ରହି ପୁଣି ନାଟକୀୟ ଭଙ୍ଗୀ ସହିତ କହିଲେ, ''ଶୁଣି ଖୁସୀ ହେବେ ମୁଁ ଏ ଭିତରେ ଇନ୍‌ସପେକ୍ଟର ପଦକୁ ଉଠି ଯାଇଛି ।'' ଲାଲି ରଙ୍ଗର ବି ଏସ ଏ ମଟର ସାଇକେଲକୁ ଆଉଜି ବକ୍ଷ ବିସ୍ତାରିତ କରି ଛିଡ଼ା ହୋଇଥାନ୍ତି ସେ । ପୂର୍ବର ଅନୁଗୃହୀତ କରିବାର ଭଙ୍ଗୀ ତାଙ୍କର ବଢ଼ି ଯାଇଥିବାର ଲକ୍ଷ୍ୟ କଲି ।

ହେଲେ ଜୀବନବୀମା ନାଆଁ ଶୁଣି ମୋ ଛାତିରେ ଛନକା ପଶିଲା । ଭବତୋଷ ବାବୁ, ରଥ ବାବୁ, ବେଙ୍କ୍ ଏଜେଣ୍ଟ ଏପରିକି ନିଜ ଭାଇ ମୋତେ ଇନସ୍ୟୁରେନସ୍ ମନ୍ତ୍ରରେ ଦୀକ୍ଷିତ କରିବାର ଚେଷ୍ଟା କରି ବିଫଳ ମନୋରଥ ହୋଇଛନ୍ତି । ଦଶ କୋଡ଼ିଏ ଏଜେଣ୍ଟଙ୍କୁ ଜୀବନରେ ଫାଙ୍କି ଦେଲିଣି । ଅବଶ୍ୟ ହିନ୍ଦୁସ୍ଥାନ, ମେଟ୍ରୋପଲିଟାନ ଏବଂ ଓରିଏଣ୍ଟର ଏଜେଣ୍ଟମାନଙ୍କ 'ଘେରାଉ'ରେ ପଡ଼ି ସାମୟିକ ବିପର୍ଯ୍ୟୟ ବରଣ କରିଛି । କାରଣ ନିଜେ ଅକୃତକାର୍ଯ୍ୟ ହୋଇ ସେମାନେ ନିଜ ନିଜ ସ୍ତ୍ରୀମାନଙ୍କୁ ପଠାଇ ମୋ ସ୍ତ୍ରୀଙ୍କୁ ଜୀବନବୀମା ମହିମାନ୍ୱିତ କରିଛନ୍ତି । 'ମୋହବଦ୍' ରେ ପଡ଼ି ଦୋସ୍ତିର ଦୁହିରେ ଅନେକ ଥର ଗୋଟିଏ ଦୁଇଟି ପ୍ରିମିୟମ ଦେଇଛି ଓ ତା ପରେ ଯାବଜ୍ଜୀବନ ଦାସତ୍ୱରୁ ରକ୍ଷା ପାଇଛି । ନୂଆ ରୂପରେ ବେଣୁ ବାବୁଙ୍କ ଦେଖିଲାମାତ୍ରେ ଶେଷ ଜୀବନରେ ଏଲ.ଆଇ.ସି. ପଦତଳେ ଅର୍ଥନୈତିକ ସ୍ୱାଧୀନତା ହରାଇବା ଆଶଙ୍କା ମୋର ଅତି ମାତ୍ରାରେ ବଢ଼ି ଉଠିଲା । ଚାରି ପଇସିଆ ଡୋଜ୍‌ରେ ଲୋକଙ୍କୁ ଅନୁଗୃହୀତ ଓ କରଗତ କରି ପରେ ଇନସ୍ୟୁରେନ୍‌ସ ଜରିଆରେ ସମୂଳସୁଧ ଆହରଣର ବ୍ୟବସ୍ଥା ସେ କରି ନାହାନ୍ତି ତ ? ଆଜି ରକ୍ଷା ପାଏଁ କିମିତି ?

''ଆପଣ ତ ପ୍ରିନ୍‌ସିପାଲ ବା ପ୍ରଫେସର ହେବେଣି ? ସେ ଆରମ୍ଭ କଲେ । ମୁଁ ସ୍ପଷ୍ଟ ବାରି ପାରିଲି ନିଶ୍ୱାସରେ ବିପଦ ।

କହିଲି, ''ସେ ସୌଭାଗ୍ୟ ମୋର ଆସିବାହିଁ ।'' ଅପ୍ରତିଭ ହୋଇ କହିଲେ ''ଦୁଃଖର କଥା, ଆପଣଙ୍କୁ ଜୁନିଅରମାନେ – । ଆପଣଙ୍କ ପଚିଶିବର୍ଷ ଖଣ୍ଡେ ଚାକିରୀ ହେଲା । ରିଡ଼ର ତ ହୋଇ ସାରିଥିବେ ।''

ମୁଁ କହିଲି, ''ନା ଆଜ୍ଞା । ରିଡ଼ରସିପ୍ ମୋ ପଛେ ଦଶ ବର୍ଷ ହେଲା ଦଉଡ଼ିଛି । ଆଉ ବର୍ଷେ ଦିବର୍ଷରେ ଧରିବ ଓ ଭଲ ନ ହେଲେ ରିଟାୟାର ।''

ଏଥର ସେ ସିଧା ବାଟକୁ ଆସି କହିଲେ, ''ସେଇ ଯେଉଁ କେତୁଟା ପଲିସି ସେ କାଳରେ ନେଇଥିଲେ ସେତିକି ନା ଆଉ ନୂଆ କିଛି ?''

''ସେ ସବୁ ଲାପ୍‌ସ କରିଛି ।''

''ଦେଖନ୍ତୁ ବଡ଼ ଦାୟିତ୍ୱହୀନତାର କାମ କରିଛନ୍ତି ଆପଣ । ଆଠଆଠଟା ପିଲାପିଲି । କେତେ ବେଳେ କ'ଣ ହୋଇଯିବ ତ – ଆପଣ ସର୍ଟ ଟାର୍ମରେ ଏଲ. ଆଇ. ସି. ରୁ ପଲିସ ଗୋଟାଏ ନିଅନ୍ତି ।''

ମୁଁ ଜବାବ ଦେଲି, ''ଏତେ ଦିନ ତ କିଛି ହେଲା ନାହିଁ । ମୁଁ ତ ଚାହୁଁଛି କେତେବେଳେ କ'ଣ ହେଉ ବୋଲି କିନ୍ତୁ ହେଉଛି କାହିଁ ?''

''ଛାଡ଼ନ୍ତୁ ସେ ଫାଜିଲାମି । ଅନେକ ଦିନ ଗଡ଼ାଇ ଦେଲେଣି । ମୁଁ ଶୁଣିଛି ଆପଣଙ୍କ ସ୍ତ୍ରୀ ବିୟୋଗ କଥା, ପୁତ୍ରର ଆକସ୍ମିତ ସଲିଳ ସମାଧି କଥା । ତଥାପି ଆପଣ ନିଜ ଜୀବନକୁ ସେମାନଙ୍କ ନାଆଁରେ ପଲିସି ନେଇଥିଲେ ।''

''ସେମାନେ ମରି ନ ଥାନ୍ତେ ନିଶ୍ଚୟ । ମୁଁ ନେଲେ କାଳେ ମରିବି ନାହିଁ ବୋଲି ମୋର ଭୟ । ସେଥିପାଇଁ ତ ମୁଁ ବୀମା କରୁନାହିଁ । ତା'ଛଡ଼ା ସରକାର ପେନସନ୍ ଗ୍ରେଚୁଇଟି ପ୍ରଭିଡେଣ୍ଟ୍ ଫଣ୍ଡ ବ୍ୟବସ୍ଥା କରିଛନ୍ତି । ଦୈବାତ୍ କିଛିକୁ ଫେମିଲି ପେନସନ୍ ବ୍ୟବସ୍ଥା ତ ଅଛି ।''

ବେଣୁବାବୁ ଦେଖିଲେ ମୁଁ ଗୋଟାଏ ପକା ମଞ୍ଜୁଆ କାଠ । ତେଣୁ ଆଉ ଗୋଟାଏ ପଟୁ ଆଳ କରିବାକୁ ଯାଇ କହିଲେ, ''ଆଚ୍ଛା ଅଛନ୍ତି ନା, ତାଙ୍କରି ପୃଷ୍ଠବ୍ରଣ ମୁଁ ଭଲ କରିଥିଲି ନା ! ଆଉ ସେଇ ଝିଅଟି ଯାହାର ନେଫ୍ରାଇଟିସ, ହୋଇଥିଲା । ଆଉ କେହି ଡାକ୍ତର ହତାରେ ନେଇ ନ ଥାନ୍ତା ।''

ଏ ପ୍ରଶ୍ନର ମର୍ମ ବୁଝି ମୁଁ ତତ୍ପରେ କହିଲି, ''ମୋତେ ଫର୍ମ ଦିଅନ୍ତୁ । ପ୍ରିମିୟମ୍ କେତେ ଦବାକୁ ହବ, ଦୁଇହଜାର ପାଇଁ କୁହନ୍ତୁ ମୁଁ କାଲି ପଠାଇ ଦେବି ।''

ମୋଟର ସାଇକେଲ୍‌ର ପାର୍ଶ୍ୱରେ ଥିବା ବାକ୍‌ସରୁ କାଗଜ-ପତ୍ର ବାହାର କରି ଫର୍ମ ଦେଇ ''କହିଲେ, ''ଅଠଚାଳିଶ ଟଙ୍କା ବାସ୍ତରି ପଇସା ପଠାଇବେ । ଡାକ୍ତର ସାର୍ଟିଫିକେଟ୍ ମୁଁ ପଠାଇବାର ବ୍ୟବସ୍ଥା କରିବି ।''

ବେଣୁବାବୁ ଚାଲିଲେ । ମୋ ମନ କଥା ମନେ ରଖି ଘରକୁ ଫେରିଲି । ତହିଁ ପର ଦିନ ବେଶ୍ ଭାବିଚିନ୍ତି ଫର୍ମଟି ନିମ୍ନମତେ ପୂରଣ କଲି ।

ପ୍ରଶ୍ନ: – ଆପଣଙ୍କ ଘର ?

ଉତ୍ତର : – ଜି. ଉଦୟଗିରି ଏକା ଗଡ଼ ସିମିଳିପାଳ ।

ପ୍ର: – ବୟସ ?

ଉ : – ଭାବିପାରୁ ନାହିଁ ନିଜ ବୟସ କଥା ।

ପ୍ର : – ଛାତି ମାପ ?

ଉ : – ଅଠର ଇଞ୍ଚ ।

ପ୍ର : – ନିଶ୍ୱାସ ନେଲେ କେତେ ଫୁଲେ ?

ଉ : – ଇଞ୍ଚକରୁ ଚଉଠେ ।

ପ୍ର : – ଓଜନ ?

ପ୍ର : – କୋଡ଼ିଏ ସେରରୁ କିଛି ଅଧିକ ।

ପ୍ର : – ଉଚ୍ଚତା କେତେ ?

ଉ : – ଠିଆ ହେଲେ ଚାରିଫୁଟ ଛଅ, ହାମୁଡ଼େଇଲେ ଅନେକ ଊଣା ।

ପ୍ର : – ଜେଜେ ବାପା କ'ଣ ବଞ୍ଚିଛନ୍ତି ?

ଉ : – ତାଙ୍କର ମରିବା ବଞ୍ଚିବା ସମାନ ।

ପ୍ର : – ଯେବେ ମରିଥାଆନ୍ତି ତେବେ ମରିବାର କାରଣ ?

ଉ : – ଯେବେ ମରିଥାଆନ୍ତି ତେବେ ନିଦ୍ରାହୀନତା ମରିବାର କାରଣ ।

ପ୍ର : – ବାପା କ'ଣ ମରିଛନ୍ତି ?

ଉ : – ହଁ , ଦୁନିଆଁ ଆଖିରେ ।

ପ୍ର : – ମରିବାର କାରଣ ?

ଉ : – ଜଳାତଙ୍କ ।

ପ୍ର : – ଆପଣଙ୍କ କ'ଣ କିଛି ବ୍ୟାଧି ଅଛି ?

ଉ : – ଅନେକ । ପିଲାଦିନରେ ଯକ୍ଷ୍ମା, ଯୌବନରେ କୁଷ୍ଠ ଓ ଆଣ୍ଠୁଗଣ୍ଠି ବାତ, ଏବେ ଖୁଖୁୟାଁ କାଶ, ପେଟମରା ଓ ମସ୍ତିଷ୍କରେ ପାଣି ।

ପ୍ର : – ଭାଇ ଅଛନ୍ତି ?

ଉ : – ଏଗାର ଜଣ, ହେଲେ ସମସ୍ତେ ପ୍ରାୟ ମୃତ ।

ପ୍ର : – ଖେଳକସରତ୍ ଛଡ଼ା ଆପଣଙ୍କ ଆଉ କ'ଣ ଅବସର ବିନୋଦନ ଅଛି ?

ଉ : – ଖେଳ କସରତ୍ ମୁଁ ଘୃଣା କରେଁ । ଢେଉ ଭାଙ୍ଗିବା ବଜ୍ରବିଦ୍ୟୁତ ବେଳେ ପଡ଼ିଆରେ ଧାଁଧପଡ଼ କରିବା ଓ ବ୍ଲାଷ୍ଟ ଫାର୍ଣ୍ଣେସକୁ ବୁଲିଯିବା ।

ପ୍ର : – ଆପଣଙ୍କ ଏମିତି କ'ଣ ବଦ୍ ଅଭ୍ୟାସ ଅଛି ଯାହା ଜୀବନକୁ କ୍ଷୁଦ୍ରତର କରିପାରେ ?

ଉ : – ଅନେକ ଯଥା ମୁଁ ଅନବରତ ଧୂଆଁ ପିଏଁ, ମାଛ ପାଣି ପିଇଲା ପରି ମଦ ପିଏଁ । ଅଫିମ ଏପରିକି ପେଟ୍ରୋଲ ମଧ ବାଦ୍‌ଯାଏ ନାହିଁ । ତା' ଛଡ଼ା ଆମ୍ବଟାକୁଆ, ତିନ୍ତୁଳି ପଣସ ମଞ୍ଜି ବି ଗିଳିଦିଏଁ ।

ଫର୍ମଟି ଏହିମତେ ପୂରଣ କରି ଟଙ୍କା ସହିତ ହେଡ଼ ଅଫିସକୁ ପଠାଇ ଦେଲି । ମୋର ବିଶ୍ୱାସ ଥିଲା ଯେ ମୋଭଳି ଲୋକର ଜୀବନ ଇନସ୍ୟୁରେନ୍ସ ପାଇଁ ଅନୁପଯୁକ୍ତ । ତେଣୁ ଟଙ୍କା ଅବଶ୍ୟ ଫେରି ଆସିବ । ମାତ୍ର ଆଠ ଦିନ ପରେ ଚିଠି ପାଇଲି ଏଇ ମର୍ମର : –

ମହାଶୟ, ଆପଣଙ୍କ ଚିଠି,ଫର୍ମ ଯଥାସମୟରେ ଆମର ହସ୍ତଗତ ହୋଇଅଛି । ଦେଶର ଅନ୍ୟାନ୍ୟ କେସ୍ ସହିତ ତୁଳନା କରି ଦେଖିଲୁଁ ଆପଣଙ୍କ ଜୀବନ ପ୍ରଥମ ଶ୍ରେଣୀ ରିସ୍କ ଆକାରରେ ଗ୍ରହଣୀୟ । ଅଳ୍ପ ଦିନ ଭିତରେ ପଲିସି ପଠାଯାଉଛି ।

'ଜୀବନବୀମା' ସାମ୍ପ୍ରତିକ ସମୟର ଏକ ସତେଜ ଅନୁଭୂତି । ବୀମା ଏଜେଣ୍ଟମାନଙ୍କ ଆକ୍ରମଣର ଶିକାର ହୋଇ ଅନେକ ବୀମା ଧାରୀ ଏବେ ମଧ୍ୟ ନ୍ୟାର୍ଯ୍ୟ ପ୍ରାପ୍ୟ ପାଇଁ କାର୍ଯ୍ୟାଳୟର ଦ୍ୱାରସ୍ଥ ହେଉଥିଲେ ହେଁ ନିରାଶ ହେଉଛନ୍ତି । ତାଙ୍କ ଭାଷାରେ- ''ପାଲରେ ପଡ଼ିଗଲେ ମୁକୁଳିବାର ଉପାୟ ନାହିଁ । ଜାଲ ଯେତିକି ଛିଣ୍ଡାଇବାର ଚେଷ୍ଟା କରୁଥିବେ ଓଲଟି ତାହା ଦୁଇଗୁଣ ଗୁଡ଼ାଇ ଆପଣଙ୍କୁ କାବୁ କରିବ ।'' ମନ୍ତବ୍ୟ ଅତ୍ୟନ୍ତ ଅନୁଭବ ସର୍ବସ୍ୱ ହୋଇପାରିଛି ।



# ମାଛ ମିଛ

ମାଛ, ମିଛ, ମାଛୁଆ, ମିଛୁଆ – ବୁଢ଼ାଳିଆ ବେରସିକ ମାନେ ଚାପା ଗଳାରେ ମନ୍ତବ୍ୟ ଦେଇଥାନ୍ତି; ଆମେ ସବୁ ଉତ୍ସାହରେ ରବିବାର ସକାଳେ ବନ୍ସୀ ସାଜ ସରଞ୍ଜାମ ଧରି ବାହାରି ବସିଲାବେଳେ, ସେମାନେ ମୋଟେ ଜାଣନ୍ତି ନାହିଁ ଆମେ କିମିତି ମୁଣ୍ଡପଟା ଖରାରେ ଗୋଟାକୁ ଗୋଟା ବିଡ଼ି ଟାଣି ଏକ ଧ୍ୟାନରେ ସୋଲକୁ ଚାହିଁଥାଉଁ, ପୋଖରୀରେ ଚେଙ୍ଗ, ବେଙ୍ଗ, ମାଛ, କଇଁଛ କିଛି ନ ଥା'ନ୍ତୁ ପଛେ ।

ସେଦିନ ଦଳବଳ ଆମ ଘରେ ଅପେକ୍ଷା କରିଥାଉଁ କବି ମହେଶ୍ୱର, ଓକିଲ ବ୍ରଜଗୋପାଳ, ଅଫିସ୍ କିରାଣି ଜୀବନବାବୁ ଓ ବିଜୟ ବାବୁ । ଅପେକ୍ଷା ଏସ୍.ପି. ଓ ସୁରେଶ ବାବୁଙ୍କୁ । ଏସ୍.ପି. ଆମ ଲିଡ଼ର, ସୁରେଶ ବାବୁ ତାଙ୍କ ଅନ୍ତରଙ୍ଗ ଖଫ । ଏସ୍.ପି. ଦଳର ମାଲିକ ଥିଲେ ଗାଡ଼ି ଫ୍ରି. ଭୋଜନ ଫ୍ରି. ଚା ଜଳଖିଆ ଏପରି କି ଚାକର ଚପରାଶିଙ୍କ ସେବା ଶୁଶ୍ରୂଷା ଓ ସାହାଯ୍ୟ ଫ୍ରି । ଗାଡ଼ିରେ ଏତେ ଲୋକଙ୍କୁ ଜାଗା ହେବନି ବୋଲି କିରାଣି ଦୁଇଭାଇ ଅଫିସ୍ ସାଇକେଲ୍‌ରେ ଆଗୁଆ ଚାଲିଗଲେ । ବମ୍ଫେ ଛକ ପାଖ ସାତସଉତୁଣିଆ ପୋଖରୀକି । ଦିନେ ଯାହା ଥିଲା ସର୍ଦ୍ଦାର ଘର ପୋଖରୀ । ଖୁବ୍ ପୁରୁଣା, ବଡ଼ ବଡ଼ ମାଛରେ ଭରପୂର । ଲାଲ୍‌ମୁଣ୍ଡିଆ ମାଛଟା ମହେଣ ହବ । ଲୋକେ କହନ୍ତି ଖରାପ ଦାସ ସର୍ଦ୍ଦାର ଦଧିନଉତି ପରି ପେଟରେ ଚଢ଼ାତେଲ ଓ ସିନ୍ଦୂରଲେପି ଗୋଡ଼କୁ ଛନ୍ଦି ଉପରକୁ ଚାହିଁ ପଡ଼ିଥାନ୍ତି । ସେଇ ଦେବତାଙ୍କି ମାଛଟା ତାଙ୍କ ପେଟରେ ଘଷି ହେଉଥାଏ ।

ଭାଗ୍ୟ ଭଲ, ସବୁ ଆଶଙ୍କା ଓ ବିରକ୍ତିକର ପ୍ରତୀକ୍ଷାର ଅବସାନ ଘଟାଇ ଆସିଗଲେ ଏସ୍.ପି. ସାହେବ । ତାଙ୍କ ସାଙ୍ଗରେ ମର୍ଯ୍ୟାଦା ବା ସମସ୍ୟା ପୁରୁଷ ସୁରେଶ ବାବୁ । ଏସ୍.ପି.ଙ୍କୁ ଛାଡ଼ି ସେ ଏକେଲା ଯିବେ ନାହିଁ । ଯିବା ପାଇଁ ପୁଣି ତାଙ୍କ ସ୍ତ୍ରୀଙ୍କ ଅନୁମତି ଲୋଡ଼ା । ସୁରେଶ ବାବୁ ଯିମିତି ମଉଛିଆ, ସିମିତି ଡରୁଆ । ଥରେ ସେ ସୁଭଦ୍ରାହରଣ ସୁଆଙ୍ଗ ଦେଖୁଥିଲେ । ତାଙ୍କ ଗୁଣଗାରିମା ଜଣାଥିବା ବଗୁଲିଆ ପିଲାଟାଏ ଚିତ୍କାର କରି ଉଠିଲା, ''ସାପ, ସାପ'' । ସୁରେଶ ବାବୁ ସାପ କ'ଣ କୁଅ ଦଉଡ଼ି ଦେଖିଲେ ଡରନ୍ତି । 'ବାପ ଲୋ ମାଆଲୋ' କହି ଚାରିଛଅ ଜଣଙ୍କୁ ଡେଇଁ ଏକାବେଳକେ ବାଡ଼ ଉପରେ ପଡ଼ିଲେ । ପାଲାଗାଆଣ ଭାଙ୍ଗିଗଲା ଗଣ୍ଡଗୋଳରେ । ତାଙ୍କୁ କୁଆଡ଼େ ପହଁରା ଆସେ ନାହିଁ । ଯିମିତି ତାଙ୍କ ସ୍ତ୍ରୀଙ୍କ ଅନୁମତି ମିଳିଲା, ଏସ୍.ପି. ଆନନ୍ଦ ଗଦ୍‌ଗଦ୍ ହୋଇ ଜିପ୍‌କୁ ଧରି ଆମ ଗହଣରେ ହାଜର ।

କିନ୍ତୁ ମୋ ଘରେ ମୋ ସ୍ତ୍ରୀଙ୍କ ହାତରୁ ସ୍ପେଶିଏଲ୍ ଚା ନ ଖାଇଲେ ଏସ୍.ପି.ଙ୍କ ଚକ ଗଡ଼ିବ ନାହିଁ । ସାହେବଙ୍କ ଚା'ରେ ଚିନି ପଡ଼େନାହିଁ, ଦୁଧ ପଡ଼େ ନାହିଁ, ଚା' ପତର ବି ନାହିଁ । ବଡ଼ଲୋକ କେତେବେଳେ କ'ଣ ପିଅନ୍ତି ଜାଣିବା ମୁସ୍କିଲ୍ । ହିପ୍ ହିପ୍ ହୁର୍ରେ ।'' ଏଥର ଗାଡ଼ି ଚାଲିଲା ।

ସତର ମାଇଲ୍‌କୁ ସାତ ମିନିଟ୍‌ରେ ଅତିକ୍ରମ କରି ଯିମିତି ଏସ୍.ପି. ଜିପ୍‌କୁ ପୋଖରୀ ହୁଡ଼ାକୁ ନେଇଯାଇଛନ୍ତି ସିମିତି ତାଙ୍କ ଏକ ନମ୍ବର ଅର୍ଡ଼ର୍ଲି କହିଲା – ''ବାବୁ ତୁ ଏତେ ବେଳଯାଏ କି କରୁଥିଲୁ ? କିରାଣି ଦୁଇଟା ହିଡ଼ ଉପରେ ବସି ଦଶସେରିଆ ବଡ଼ ମାଛଟାକୁ ଧରିନେଲେ । ଦେଖ୍ ତାଳବରଡ଼ା ତଳେ ପଡ଼ିଛି ।'' ଦୁଃଖ ଲାଗିଲା ଆମେ କେହି ତାକୁ ପାଇଲୁଁ ନାହିଁ ।

ଏସ୍.ପି. ଦେଖିଲେ ଗହୀର ପାଣିରେ ଚାରୋଟି ମଞ୍ଚା ଚାରିଜଣଙ୍କ ପାଇଁ, ସୁରେଶ ବାବୁଙ୍କ ପାଇଁ କୌଣସିଟି ଯୋଗ୍ୟ ନୁହେଁ । ''କଣ୍ଡା ସିଂ'' କୁ ହୁକୁମ କଲେ ''କଣ୍ଡା ସିଂ ଆଉ ଗୋଟାଏ ଟାଣୁଆ ଭାଡ଼ି ସେଇଠି ଆଣ୍ଠୁଏ ପାଣିରେ ସାନ ସାହେବ ପାଇଁ ତିଆରି କର । ଚାରିଟା ବରକନ୍ଦାଜ ହୁଡ଼ାର ତାଳଗଛରେ ପରାଙ୍ଗ ହୋଇ ବଢ଼ିଥିବା ଯୋଡ଼ାଏ ବରଗଛକୁ କାଟି ପାଞ୍ଚମିନିଟ୍‌ରେ ତାହାର ମୋଟାମୋଟା ଡାଳରେ ଭାଡ଼ିଟାଏ ତିଆରି କରିଦେଲେ । ସମସ୍ୟା ପୁରୁଷ ସୁରେଶ ବାବୁ ଆଗ୍ରହରେ କୁଞ୍ଚକରା ଅଠାବନ ପଞ୍ଜିଆ ଫିନ୍‌ଫିନ୍ ଧୋତି ସାଙ୍ଗକୁ ଗିଲକରା ପତଳା ପଞ୍ଜାବି ପିନ୍ଧି ଚଢ଼ିଗଲେ ଭାଡ଼ି ଉପରକୁ ଏବଂ କଣ୍ଡା ସିଂର ଖଟ ଉପରେ ଚଢ଼ିଯାଇ ଥରେ ଦି ଥର ଡିଆଁଧପଡ଼ କରି ଏସ୍.ପି.କୁ ଚାହିଁ ପଚାରିଲେ, ''କି ହୋ ସାହେବ ସମ୍ଭାଳିଲେ ତ ?'' ସାହେବ କଟମଟ ଚାହିଁଲେ ତାଙ୍କର ବିଚିତ୍ର, ଅପୂର୍ବ ପୋଷାକପତ୍ର, ଭଙ୍ଗୀକୁ । କଣ୍ଡା ସିଂ ଜିଆ ବା ଥୋପ ଗୁଞ୍ଛିଦେଲା ବନସୀ କଣ୍ଟାରେ, ମୋ ସ୍ତ୍ରୀଙ୍କ କରା ମସଲା ସହିତ ହାଣ୍ଡିଆ ମେରା ବିଞ୍ଚିଦେଲା ଚାରାରେ । ସମସ୍ତେ ଏଟେନ୍‌ସ ଓ ଟେନ୍‌ସନ୍‌ରେ । କବି ମହେଶ୍ୱର କବିତା ଉତ୍ସବରେ ଯୋଗ ଦେଇଛନ୍ତି ଭାବି ଗୁଣୁଗୁଣୁ ହୋଇ କବିତା ପରେ କବିତା ଗାଉଥାନ୍ତି । ମୁଁ ଗୋଟାକୁ ଗୋଟା ବାଲିଗିଳା ଉଠାଉଥାଏ । ଧନ୍ୟ  ମୋ ସ୍ତ୍ରୀଙ୍କ ପ୍ରସ୍ତୁତକରା ସ୍ପେଶିଏଲ୍ ଚାରା । ମାଛଙ୍କ ପେଟରେ କଣ୍ଟାଗୁଡ଼ାକ ଜଳ ଜଳ ଦିଶୁଥାଏ । ପୂରାପୂରି ସ୍ୱଚ୍ଛ ତା ଦିହଟା । ଜୀବନ ବାବୁ ଓ ବିଜୟ ବାବୁ ଖଜୁରୀ ଗଛ ଛାଇରେ ଶୋଇ ଯାଇଛନ୍ତି ବଡ଼ମାଛଟା ଧରିସାରି । ସୁରେଶ ବାବୁ ବି କ୍ରମେ ତାଙ୍କ ଦେଖାଶିଖା ମୁଣ୍ଡତଳେ ହାତକୁ ତକିଆ କରି ଆକାଶକୁ ଚାହିଁ ଗୋଟିଏ ଆଡ଼କୁ ଚାହିଁଛନ୍ତି । ମାଛ ମିଛ' ହବକି ଭାବୁଚୁଁ  ବ୍ରଜଗୋପାଳ ବାବୁ ପାଖ ମଞ୍ଚରୁ ଚିତ୍କାର କଲେ  ''ସୁରେଶ ବାବୁ, ଆପନାର୍ ଚାରାକେ କରେ ମାଛଟା ଏସେ ଗେଛେ, ଆମି ଦେଖତେ ପେରେଛି, ଫୁଟ୍‌କି ଫୁଟିୟେ, ଘୁରେ ବୁଲଛେ । ଏକ୍‌ଟା ଥାକୁନ୍, ଆପନି ତାକେ ଛେଡ଼େ ଦିଏଛେନ୍ ।'' ସୁରେଶ ବାବୁ ଏଥର ଉଠି ଆଣ୍ଠୁମାଡ଼ି ବସି, ନିଃଶ୍ୱାସ ବନ୍ଦ କରି, ଛାତିର ଧଡ଼ପଡ଼ ଶବ୍ଦ ଶୁଣୁଶୁଣୁ ଦେଖିଦେଲେ ସେଇ ଦପ୍‌ଦପ୍ କରୁଛି, ଉଠୁଛି,

ପଡୁଛି । ଫ୍ଲାଟ, ହୋଇଗଲା ଚାହୁଁ ଚାହୁଁ । ଏ ଚାପ୍ ଛାଡ଼ିବାର ନାହିଁ । ଖୁବ୍ ଜୋର୍‌ରେ ସାଏଁ କରି ଉଠିଲା ଖଣ୍ଡା ଏତେ ବଳପ୍ରୟୋଗ ଟକରଜି ଯେ ମୁହୂର୍ତ୍ତକ ମଧ୍ୟରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏକାକାର ହୋଇଗଲା । ଭାଡ଼ି ନାହିଁ, ମଣିଷ ନାହିଁ, ଖୁଣ୍ଟ ନାହିଁ, କିଛି ନାହିଁ । ଗୁଡ଼ାଏ ଛୋଟ ଛୋଟ ଢ଼େଉ ଏଣେ ତେଣେ ଖେଳି ବୁଲୁଛି । ସୁରେଶ ବାବୁଙ୍କୁ ମୋଟେ ପହଁରା ଆସେ ନାହିଁ । ଏସ୍.ପି. ଆତଙ୍କିତ ହୋଇ ଧଡ଼ପଡ଼ ହୋଇ କଣ୍ଡା ସିଂର କାନ୍ଧରେ ଚଢ଼ି ତଳକୁ ଆସିବାକୁ ଚାହିଁଲେ । ମାତ୍ର ଏତେ ଲାସାଭାରି ଲୋକଙ୍କୁ କୂଳକୁ ପହଞ୍ଚାଇବା କାଠିକର ପାଠ । ଏସ୍.ପି.ଙ୍କ ଭାରା ସହି ନ ପାରି କଣ୍ଡା ସିଂ ଉବୁଟୁବୁ ହେଲା ଏବଂ ସାହେବଙ୍କ ଖାକି ପେଣ୍ଟ ସାର୍ଟ ଏପରିକି ଟୋପି ଚଡ଼ସଡ଼ ହେଲା । ଅତର୍କ ହୋଇ ସୁରେଶ ବାବୁ ପାଖକୁ ପହୁଞ୍ଚିଲା ବେଳକୁ ଆଶ୍ଚର୍ଯ୍ୟ କଥା ଆଣ୍ଠୁଏ ପାଣିରେ ସେ ଛିଡ଼ା ହୋଇଛନ୍ତି । ନାକ,କାନ,ଚୂଳ, ଆଖିରୁ ସରସର ହୋଇ ପାଣି ଝରୁଛି । ପତଳା ପରିଧାନରେ ଉଭା ଲଙ୍ଗଳା ପ୍ରାୟ । କହୁଛନ୍ତି, "ସାହେବ ବଡ଼ମାଛଟା ଲାଗିଛି । ଦେଖ ! ଧର ! ମୋତେ ଡର ମାଡୁଛି । " ବର୍ମିଘାଂ ବନସିରେ ଲାଗିଥିବା ମାଛକୁ ସୁରେଶବାବୁଙ୍କୁ ଧରାଇ ଦେଲେ । ଖଡ଼ା ଟାଣି ଟାଣି ସୂତା ଛାଡ଼ି ଛାଡ଼ି ବହୁତ କିଛି କଳାରୁ ମାଛ ଉପରକୁ ଧୀରେ ଧୀରେ ବହୁ କଷ୍ଟରେ ଉଠିଲା, ପଥର ପରି ଓଜନ । ପ୍ରଥମ ଉପରକୁ ଉଠିଲା ବେଳେ ଦିଟା ଗୋଡ଼ ଉପରକୁ ଦିଶିଲା । "ଏଇଟା କଣବା ! ଚିତ୍କାର କରି ସୁରେଶ ବାବୁ ହୁଡ଼ା ଉପରକୁ ଧାଇଁଗଲେ ଏବଂ ଥରିବାକୁ ଲାଗିଲେ ।" ବନସି ଖଡ଼ା ଓ ମାଛର ଡେଣା ବା ଲାଞ୍ଜ ତଥାପି ଦିଶୁନାହିଁ ! ଶୁଖିଲା ତାଳବରଡ଼ାରେ ନିଆଁ ଜାଳି ସୁରେଶବାବୁଙ୍କୁ କଣ୍ଡା ପୋଛାପୋଛି ଉଷୁମ୍ କରି, ଲୁଗାପଟା ଶୁଖାଇଦେଲା । ବିଜୟ ବାବୁ, ଜୀବନ ବାବୁ ଧରିଥିବା ନଅସେରିଆ ମାଛକୁ କାଟି ଭାଗ ଭାଗ କରି ପ୍ରତ୍ୟେକ ମାଛୁଆକୁ ପୁଟୁଳାଏ ଦିଆଗଲା । କଣ୍ଡା ସିଂ ନିଜେ ରକ୍ତସିକ୍ତ ହୋଇ ସୁରେଶବାବୁଙ୍କ ବନସିରୁ ଫିଟାଇ ବଡ଼ କଇଁଛଟାକୁ ନେଇଗଲା । ଯେ କୌଣସି ବନସିଆଙ୍କ ଡମର ସାହେବକୁ ପଚାରିଲେ ମାଛ ଆଜି କିଏ ଧରିଛି ? ଉତ୍ତର ଆସିଲା, ସିଏ ଆମର ଧରିଥିଲେ । ମାଛ ମିଛ ! ମାଛୁଆ ମିଛୁଆ । ମିଛୁଆ ମିଛୋଇ ।



# ରୋମାଣ୍ଟିକ୍ ବା ଅବଗୁଣ୍ଠନବତୀ

ପରସ୍ପରକୁ ଟେକାଟେକି, ଠକାଠକି, ଭଣ୍ଡାଭଣ୍ଡି କରି (ଏପରି କି ସନ୍ଦେହ କରି) ଟାଙ୍କଟୁଙ୍କରେ ଥାଇ ବର୍ଷେ ନୁହେଁ ଅଧେ ନୁହେଁ ଦୀର୍ଘ ସାତ ବରଷ (ପଚିଶ ପଚାଶ ବରଷ ବି ସିମିତି କଟି ଯାଇଥାନ୍ତା) କିପରି ସେମାନେ ଦୁହେଁ ତାଙ୍କ ସମାଜରେ ଆଦର୍ଶ ଦମ୍ପତି ବୋଲି ଖ୍ୟାତି ଲଭିଥିଲେ, ତାହା ଅନ୍ୟମାନେ କାହିଁକି, ସେମାନେ ନିଜେ ମଧ୍ୟ ବିଶ୍ୱାସ କରିପାରୁ ନ ଥିଲେ । ବିବାହର ଲାଇସେନ୍‌ସ ନେଇ ରୋମାଣ୍ଟିକ୍ ଗର୍ଲ୍‌ସ ଓ ଅବଗୁଣ୍ଠନତଳେ ଏତେପ୍ରକାର ମେଜିକ୍ ଖେଳ ସେମାନେ ଯେ ଖେଳି ପାରୁଥିଲେ ତାହା କୌଣସି ସେଣ୍ଟି ମେଣ୍ଟାଲ ତରୁଣ ମଧ୍ୟ କଳ୍ପନା କରିପାରିବ ନାହିଁ; କିନ୍ତୁ ଖେଳ ଖେଳୁଁ ଖେଳୁଁ ଦିନେ ସେମାନଙ୍କର ମୁଖା ଖସିପଡ଼ିଲା ।

ଡକ୍ଟର ରାୟ ଉଠିବସିଲା ମାତ୍ରେ ଟୁକ୍ କରି ରେଡ଼ିଓଟା ଖୋଲି ଦେଇ ବାହାରକୁ ଗଲେ । ଫେରିଆସି ପୂର୍ବପଟ ଝରକାଟି ଯିମିତି ଖୋଲିଛନ୍ତି ସିମିତି ହେମନ୍ତ ସକାଳର ହାବୁକାଏ ସୁନେଲି କିରଣ ଅବାଞ୍ଛିତ ଅତିଥି ପରି ଘର ଭିତରକୁ ପଶିଆସିଲା । ଏଣେ କଣ୍ଟା ଷ୍ଟେସନ୍‌ଚ୍ୟୁତ ହୋଇ ଥିବାରୁ ରେଡ଼ିଓରୁ ଘଡ଼୍ ଘଡ଼୍ ଫଡ଼୍ ଫଡ଼୍ ଶ୍ରୁତିକଟୁ ଶବ୍ଦ ବାହାରୁଥାଏ; ତେଣେ କିରଣଗୁଡ଼ିକ ନିଦ୍ରାଳୁ ଆଖିକୁ ବଡ଼ ଅପ୍ରୀତିକର ହେଉଥାଏ । ଶ୍ରୀମତୀ ତେଣୁ ଅତ୍ୟନ୍ତ ଅସ୍ୱସ୍ତିସୂଚକ 'ଓଃ','ଆଃ', 'ଉ', ଶବ୍ଦ ଉଚ୍ଚାରଣ କରୁଥାନ୍ତି ଏବଂ ନାନା ଲୀଳାଭଙ୍ଗୀରେ ଏପଟ ସେପଟ ହୋଇ ତକିଆଟାକୁ ଜାବୁଡ଼ି ଧରୁଥାନ୍ତି; କହୁଥାନ୍ତି ଯିମିତି –

''ମୋ ନିଦ କିମ୍ପା ଦେଲ ଭାଙ୍ଗି ହେ,<br>
ଦେଖୁଥିଲି ମୁଁ ମୋ ପ୍ରିୟସଙ୍ଗୀ ।''

ହଳଦିଆ ନାଲି ରଙ୍ଗ ମିଶା ଚିକ୍କଣ, ମସୃଣ, ସୁଗୋଲ ଗୋଡ଼ ଦୁଇଟିର ସୌଷ୍ଠବ ଏବଂ ଅଳତାଦିଆ ପାଦ ଦୁଇଟିର ଲକ୍ଷ୍ମୀ ଦେଖି ମୁଗ୍ଧ ହୋଇ ଜୟଦେବ ରୀତିରେ ଡକ୍ଟର ରାୟ ଆରମ୍ଭ କଲେ ସୁର୍ ଧରି ''ଦେହି ପଦପଲ୍ଲବ ମୁଦାରମ୍ ।'' ପରେ ପରେ ରସିକତାଭରା କାବ୍ୟପ୍ରାଣରେ ଜୁଆର ଢେଉ, ମାଡ଼ିଆସିଲା । 'ଲେଡ଼ି ଗେଟାର୍ଲି, କେକ୍‌ସ ଏଣ୍ଡ ଏଲ୍' ଏବଂ 'ଡନ୍ ଜୁଆନ' ଜାତୀୟ ବିବିଧ ଉପନ୍ୟାସ ଓ କାବ୍ୟର ନାୟକ–ନାୟିକାଙ୍କ ରୂପ ଯୌବନ ଓ କ୍ରୀଡ଼ା ବର୍ଣ୍ଣନା ଓ ବଛା ବଛା ସିନ୍ ସବୁ ଲେଉଟାଇଲେ ମନେ ମନେ ଏପରି କି କୀଟ୍‌ସ୍‌ଙ୍କ ପ୍ରଖ୍ୟାତ ପଂକ୍ତିନିୟେ " Pillowed upon my love's ripening breast,to feel for every its soft fall and swell." ଏବଂ କାଳିଦାସଙ୍କ ''ଜ୍ଞାତସ୍ୱାଦୁଃ ବିବୃତଜଘନା କୋ ବିହାତୁଂ ସମର୍ଥଃ ?'' ଉଦ୍‌ଫୁଲ୍ଲିତ ହୋଇ ସେ ପାଟିକରି ଗାଇଗଲେ ।

''ଓଃ । ବନ୍ଦ କର, ସକାଳଟାରେ ଏମିତି କାହିଁକି ହେଉଛି ? ଝରକା କାହିଁକି ଖୋଲିଲ ? ଏତେ ସକାଳୁ ମଣିଷ – ? କାଲି ରାତି କେତେବେଳେ ଶୋଇଲୁଁ ମନେ ନାହିଁ ନା କ'ଣ ?''

ଏତକ କହି ଶ୍ରୀମତୀ ଯିମିତି କଡ଼ ଲେଉଟାଇ ପଛ କରି ଶୋଇଛନ୍ତି, ଡକ୍ଟର ରାୟ ସ୍ୱର ଧରି ପୁଣି ଆରମ୍ଭ କଲେ । ଏଥର ଚୋଖି ରାଗରେ ଲାବଣ୍ୟବତୀରୁ ଗାଇଲେ,

''ଅଣିମାଦି ସୁଖଦାୟୀ

ଶୋଇଅଛି ଅଣି ହୋଇ

ପର୍ଯ୍ୟଙ୍କ ଅଙ୍କରେ ଅବା କି ଦିଶେ ଶୋଭା !''

ଏବଂ

''ଜାନୁ ଧରି ଦେଲା ହଲାଇ''

ପଦକ ଗାଇଲା ସଙ୍ଗେ ସଙ୍ଗେ କୁତୁରୁ କୁତୁରୁ କରି ଜାନୁ ଏତେ ଜୋର ହଲାଇ ଦେଲେ ଯେ ଶ୍ରୀମତୀ ପ୍ରାୟ ବିବସ୍ତ୍ରା ହୋଇଗଲେ । ଡକ୍ଟର ରାୟ ପିଲାଙ୍କୁ ବର୍ଣ୍ଣବୋଧ ପଢ଼ାଇବା ରୀତିରେ କହିଲେ, ''ସକାଳ ହେଲାଣି, କାଉ ରାବିଲେଣି । ଉଠ ଉଠ ମଠ ନ କର ଆଉ । ଚା' କର । ଆଠ ବାଜିବ ଯେ ।''

''ସକାଳୁ ମନଟା ଏତେ ଉଲ୍ଲସି ଉଠିଛି କାହିଁକି ? ଲୋଟୋସ–ଇଟେରଙ୍କ ଡ୍ରିମ୍‌ଲେଣ୍ଡ ବୁଲି ଫେରିଛ କି ?'' ଅନିଚ୍ଛାସତ୍ତ୍ୱେ ଅରୁଣ ଆଖି ମଳି ଦଳି ଶ୍ରୀମତୀ ଉଠିଲେ, ଭୁଜ ଟେକି ଅଳସ ଭାଙ୍ଗି ପାଖଦେଇ ଯାଉଛନ୍ତି ଚଣ୍ଡୀ ଦାସ ରୀତିରେ ଡକ୍ଟର ରାୟ ଆରମ୍ଭ କଲେ, ''ଛୋଁୟନା ଛୋଁୟନା ବନ୍ଧୁ'' ''ମୁକୁର ଲଇୟା ଚାନ୍ଦ ମୁଖଖାନି ଦେଖ'' ଗାଲ ଟିପି ଦେଇ କହିଲେ, ''ଏଥର ଏମିତି ଗୁଡ଼ାଏ ହଳଦୀ ଲେପି ହେଉଛ କାହିଁକି ?''

ଶ୍ରୀମତୀ ଦେଖିଲେ ଡକ୍ଟର ରାୟଙ୍କ ବାହୁ ଛାତିରେ ହଳଦୀ ଲାଗିଛି । ଲାଜ ଲାଜ ହୋଇ କହିଲେ, ''ମୁଁ କ'ଣ ଜାଣିଥିଲି ତୁମେ କାଲି ରାତି ଫେରିବ ବୋଲି ?'' ବ୍ଲାଉଜ ବୋତାମ ଟପ୍ ଟାପ୍ ଟିପି, ଖସି ଯାଉଥିବା କୁନ୍ତଳ ସାଜି ସେ ଘରୁ ବାହାରି ଗଲେ । ଡକ୍ଟର ରାୟ ସିଲୋନ୍ ଷ୍ଟେସନ ଖୋଜି ଖୋଜି ରେଡ଼ିଓ କଣ୍ଟା ଚଳାଇବାରେ ଲାଗିଥାନ୍ତି !

ଶ୍ରୀମତୀ (ବିବାହବେଳେ ତାଙ୍କ ନାମ ଥିଲା ପଦ୍ମାବତୀ; ଡକ୍ଟର ରାୟଙ୍କୁ କିନ୍ତୁ ଏ ନାମଟି ମରହଟ୍ଟୀ ଜଣାଥିବାରୁ ସେ ଶରଧା ନାମ ଶ୍ରୀମତୀ ଦେଇଛନ୍ତି) ଫେରି ଆସି ଡ୍ରେସିଂ ଟେବୁଲ ପାଖରେ ଟର୍କିସ୍ ଟଉଲିଆରେ ମୁହଁ ପୋଛୁଛନ୍ତି, ରେଡ଼ିଓରୁ ଶୁଭିଲା, ''ଭେକ୍ୟୁଲେକ୍ସ– ଦୋ ଗୋଲିକା ଟିକିୟା–ପିଲେ ଅର୍ ନୀଲେ– ପେଟକୋ ଆରାମ ପୌଞ୍ଚାଥା ହୈ''

''ବୁଝିଲ ନା, ରେଡ଼ିଓ ବିଜ୍ଞାପନରୁ ଇଙ୍ଗିତ ସୂଚନା ପାଇଁ ଡକ୍ଟର ରାୟ ଆରମ୍ଭ କଲେ, ''ବରପାଲି ହେଲେ ସେପ୍‌ଟିକ୍–ଦୁଇରୁ ଯାହା ହେଉ ଗୋଟିଏ ଏ ମଧ୍ୟରେ କରିବାକୁ ପଡ଼ିବ ।'' ଡକ୍ଟର ରାୟ କବିତା ଗବିତାକୁ ଖସି ଆସିଲେ ।

''ମଲା, ମଲା ! ବିଜ୍ଞାପନଟା ଶୁଣିବା ମାତ୍ରେ ପାଇଖାନା କଥା ! ପୁରୁଷଙ୍କ ପେଟ ଚିନ୍ତା ନ ହେଲେ ପାଇଖାନା ଚିନ୍ତା ଛଡ଼ା ଆଉ କ'ଣ କିଛି ନ ଥାଏ ? ମେଞ୍ଚାକୁ ମେଞ୍ଚା

ଆକବରୀ, କାପକୁ କାପ୍ ବୁକ୍‌ବଣ୍ଡ, ପୁଞ୍ଜାକୁ ପୁଞ୍ଜା ଚାର୍ମିନାର – ଏସବୁ ଯେବେ କାମ ନ ଦେଲା ତେବେ ଦୋ ଗୋଲିକା ଟିକିୟା । ଆଚ୍ଛା, ସକାଳଟାରେ ତୁମ ମୁଣ୍ଡକୁ ଏ ପବିତ୍ର ପାଇଖାନା ଚିନ୍ତାଟା କିମିତି ପଶିଲା ?''

ଥୁରୁଥୁରୁଆ ବୁଢ଼ୀଟା ସକାଳଟାରେ ଟିଣଟାଏ କାଖେଇ ଏଇ ଝରକା ବାଟଦେଇ ନିତି ପ୍ରତି ଯାଉବାର ମୁଁ ଆଉ ଦେଖି ସହି ପାରିବି ନାହିଁ । ମ୍ୟୁନିସିପାଲିଟି କିଛି ନ କହି ବୋଲି ଆମର କ'ଣ କିଛି– ?''

''ଥାଉ ଥାଉ । ବୁଢ଼ୀ ମେହେନ୍ତରାଣୀଟା ପ୍ରତି ଏତେ ଦୟା । ତୁମର ନିଜ ମଣିଷଟା ଯେ ଚାକର ଅଭାବରୁ କିମିତି ହଇରାଣ ହରକତ ହେଉଛି ସେ କଥା କି ମନେ ପଡୁନି । ହଜାରେଥର ପଟ୍ଟନାୟକ ବାବୁଙ୍କ ଘରକୁ ଦଉଡ଼ି ଦଉଡ଼ି ଚାକର ଟୋକାଟାକୁ ଯୋଗାଡ଼ କରିଥିଲି । କେତେ କାମିକା ବୋଲକରା ଟୋକାଟା । ପଟ୍ଟନାୟକ ବାବୁ ଆମ ପାଖ ପଡ଼ିଶା ନହୋଇଥିଲେ ମୋର ଯେ କି ଦଶା ହୁଅନ୍ତା, କେତେ ଅସୁବିଧା ହୁଅନ୍ତା –''

''ସ୍ତ୍ରୀ ଲୋକ ସ୍ତ୍ରୀ ଲୋକର ଶିରୀ ଦେଖି ସହି ପାରେନାହିଁ, ଦେଖୁଛି । ବୁଢ଼ୀଟା କଥା କହିଲାବେଳକୁ କି ଡେଇଁ ପଡୁଛି ମୋ ଉପରକୁ । ଆଚ୍ଛା, କହ ତ ମୋତେ ଚାରି ପାଞ୍ଚ ଟଙ୍କା ଦେଇ ପାରିବ କି ନା ?''

''ତୁମେ ସେ ପାଇଖାନା କଥା ଆଉ ଉଠାଅ ନାହିଁ । ପଇସା କେଉଁଠୁ ଆସିବ ? ଘର ଲୋନ୍ ଶୁଝିଲେକି ଦରମା ଅଧେ ଗଲା । ଗଲା ବର୍ଷ ଏଠି ସେଠି ବକ୍ତୃତା ଦେଇ ଉପରି ଯେଉଁ ପାଞ୍ଚ ଛଅଶ ଆଣିଥିଲି ସେ ସବୁ କି କୁଆରେ ଗଲା । ଯେବେ ଜିଦ୍ ଧରିବ, ତେବେ ବାବୁଙ୍କ ପାଖରୁ ହାତ ଉଧାର କରି ଆଣିବି ତାଙ୍କ ଛଡ଼ା ଏଠି ଆମର ଚିହ୍ନା ପରିଚୟ, କିଏ ଅଛି ଯେ ? ଦେଖୁଛି ତୁମେ ବଡ଼

କ୍ରୋଧଂ ସଖି ! ସମ୍ବର, ସମ୍ବର । ପଇସାପତ୍ର ହିସାବ ଦେଇ ମୋତେ ଦୁଃଖ ଦିଅନା । ପାଇଖାନା କଥା ପରେଥାଉ । ଏଥର ମୋତେ ଟିକିଏ ତୁମ ପଟ୍ଟନାୟକ ବାବୁଙ୍କ କଥା କହ । ଏ ବାବୁଟି କିଏ ? ତାଙ୍କ ଭାବ ବଡ଼ ବେଶୀ ଜମି ଉଠୁଛି ।

ସେ ପରା ଆମ ଗାଁ ଲୋକ । ଲେଖାଯୋଖା ଭାଇ, ଗୋଟାଏ ଦୂର ସମ୍ପର୍କରେ ଶଳା, ନ ହେଲେ ଭୀମ୍ନ ବି ଦୂରସମ୍ପର୍କୀୟ ଭାଇ । ନ ହେଲେ କମ୍ ଦରମାରେ ତୁମ ଘରେ ଖଟୁଥାନ୍ତା । ତୁମରି ଜାମା, ଲୁଗାପଟା ଦେଇ ଆଦର ଶରଧାରେ ତାକୁ ବୋଲି ସିନା ରହିଛି । ତୁମେ ତ ତାକୁ ସବୁବେଳେ ପଟ୍ଟନାୟକ ବାବୁଙ୍କ ଘରକୁ ପିଠାପିଣା, ତିଅଣ ତରକାରୀ ଦେଲି ବୋଲି ମୋ ଉପରେ ଚିଡ଼ିଲ । ବିଚାରା ବାହା ହୋଇଛନ୍ତି । ବୁଢ଼ା ବାପ-ମା'ଙ୍କ ଯୋଗୁ ବୋହୂଙ୍କୁ ଆଣି ପାରୁ ନାହାନ୍ତି । ନିଜେ କ୍ଷୋଭରେ କଣ କରନ୍ତି; ଜାଣ ପୁରୁଷ କେବେ ପୁରୁଷଙ୍କ ସୁଖ ସହି ପାରନ୍ତି ନାହିଁ । ଯେବେ ସେ ଚାକର ଟୋକାଟା ଆସେ ତୁମେ ଏଥର ନିଜେ ରୋଷାଇ କରିବ ଯେ ।'' 'ଆରେ ଚାକର ରଖ । କିଏ ମନା କରୁଛି । ତାଙ୍କପାଇଁ

ଏଡ଼େ ଭେଣ୍ଡିଆଟାଏ କାହିଁକି ପୋଷିବ । ନା ତା ଭୋଜନ ? ତିନି ଜଣଙ୍କର ଏକା ଖାଏ, ପୁଣି ଫେସନ, ବଙ୍କାରିଟାଏ, ସେ ଗୀତ-''

''କି ଆଶ୍ଚର୍ଯ୍ୟ ! ଚାକର ହେଲା ବୋଲି ଖାଇବ ନାହିଁ, ରହିବ ନାହିଁ, ଘିନିବ ନାହିଁ, ଗୀତ ଗାଇବ ନାହିଁ ଖାଲି ତୁମର ବାଡ଼ିବଗିଚାରେ ଖଟୁଥିବ, ଚୋର ଘଉଡ଼ଉଥିବ । ଦେଖୁନ କେଡ଼େ ସୁନ୍ଦର ବଗିଚାଟାଏ କରିଦେଇଛି ଅଗଣାରେ । ଡିମ୍ବଫୁଟା ଛୁଆଟାଏ କ'ଣ ମୁଁ ତାକୁ ଦୁଧ ପିଆଉଥିବି ନିଜର ତ ନାହିଁ । ନିଜର ତ ନାହିଁ । ଫେର୍ ଘରେ ଅଧେ ଦିନକ ରାତି ରହୁନ । ମୋତେ ଡ଼ର ମାଡ଼ିବ ନି ?''

ଇତିମଧ୍ୟରେ ଶ୍ରୀମତୀ ରାୟ ଷ୍ଟୋଭ୍‌ରୁ ଚା କିଟିଲି ଓହ୍ଲାଇ ଚା ପକାଇଲେଣି । ଚା ରଙ୍ଗ ହେବାକୁ ଅପେକ୍ଷା କରି ଗୁଣୁ ଗୁଣୁ ହୋଇ 'ଗୁଣିଆ ଝାଡ଼େ ଲୋ ଡାହାଣୀ'' ଗୀତଟି ଗାଇ ସକାଳର ପ୍ରସାଧନୀ ସାରି ଆଖିରେ ଲଞ୍ଜାଟାଏ ଟାଣୁଥାନ୍ତି । ଏଣେ ଡକ୍ଟର ରାୟ ''ଆପ୍ ହି କା ଗୀତ'' ଶୁଣୁଥାନ୍ତି ଓ ଗୀତ ସହିତ ତାଳ ରଖି ଖିଅର ହେଉଥାନ୍ତି, ଟୁଇଷ୍ଟ ବି ମଝିରେ ମଝିରେ କରୁଥାନ୍ତି ।

ଚା-ଖୋର ଯିମିତି ସାଗ୍ରହରେ ଚା ଆସିବାକୁ ଅପେକ୍ଷା କରିବାବେଳେ ମେଜାଜରେ ଥାଏ ଡକ୍ଟର ରାୟ ସିମିତି ମେଜାଜରେ ଥାନ୍ତି । ମୁହଁରେ ପାଉଡ଼ର ଲଗାଇ ଅପେକ୍ଷା କରୁଥାନ୍ତି କେତେବେଳେ ସୁନା-ଚୁଡ଼ି ପିନ୍ଧା ଗୋରା ହାତଟି ଧଳା କାପରେ ସୁନେଲି ଚା ନେଇ ଆସିବ । ସିଗାରେଟ୍ ପେକେଟ ଉପରେ ସିଗାରେଟ୍‌ଟିଏ ପାଞ୍ଚମିନିଟ୍ ହେଲା ଭସ୍ମୀଭୂତ ହେବାକୁ ଅପେକ୍ଷା କଲାଣି ।

ଶ୍ରୀମତୀ-କପ୍‌ଟି ବଢ଼ାଇ ଦେଇ କହିଲେ, ''ଦେଖିଛ ନା ଚନ୍ଦ୍ର ମଲ୍ଲିକା ଫୁଲଟି କେତେ ଆଗତୁରା ଫୁଟିଛି ଆମ ଅଗଣା ବଗିଚାରେ । କିଏ ଗଛ ଲଗାଇଥିଲା ମନେ ପଡୁଛି ? (ଚାକରଟୋକା ଭୀମା ନୁହେଁ ତ ? ଡକ୍ଟର ରାୟ ଭାବିଲେ) । ମୁଁ ନିଶ୍ଚୟ ଆଜି ପିନ୍ଧିବି ରିଙ୍ଗ ଜୁଡ଼ାରେ ପ୍ରଥମ ଫୁଲଟି ।''

''ନା, ନା, ନା'' ରେଡ଼ିଓ ବନ୍ଦ କରି ଉଠି ବସିଲେ ଡକ୍ଟର ରାୟ । ''ସେ କଥା କହ ନାହିଁ । ତୁମର ଗଞ୍ଜାମୀ ଅଭ୍ୟାସ ଛାଡ଼ି ନାହିଁ ଦେଖୁଛି । ସେଠି ଫୁଲକୁ ଫୁଲବୋଲି ବିଚାରନ୍ତି ନାହିଁ ସ୍ତ୍ରୀ-ପୁରୁଷ । ଫୁଲ ବିକା-କିଣା ହୁଏ । ଶ୍ରୀମତୀ ରାୟ କାହିଁକି, ମିସ୍ ଇଣ୍ଡିଆ ବା ମିସ୍ ଇଉନିଭର୍ସ ଆସିଲେ ବି ସେ ଫୁଲ ପାଇବେ ନାହିଁ ।''

ଇଲାଷ୍ଟ୍ରେଟେଡ୍ ଉଇକ୍ଲିରୁ ଛବି ଲେଉଟାଉଥାନ୍ତି ଶ୍ରୀମତୀ ଏବଂ ପ୍ରଶଂସମାନ ଚକ୍ଷୁରେ ଚାହୁଁଥାନ୍ତି ଡକ୍ଟର ରାୟଙ୍କୁ । ପ୍ରଥମ ଚୁମ୍ବକରେ ପୁଣି ମୁଡ୍ ଆସିଗଲା ଡ଼କ୍ଟରଙ୍କର; ସେ ଗାଇଲେ, ଆଖି ମାଗେ ଚିର ପରିଚିତ କାରୁକାନ୍ତ କମନୀୟକରେ ଆସିବାର ସ୍ୱର୍ଣ୍ଣ-ବର୍ଣ୍ଣ ଚା । ତା ବୋଲି ତୁମେ କ'ଣ ଭାବିଛ ଚା-କପ୍ ବିନିମୟରେ ଚନ୍ଦ୍ରମଲ୍ଲିକା ପାଇବ ? ଦେଖୁଛି ସଖି । ତୁମେ ବି କ୍ରମେ ରସିକା ସାଜୁଛ । ଆଖିରେ ଲାଞ୍ଜି କଜଳ, ବାଣୀବିହାର ଡାଞ୍ଚାରେ କାବ୍ ଉପରେ ଚୁଳ,ସ୍ଲିଭ୍ ଲେଶ୍ ବ୍ଲାଉଜ୍, ପୁଣି ଗଭାରେ ଚନ୍ଦ୍ରମଲ୍ଲିକା ଖୋଜିଲଣି ।''

"ରସିକତାରେ ତୁମର କେଉଁ ଜଣା ହେଉଛି କି ? କବିତା, ଗପ, ଫୁଲ, ମିସ୍, ମିସେସ୍ ଭିତରେ ମଜି ତୁମର କାନମୂଳ ଚୂଳ ବି କଳା ହେଲାଣି, କଲପ ଲଗେଇବା ଦରକାର ପଡୁନି । ପଟ୍ଟନାୟକ ବାବୁଙ୍କ ପରିବୀଟଲ ଚୂଳ ତୁମକୁ ବେଶ୍ ମାନନ୍ତା ।"

ତୁମକୁ ପଟ୍ଟନାୟକ-ଭୂତ ଲାଗିଛି ଦେଖୁଛି । କଥା କଥାକେ ପଟ୍ଟନାୟକ ବାବୁ । ରାଧାଙ୍କ ପରି ତୁମେ ତାଙ୍କର ଅଷ୍ଟୋତ୍ତରଶତ ନାମ ଜପିବାକୁ ଆରମ୍ଭ କଲଣି । ଆଚ୍ଛା, ସତରେକ'ଣ ମୋଠି ରସିକତା ଦେଖୁଛ ? ମୋତେ କାଲି ସଭାରେ ଜଣେ ମୋତେ ରସିକ ଗାଛିକ ବୋଲି କହିଲା । ତା ଛଡ଼ା ଯେଉଁ କାଣ୍ଡ ହେଲା ସେଇ ସଭାରେ ତାହା ରସିକତାର ଚୂଡ଼ାନ୍ତ ।"

"ଆମେ ସେ କଥା ଶୁଣିବାପାଇଁ ଯୋଗ୍ୟ ତ ? ସଭାକୁ ତ ଯିବାର ସୌଭାଗ୍ୟ ଘଟିନାହିଁ; ଶୁଣିଥାଏଁ ଭଲା ।"

"ତୁମେ ଓଢ଼ଣାଟାଏ ଏଥର ଟାଣ । ଏଇ ଓଢ଼ଣା ନେଇ ଏତେ କଥା । ଆଉ ବିଚାରୀ ସେ ସ୍ତ୍ରୀଲୋକଟିର ଅବସ୍ଥା-"

"କିଏ ସେ ଭାଗ୍ୟବତୀ ?"

"ଭାଗ୍ୟବତୀ କି ନା କହିପାରିବ ନାହିଁ, ଅବଗୁଣ୍ଠନବତୀ ଅବଶ୍ୟ । ବୋଇତ-ବନ୍ଦାଣ ସମ୍ପର୍କରେ ମୋର କିଛି କହିବାର ଥିଲା; କିନ୍ତୁ ଉତ୍ସବର ଇତିହାସ ମୋତେ କିଛି ଜଣା ନଥିଲା । ଅନ୍ଧାରରେ, ପଦେ ଅଧେ କହି "ବୋଇତ ଲାଗିଲା ଯାଇ ସିଂହଳଦ୍ୱୀପରେ' ସୁର୍ ଧରି ଗାଇଲି । ଦୈବକୁ ସେତିକିବେଳେ ମୋତେ ଜଣେ ଶ୍ରୋତା ଅନୁରୋଧ କଲେ, ମୁଁ କିପରି ଗଳ୍ପ ଲେଖେଁ, ସେଇକଥା କହିବାପାଇଁ "

"ତୁମକୁ ପଇସା ଦେଇ ଲୋକେ ଏଇଥିପାଇଁ ଡାକନ୍ତି । ମୋତେ ଡାକିଲେ ବିନା ପଇସାରେ ଦୁଇ ମିନିଟ୍ ଭିତରେ କହିଦିଅନ୍ତି, ତୁମେ କେମିତି ଗପ ଲେଖ ।"

"ମୋ କଥା ଆଗ ଶୁଣି ସାର । ଗପ ପଛେ କହିବ । ସଭାରେ ଜଣେ ଅବଗୁଣ୍ଠନବତୀ ଥିଲେ । ମୁଁ ତାଙ୍କୁ ଚାହିଁ ଉଦାହରଣ ଛଳରେ କହିଲି, "ଧରନ୍ତୁ, ମୁଁ ଜନୈକା ପୀତବସନା ଅବଗୁଣ୍ଠନବତୀଙ୍କୁ ଦେଖିଲି । ସେ କିନ୍ତୁ ମୋତେ ଚାହିଁଲେ ନାହିଁ । ସ୍କୁଲ-କଲେଜର ଛାତ୍ରୀ ଶିକ୍ଷୟିତ୍ରୀ, ଅଧ୍ୟାପିକା ସମସ୍ତେ ମୋତେ ଦେଖିବାକୁ, ମୋ ବକ୍ତୃତା ଶୁଣିବାକୁ ପାଗଳୀ । ଅଥଚ ସେ କାହିଁକି ମୋତେ ଚାହିଁଲେ ନାହିଁ । ଏଇ ଅଭିମାନ, ଅପମାନର ନିଦର୍ଶନ ମୁଁ ମୋ ମସ୍ତିଷ୍କ-ଗହ୍ୱରରେ ରଖିଲି - ଯିମିତି ପାତିମାଙ୍କଡ଼ ଗାଲମୁଣାରେ ଖାଦ୍ୟ ସାଇତି ଥାଏ । ଦଣ୍ଡେ ରହି ଡକ୍ଟର ରାୟ କହିଲେ, "ଏତକ କହି ସାରି ମୁଁ ରହିଗଲି ଏବଂ ସିଧା ସେଇ ଅବଗୁଣ୍ଠନବତୀଙ୍କୁ ଚାହିଁ ରହିଲି ଯିମିତି - ଯାତ୍ରା ପାର୍ଟିର ଓସ୍ତାଦ୍ ଗୀତ ଗାଉଁ ଗାଉଁ ହାରମୋନିୟମରୁ ଆଙ୍ଗୁଳି ଉଠାଇ ହାତ ଛାଡ଼ି ଦେଇ ଦର୍ଶକଙ୍କୁ ଚାହିଁ ରହେ । " Wonderful" Wonderful" Hear, Hear, ଶବ୍ଦରେ ସଭା କମ୍ପି ଉଠିଲା । ମହିଳାଟି ଅପ୍ରସ୍ତୁତ ହେଲା ପରି ଭାବ ଦେଖାଇଲେ କିନ୍ତୁ

ମୁହଁ ତଳକୁ ପୋତିଲାବେଳେ କଣେଇ ମୋ ଆଡ଼କୁ ଓଢ଼ଣାତଳୁ ଏମିତି ଚାହିଁଲେ ଯେ ସେ ସ୍ମିତ – ଜୀବନରେ ମୁଁ ସୁନନ୍ଦା, ସୁଷମା, ସାବିତ୍ରୀ, ଝରଣା, ନନ୍ଦିତା ବା ଭଟ୍ଟାଚାର୍ଯ୍ୟ ବାବୁଙ୍କ ସ୍ତ୍ରୀ କାହା ପାଖରେ ଦେଖିନାହିଁ । ସଭା ଶେଷରେ ସ୍ୱାମୀ–ସ୍ତ୍ରୀ ମୋତେ ଅଭିନନ୍ଦନ ଜଣାଇ ତାଙ୍କ ଘରକୁ ନିମନ୍ତ୍ରଣ କଲେ ।''

''ଯାଃ, ଯାଃ ! ତୁମର ନାବାଳକି କଟି ନାହିଁ, ମଥା ପାଗଳ ବି ହେଲାଣି ଦେଖୁଛି । ନିଜ ସ୍ତ୍ରୀ ଆଗରେ ଶହ ଶହ ସ୍ତ୍ରୀଙ୍କ ନାମ କହିଯାଉଛି, ଲଜ୍ଜା ନାହିଁ । ରସିକତାରୁ ଡିଗ୍ରୀଏ ଉପରକୁ ଯାଇ ଅଉଲ ନମ୍ବର ବେହିଆ ହେଲାଣି । ଏଇଥିରେ ଡକ୍ଟରେଟ୍ କ'ଣ ନୋବେଲ ପ୍ରାଇଜ୍ ପାଇବ । ବେଶ୍, ଆସ ମୋତେ ବି ବେହିଆ ଅଲାଜୁକ ସାଜି ଆସେ । ଆସ, ଆଇନା ପାଖକୁ, ପାଖକୁ ପାଖ ଲାଗି ଛିଡ଼ା ହୁଅ । ଦେଖ, ଉଇକ୍ଲିର 'ନିଉ ଉଏଡ୍‌ସ୍' ପୃଷ୍ଠାକୁ । ଆମେ ସୁନ୍ଦର ନା ସେମାନେ ? ଆମେ ବେଶୀ ମେଚ୍ କରିଛୁଁ ନା ସେମାନେ ?

'' ସାତ ବର୍ଷ ଭିତରେ ଯୋଡ଼ ପଟୁଥିବା ଗୋଟାଏ ସୁଦ୍ଧା ପେୟାର ଦେଖି ନାହିଁ । ଏବେ ବି ଆମେ ଆମ ଛବି ଯେବେ ପଠାଉଁ ତେବେ ପୃଷ୍ଠା ଝଲି ଉଠିବ ।''

''ମୁଁ ତ ସେଇ କଥା କହୁଛି । ତୁମେ ଯେଉଁ କର୍ପୂର ମାଳ ଆଣିଛ ତାକୁ ଗଳାରେ ପକାଅ । ମୁଁ ଫୁଲ ମାଳଟାଏ ନାଇବି । ଫଟୋ ପଠାଇଦେବା । ପାଞ୍ଚ ଟଙ୍କା ଦେବାକୁ କୁଆଡ଼େ । କେହି ଜାଣିବେ ନାହିଁ, ଆମେ ଏବେ ହୋଇଛୁଁ କି ସାତ ବର୍ଷ ପୂର୍ବେ ।''

''ବେଶ୍, ରାଜି । ତେବେ ତୁମେ ଓଢ଼ଣା ଟାଣିବ । ଅବଗୁଣ୍ଠନବତୀ ପ୍ରତି ମୋର ଟିକିଏ ଦୁର୍ବଳତା ଅଛି ସେ କଥା ତୁମେ ତ ଜାଣ ।''

''ହେଲା । ତୁମେ କିନ୍ତୁ ବୀଟ୍‌ନିକ୍ ସାଜିବ ପଟ୍ଟନାୟକ ବାବୁଙ୍କପରି ।''

ପ୍ରେମାତିଶଯ୍ୟରେ ଦୁହେଁ ଲଗାଲଗି ହୋଇ ଛିଡ଼ା ହେଉଁ ହେଉଁ ଗୋଟାଏ କ୍ଲାଇମେକ୍ସ ବା ଫିନିସିଂ ଟାଚ୍ ପଛକୁ ଯାଉଛନ୍ତି ଏତିକିବେଳେ ବାଡ଼ି ଦୁଆରପଟୁ ଡାକ ପଡ଼େ ''ମାଆ ! କବାଟ ଫିଟାଅ ।''

ସ୍ୱାମୀ–ସ୍ତ୍ରୀ ଅଲଗା ଅଲଗା ହୋଇଗଲେ । ଶ୍ରୀମତୀ ନୂଆ ଗଳାସ୍ୱର ବାରି ନପାରି ସାଗ୍ରହରେ ବାଡ଼ି ଦୁଆର ଫିଟାଇଦେଲେ । ଡକ୍ଟର ରାୟ କିନ୍ତୁ ନିଜ ରୂପ ଅନୁଧ୍ୟାନ କରିବାରେ ଲାଗିଥାନ୍ତି ଏବଂ କେଉଁଠି ବ୍ରଣ ଦାଗ ବା ଅର୍ଦ୍ଧପକ୍ୱ ଚୂଳ ଅଛି ତାକୁ ଖୋଜିବାରେ ବ୍ୟସ୍ତ ଥାନ୍ତି । ହଠାତ୍ ବାୟୁତରଙ୍ଗରେ ଭାସି ଭାସି ଆସି ଅନ୍ୟ ଏକ ଅବଗୁଣ୍ଠନବତୀର ଛବି ଠିକ୍ ଯେଉଁଠି ଶ୍ରୀମତୀ ଧକ୍କା ହୋଇଥିଲେ ସେଇଠି ଆଇନାରେ ତାଙ୍କ ସାଙ୍ଗକୁ ଯୋଡ଼ି ହୋଇ ଛିଡ଼ା ହୋଇଗଲା । ଆନନ୍ଦ ଓ ଆଶ୍ଚର୍ଯ୍ୟ ହୋଇ ଦଣ୍ଡେ ଡକ୍ଟର ରାୟ ନିଶ୍ଚଳ ହୋଇ ରହିଲେ । ତା'ପରେ ଅନାଇଲେ ପଛକୁ ମୂଳ ପ୍ରତିମାଟିକୁ ଦେଖିବା ଉଦ୍ଦେଶ୍ୟରେ । ବିସ୍ମୟର ସୀମା ରହିଲା ନାହିଁ ତାଙ୍କର ଅବଲୁକାକୁ ଦେଖି ।

କିଏ ଏ ଅବଗୁଣ୍ଠନବତୀ ? ସ୍ୱାଭାବିକ ସହଜାତ ଦୁର୍ବଳତାକୁ ଏଡ଼ି ନ ପାରି ଡକ୍ଟର ରାୟ ଅଗଣାକୁ ବାହାରି ଯାଉଥିଲେ ନିକଟରେ ଥାଇ ତା'ର ରୂପ ବ୍ୟବଚ୍ଛେଦ କରିବାକୁ; କିନ୍ତୁ

ପରକ୍ଷଣରେ ଭାବିଲେ ଯେ ଶ୍ରୀମତୀଙ୍କ ତୀକ୍ଷ୍ଣ ତୀବ୍ର ଦୃଷ୍ଟିର ଅନ୍ତରାଳରେ ଥାଇ ଆଗନ୍ତୁକାର ରୂପ କୁ ଲକ୍ଷ୍ୟ କରିବା ଶ୍ରେୟସ୍କର ହେବ । ତେଣୁ ତନ୍ମୟ ହୋଇ ଚକ୍ଷୁ କର୍ଣ୍ଣ ଏକାବେଳେ ସଜାଗ ରଖି ଆଳରେ ଆଇନା ଦେଖୁଥାନ୍ତି ।

''ତୁମେ –ତୁ କିଏ ?''–ଶ୍ରୀମତୀ ପ୍ରଶ୍ନୋତ୍ତର ଆରମ୍ଭ କଲେ ।

''ମୁଁ ବେହେରାଣୀ । ଶାଶୁଙ୍କୁ ଜର, ତା' ବଦଳ ମୁଁ କାମ କରୁଛି ।

''ଏବେ ବାହା ହେଇଛୁ ? ଗେରସ୍ତ କ'ଣ କରେ ?''

''ଦୁଇ ମାସ ହେଲା । ଗେରସ୍ତ ମ୍ୟୁନିସିପାଲଟି ଗାଡ଼ୀ ଡ୍ରାଇଭର । ଭୀମ ତାଙ୍କ ନାଆଁ ?''

''ଗେରସ୍ତ ନାଆଁ ଧଇଲୁ ?''

''ଆମର ଧରନ୍ତି ।''

''ତୋ ନାଆଁ ?''

''ପଦୁଆଁ ।''

ଡକ୍ଟର ରାୟ ଇତିହାସର ଏକ ରୋମାଞ୍ଚକର ଅଧ୍ୟାୟ ମନେ ପକେଇଲେ – ଯେଉଁଠି ଆଲ୍ଲାଉଦ୍ଦିନ୍ ଖିଲ୍‌ଜି ଦର୍ପଣରେ ଭୀମ ସିଂହଙ୍କ ପତ୍ନୀ ପଦ୍ମିନୀଙ୍କ ଅପରୂପ ଲାବଣ୍ୟ ଦେଖୁଥିଲେ । (ଯାଦୁ ଦର୍ପଣରେ ବାହାର ଦୁନିଆଁ ଦେଖୁଁ ଦେଖୁଁ ଲାନସ୍‌ଲଟ୍‌ନାମକ ଯୁବାଙ୍କୁ ଦେଖି ଲେଡ଼ି ଅଫ୍ ଶେଲ୍‌ଟର୍ କି ଟ୍ରେଜେଡ଼ି ହେଲା ତାହା ସୁବିଧା ମୁତାବକ ଡକ୍ଟର ରାୟ ମନେ ପକାଇଲେ ନାହିଁ) ।

''ନୂଆ ବାହା ଶାଢ଼ୀଟା ପିନ୍ଧି ମଇଳା ସଫା କରୁଛୁ ?''–ଶ୍ରୀମତୀ ରାୟ ପଚାରି ଚାଲିଥାନ୍ତି । ପଦୁଆଁକୁ ସେ ଦେଖାଇବାକୁ ଚାହାନ୍ତି ଯେ ବଡ଼ ଘରର ସ୍ତ୍ରୀ ମଧ୍ୟ ଗରିବ ଅଧମର ସ୍ତ୍ରୀ ବିଷୟରେ ଆଗ୍ରହୀ, ସହାନୁଭୂତିସମ୍ପନ୍ନା ।

''କ'ଣ କରିବି ମାଆ । ମୋର ଏଇ ଖଣ୍ଡିକ ଶାଢ଼ୀ । ବାପା ଦେଇଥିଲା ।'' ଡକ୍ଟର ରାୟ ଆଇନାରେ ଦେଖିଲେ ପଦୁଆଁର ଆଖି ଅଶ୍ରୁ ଛଳ ଛଳ ଯିମିତି ।

''ବାପଘର କେଉଁଠି ? ଆମ ଗଞ୍ଜାମ ଆଡ଼େ ? କଥାର ଟାଣ ବରହମପୁରୀ ଜଣାପଡୁଛି । ପୁଣି ଫୁଲ ନାଇଛୁ ଜୁଡ଼ାରେ ।''

''ନା, ମା ! ମୋ ଘର ଏଇଠି । ମୋ ମାଆ ଥିଲା ଦକ୍ଷିଣୀ, ତେଲେଙ୍ଗାଣୀ । ହେଲେ ବାପା କଟକ ଆଡ଼ର ଲୋକ ।''

''ତୋ ବାପା ?''

''ଏତେ କଥା କାହିଁକି ପଚାରୁଛ ମାଆ ! ମୁଁ ବଡ଼ ଦୁଃଖିନୀ । ପିଲାଦିନରୁ ମାଆ ବାପା ନାହାନ୍ତି । ମାଆ ଥିଲା ଅନ୍ଧୁଣୀ; ବାପା ବଡ଼ରୋଗୀ । ବାପା ଚଲାବୁଲା ବି କରି ପାରୁ ନଥିଲା । ଏଇ କଚେରୀ ଆଗର ଆମ୍ବ ଗଛମୂଳେ ତା' ଜୀବନ ଗଲା । ପୋଡ଼ା ପୋତା କରିବା ପାଇଁ କେହି ନଥିଲେ । ଦୁଇଟା ବାବାଜି ମାଆ ଶୋଇଥିଲାବେଳେ ମୋତେ ଚୋରି କରି କଲିକତା

ନେବାକୁ ଯାଉଥିଲେ । ଟେସନ ମେହେନ୍ତର ବୁଢ଼ା ମୋତେ ଉଦ୍ଧାର କରି ପାଳିଥିଲା । ସେ ବି ମଲାଣି ମାସେ ହେଲା ।''

ଦୟାରୁ ସହାନୁଭୂତି, ସହାନୁଭୂତିରୁ ପ୍ରେମ କବିମାନେ କହନ୍ତି । ଡକ୍ଟର ରାୟଙ୍କ ରୋମାଣ୍ଟିକ୍ ସରସ ହୃଦୟ ପଦୁଆଁର କରୁଣ ଜୀବନ-ଗୀତିକାରୁ ଗୋଟିଏ ସୁନ୍ଦର ମିଳନାନ୍ତକ ଗଳ୍ପ ହେବ ବୋଲି ସ୍ଥିର କରି ସାରିଲେଣି । ଭୀମ ସିଂହ ସ୍ତ୍ରୀ ପଦୁଆଁର ଯେତିକି ରୂପ ଆଇନାରେ ସେ ଦେଖିଲେ ତାହା ନାୟିକା ପାଇଁ ଯଥେଷ୍ଟ । କେବଳ ଉପମା ଖୋଜିଲେ ହେଲା । ଶ୍ରୀମତୀ ରାୟଙ୍କ ହଳଦୀମଖା ଦେହ ଅପେକ୍ଷା ପଦୁଆଁର ଦେହକାନ୍ତି ଉଜ୍ଜ୍ୱଳତର । 'ବିଭୂଷଣପୁଷ୍ପେ ଯା କାନ୍ତି ଜାଣ', ଏଥିରେ ସନ୍ଦେହ ନାହିଁ ।

''ଟିକିଏ ସାଉଁଟି ସମ୍ଭାଳି ଲୁଗାଟା ପିନ୍ଧ, ପିଠ ବୋଇଲେ ପେଟ, ଗୋଡ଼ ବୋଇଲେ ମୁଣ୍ଡ ଦଶିଯାଉଛି ଯେ । ଫଟା ତୁଟା ସାଇୟା ବ୍ଲାଉସ୍ ବି ଖଣ୍ଡେ କାହିଁ ପାଇଲୁ ନାହିଁ ? ଘରେ ବାବୁ ଅଛନ୍ତି ଯେ'' – ଶ୍ରୀମତୀ ରାୟ ନିଜ ସାନ ଭଉଣୀକୁ ବେଶବସନରେ ଟ୍ରେନିଂ ଦେବାକୁ ଆରମ୍ଭ କଲେ । ତାଙ୍କୁ ଜଣା ନାହିଁ ଯେ ବାବୁ ନିର୍ନିମେଷ ନୟନରେ ଅନେକ ସମୟ ଧରି ତାହି ସବୁ ଦେଖି ସାରିଲେଣି । ପଦୁଆଁ ବି ଥରେ ଅଧେ ଦେଖି ନେଇ ବାବୁଙ୍କ ରୋମାଣ୍ଟିକ୍ ବୋହିମିଆନ୍ ସ୍ୱଭାବ ବୁଝି ସାରିଲାଣି ।

ସ୍ତ୍ରୀଲୋକମାନେ ପଟ୍‌କରି ପୁରୁଷଙ୍କ ପ୍ରକୃତି ଧରି ପାରନ୍ତି ।

ସଲ୍ଲଜ ସ୍ମିତ ଓ ଭଙ୍ଗୀରେ ପଦୁଆଁ ଶ୍ରୀମତୀ ରାୟଙ୍କ ହିତୋପଦେଶ ମାନି ଛିଣ୍ଡା ଡୋରିଆ ଗାମୁଛାଟାରେ ନିଜର ଅସଂବୃତ ଯୌବନକୁ ଏମିତି ବାଗରେ ସନ୍ନିବଦ୍ଧ କରି ନେଲା ଯେ ଟେଡ଼ିଡ୍ରେସ୍ ପେଟାର୍ଣ୍ଣରେ ତା' ଦେହର ପ୍ରଫାଇଲ୍,କଣ୍ଟୁର୍, ଆଉଟ ଲାଇନ୍ ସବୁ ଆହୁରି ସୁନ୍ଦରଭାବରେ ପ୍ରକଟିତ ଓ ପରିସ୍ଫୁଟ ହେଲା ।

ଡକ୍ଟର ରାୟ ପଦୁଆଁ ମୁହଁରେ ଯେଉଁ ସ୍ମିତ ଦେଖିଲେ ତାହା ପୂର୍ବ ରାତିର ଅବଗୁଣ୍ଠନବତୀର ସ୍ମିତକୁ ବଳିଗଲା । ତାଙ୍କୁ ଜଣାଗଲା ସହର-ବଜାର, ସ୍କୁଲ-କଲେଜର ସହ ସହ ସୁନନ୍ଦା, ନନ୍ଦିତା, ସାବିତ୍ରୀ, ସୁନୀତା, ସୁଷମା, ଝରଣା, ପ୍ରେମଲତା ବା ଭଟ୍ଟାଚାର୍ଯ୍ୟ ବାବୁଙ୍କ ଏପିରି କି ମୋନାଲିସାର ସ୍ମିତଠାରୁ ମଧ୍ୟ ବହୁ ମାଧୁରୀପୂର୍ଣ୍ଣ । କାରଣ ତାଙ୍କପରି କଳ୍ପନାବିଳାସ ଦୃଷ୍ଟିରେ ସେ ସ୍ମିତରେ କୈତବ, ଛଳନା ନ ଥିଲା ଖାଲି ସରଳା ନିଷ୍ପାପର ମୋହିନୀ ମାୟା । ସେ ଭାବିବାକୁ ଆରମ୍ଭ କଲେ, ଭୀମ ସିଂହ ଓ ପଦ୍ମିନୀ ମଝିରେ ଉଦ୍ଦିନ୍ ଛିଡ଼ା ହେବା ଏବଂ ଭୀମ ସିଂ ଓ ପଦୁଆଁ ମଝିରେ ଡକ୍ଟର ରାୟ ଛିଡ଼ାହେବା ହଠାତ୍ ରୋମାଣ୍ଟିକ୍ ମୁରନିଆଲିଜମ୍‌କୁ ଖସି ଆସିବାପରି ହାସ୍ୟକର ହେବ ନାହିଁ ତ ?

ତେଣେ ପଦୁଆଁ ରୋମାନ୍ସ ବା କୌଣସି ବୁଝେ ନା । ଦୟା, ଅନୁକମ୍ପା, କରୁଣା, ସହାନୁଭୂତି ପ୍ରେମ ବୋଲି ଗୁଡ଼ାଏ କିଛି ଅଛି ଏ କଥା ବି ସେ ସ୍ୱୀକାର କରିବାକୁ ନାରାଜ । ସେ ଏତିକି ଜାଣେ ତା'ର ସ୍ୱଳ୍ପ ଧନକୁ କେଉଁଠି କେତେ ଚଢ଼ା ସୁଧରେ ଖଟାଇ ପାରିବ ।

ସେଇଥିରୁ ହୁଏ ତ କିଛିତ୍ କେଉଁ ମ୍ୟୁନିସିପାଲିଟି କର୍ମଚାରୀ ବା କମିଶନାର କୁଦେଇ ଗେରସ୍ତକୁ ଡାଇଭର କରିପାରିଛି । ସମାଜର ତୀବ୍ର ଘୃଣା, ହତାଦର ଓ ଅବିଚାରର ଶିକାର ହୋଇଛନ୍ତି ତା'ର ଚିର ରୋଗୀ ବାପା ଓ ଜନ୍ମାନ୍ଧ ମାଆ । ସେମାନେ ଯେଉଁ ନିର୍ଯ୍ୟାତନା ଭୋଗିଛନ୍ତି ତା'ର ପ୍ରତିଶୋଧ ନେବାପାଇଁ ପଦୁଆଁର ରକ୍ତ ଟକ୍ ଟକ୍ ହୋଇ ଫୁଟି ତା'ର ଓଠ ଗାଲକୁ ରଞ୍ଜିତ କରିଛି ସିନା ଐତିହ୍ୟ, ପରମ୍ପରା ବୋଲି ତା'ର କିଛି ନାହିଁ । ଯେଉଁ ଉତ୍ସରୁ ତା'ର ଜୀବନ ସ୍ରୋତ ପ୍ରବାହିତ ତାହା ଦୂଷିତ ଏପରି କି ବିଷାକ୍ତ । ଭଙ୍ଗୀ କଲୋନୀର ଯେଉଁ ପରିବେଶ ଓ ବାତାବରଣ ତାହା ତାକୁ ରକ୍ତ-ମାଂସ-ହାଡ଼ ଓ ଜୁଆର ପୂଜାରିଣୀ କରିଛି ଏବଂ ଜଙ୍ଗଲୀ ଜୀବନାଦର୍ଶବ୍ରତୀ କରିଛି । ଆଜି ସେ ଅଷ୍ଟପଦୀ ରୂପରେ ଜୀବନରେ ଅନ୍ୟତମ ବଡ଼ ଶିକାର କରଗତ କରିବା ଉପରେ । ଡକ୍ଟର ରାୟଙ୍କ ଆଖି-ଭାବଭଙ୍ଗୀରୁ ରୋମାଣ୍ଟିକ୍ ଥୋପ ଗିଳିବାର ତାଙ୍କର ଆଗ୍ରହ ସେ ବେଶ୍ ନଜରକରି ସାରିଲାଣି ।

ଶ୍ରୀମତୀ ରାୟଙ୍କ ଏତେ ଗଭୀରକୁ ଚାଷ ନାହିଁ । ସ୍ୱାମୀଙ୍କର ପ୍ରକୃତି ତାଙ୍କୁ ମଧ ମୋହାବିଷ୍ଟ କରିଛି । ସେ ସମାଜରେ କେତେ ଉଚ୍ଚରେ ତାଙ୍କର ସ୍ଥାନ କେଡ଼େ ଭାଗ୍ୟବତୀ ମଧ; ଏହି ପରିଚୟ ହତଭାଗିନୀ ଆପଣଙ୍କୁ ଦେଇ ଆତ୍ମଶ୍ଳାଘା ଅନୁଭବ କରିବା ଉଦ୍ଦେଶ୍ୟ । ପୁଣି ସ୍ୱାମୀଙ୍କ ଆଗରେ ଠାଏଁ ପ୍ରମାଣ ଦେବାକୁ ଯାଆନ୍ତି ଯେ ନାରୀ ଈର୍ଷାପରାୟଣା ନୁହେଁ, ନାରୀ ନାରୀର ନୁହେଁ, ବରଞ୍ଚ, ସେ ସର୍ବତ୍ର ଦୟାର ପ୍ରତିମୂର୍ତ୍ତି । ''ଫିନାଇଲ୍ ଦେଇ ନର୍ଦ୍ଦମା, ପାଇଖାନା ଭଲ କରି ଦେବୁ । ବୋତଲ ବାଥରୁମ୍ ଥାକରେ ।'' ଦଣ୍ଡେ ପୁଣି କହିଲେ, ''ତିନିଟାବେଳକୁ ଆସି ପାରିବୁ ? ଗଣ୍ଡିଏ ପଖାଳ ଅଛି । ତିଅଣ ତରକାରୀ ସବୁ ରଖିଥିବି, ? ପୁନେଇଁ ବକ୍‌ସିସ୍ ବି ଦେବି ।''

ଶ୍ରୀମତୀ ବର୍ତ୍ତମାନ ଆତ୍ମୋତ୍ସର୍ଗ, ଏପରି ଆତ୍ମାବଳି ଦେବା ଆଳରେ । ବୁଢ଼ା ଚୁଙ୍ଗୁଡ଼ି କାହାଣୀରେ ପ୍ରାୟଶ୍ଚିତ୍ତ କରିବାକୁ ଯାଇ ଯିମିତି ବୁଢ଼ାଟା ବୁଢ଼ାକୁ ''ହଳଦୀ କାଠୁଆ ନବୁ'' ''ସିନ୍ଦୂର ଫରୁଆ ନବୁ'' ଏବଂ ଶେଷରେ 'ମତେ ନବୁ' ନିଧନ ଟାଣି ଆଣିଲା ଶ୍ରୀମତୀ ବୋଧ ହୁଏ ସେଇଆ କରିବାକୁ ଯାଉଛନ୍ତି । ଅନ୍ୟ କେହି ଏ କ୍ଷେତ୍ରରେ ହୁଏତ ଘଉଡ଼େଇ ଦେଇଥାନ୍ତା, ବିଶେଷ କରି ସ୍ୱାମୀକୁ କେଉଁ ସ୍ତ୍ରୀ ସଂଶୟ-ନେତ୍ରରେ ଦେଖେ; କିନ୍ତୁ ଏଠି ଆଗ୍ରହର ଅବକାଶ ନାହିଁ । ମେହେନ୍ତରାଣୀ କୁଷ୍ଠରୋଗୀର ଝିଅଟା ପ୍ରତି ତାଙ୍କ ସ୍ୱାମୀ ଆକୃଷ୍ଟ ହେବେ ? ସେ ନିଜେ ତା ସାଙ୍ଗରେ ପ୍ରତିଦ୍ୱନ୍ଦ୍ୱିତା କରିବେ ? ଛି ! ଶ୍ରୀମତୀଙ୍କ ସମସ୍ତ ଚିନ୍ତ ଲୁଟ୍‌ତରାଜ କରିବାର ଛିଦ ପାଇ ପଦୁଆଁ କହିଲା, ''ଆସିବି ମା ! ନିଶ୍ଚେ; ରଖିଥିବ । ଘରେ ପବନ ହେଲା ହାଣ୍ଡି ଚୁଲ୍ଲୀକୁ ଯାଇ ନି । ପୁରୁଣା କନା ଖଣ୍ଡେ, ଜାମା ଖଣ୍ଡେ ଅଧେ ଦେବ ମା ।''

ଆଗ୍ରହାତିଶଯ୍ୟରେ ଘରକୁ ତରବରରେ ପଶିଯାଇ ବାକ୍‌ସଟା ଧଡ଼ କରି ଫିଟାଇ ତଳୁ ଶାଢ଼ୀଟାଏ ବାହାର କରି ଆଣିଲେ । ଡକ୍ଟର ରାୟଙ୍କ ଆଗରେ ପରସ୍ତ ପରସ୍ତ କରି ଫିଟାଇ

ଦେଖାଉଥାନ୍ତି ଓ କହୁଥାନ୍ତି, "ଦେଖିଲ ! ଦେଖିଲ ! କେଡ଼େ ଭଲ ଶାଢ଼ୀଟା କିମିତି ହୋଇଗଲା ନଳପୁର ସିଭିଲ୍ ଡିଫେନ୍ସ ଟ୍ରେନିଂରୁ ଫେରିଲାବେଳେ ଆଣିଥିଲି,ମନେ ଅଛି ? ହଳଦିଆ ରଙ୍ଗଟା ଫିକ୍କା ପଡ଼ି ମଝିରେ ଛେବଲା ହୋଇଯାଇଛି । ଅଞ୍ଚଳଟା ପୋକ କାଟି ଦେଇଛି । ଦେଇଦିଏ ବିଚାରୀକୁ । ଦେଖୁଛ ତା'ର ଲୁଗାପଟା ।"

ସେତେବେଳେ ଡକ୍ଟର ରାୟଙ୍କ ରସିକତା କୁଆଡ଼େ ହଜି ଯାଇଥିଲା ଓ ସେ ମନେ ମନେ ଭାବୁଥିଲେ ରିଆଲିଜମ୍ ତୀବ୍ର ଉତ୍ତାପରେ ରୋମାଣ୍ଟିସିଜମ୍ କେତେ ଶୀଘ୍ର ତରଳିଯାଏ । ପଦୁଆଁକୁ ତାଙ୍କର ଅଦେୟ ବୋଲି କିଛି ଚିଜ ନାହିଁ; ଏ ଭାବ ଲୁଚାଇ ରଖି ଯିମିତି ତାକୁ ସେ କିଛି ଦେବାକୁ ଚାହାନ୍ତି ନାହିଁ ସେଇ ଭଙ୍ଗୀ ପ୍ରକାଶ କରି ଡକ୍ଟର ରାୟ କହିଲେ "ଦେବ ତ ଦିଅ । ବଡ଼ ଦାମିକା ଶାଢ଼ୀଟା ଖାଣ୍ଟି ସିଲ୍କ । ତୁମେ ଆଉ ସେଇଟା ପିନ୍ଧିବ ନାହିଁ ନା କ'ଣ ? ତୁମକୁ ହଳଦିଆ ଶାଢ଼ୀ ଭାରି ଭଲ ମାନେ ।"

ପଦୁଆଁ ଆଡ଼କୁ ଲକ୍ଷ୍ୟ କରି ଅତି ତୁଚ୍ଛ ଜିନିଷଟାଏ ଫୋପାଡ଼ିଲା ପରି ଶ୍ରୀମତୀ ରାୟ ଅତି ଆଦରର ଶାଢ଼ୀଟାକୁ ଦେଇ ଦେଲେ ଏବଂ ନିଜକୁ କୃତାର୍ଥ ମଣିଲେ । ପଦୁଆଁ କୃତଜ୍ଞତାର ମୁଣ୍ଡ ନୁଆଁଇ ଦିହିଙ୍କି ଜୁହାର ଦେଲା । "ଦୀନହୀନ ଅବସ୍ଥାରେ ମଧ୍ୟ ନାରୀର କେତେ ସହଜାତ ଛଟକ ଥାଏ"-ମନ୍ତବ୍ୟ କରି ଶ୍ରୀମତୀ ପଦୁଆଁକୁ କହିଲେ, ପଦୁଆଁ ! ତୁ ବରାବର ଆସିପାରିବୁ ନି ? ଥରୁଥୁରିଆ ବୁଢ଼ୀଟା ଶୀତ-କାକରରେ ଥରି ଥରି ଆସିବାକୁ ବାବୁ ପସନ୍ଦ କରୁନାହାନ୍ତି । ସେ କାମ ବି ଭଲ କରି ପାରୁ ନି । ତୁ ଏଥର ଆ । ବେଳ ହେଲେ ଖୋଜାଖୋଜି କରି ସାଇଆ ଜାମା ଦେବି ଆଉ ଦିନେ ।"

"ମୁଁ ସବୁଦିନ କେଉଁଠି ଆସିପାରିବି ମା ! ବୁଢ଼ୀ ମୋତେ କ'ଣ କାମ କରାଇ ଦବ । ହପ୍ତାଏ ଅଧେ ଆସି ପାରିବି ବୁଢ଼ୀ ଫେର୍ କାମ ଧଇଲାଯାକେ ।"

ଚାନ୍ସ,ଏକ୍ସିଡେଣ୍ଟ,ଲାକ୍, ଫେଟ୍,କଏନ୍ସାଇଡେନ୍ସ, ଆଇରନି ଅଦ ଯେଉଁ ଉପାଦାନରେ ଟ୍ରେଜେଡ଼ି ଗଢ଼ି ଉଠେ ସେଇସବୁ ଉପାଦାନରେ କମେଡ଼ି ମଧ୍ୟ ତିଆରି ହେବାର ସମ୍ଭାବ୍ୟତା ଗବେଷଣା କରୁଁ କରୁଁ ଡକ୍ଟର ରାୟ ତାକତରକରେ ଧୁଆଧୋଇ କରୁଥିଲାବେଳେ ପଦୁଆଁର ଅଙ୍ଗସୌଷ୍ଠବ ଆଉଥରେ ତନ୍ନ ତନ୍ନ କରି ଦେଖିନେଲେ।

'ନିଶ୍ଚେ ଆସିବି ମା ତିନିଟାକୁ ।" କାମଦାମ ସାରି ଏଇ ପଦକ କହି ପଦୁଆଁ ଚାଲିଯାଇଥିଲା; ଦେଖିଲା ଚନ୍ଦ୍ରମଲ୍ଲିକା ଫୁଲଟାକୁ । ବୁଲିପଡ଼ି କହିଲା, "ମାଆ ! ଏ ଫୁଲଟା ଦବ, ଭାରି ଲୋଭ ହଉଛି ନାଇବାକୁ ।"

ଶ୍ରୀମତୀ ରାୟ କହିଲେ, "ମୋତେ ଯାହା ମିଳି ନି ତୋତେ ମିଳିବ ? ଯା, ଯା, ପଳା; ବାବୁ ଶୁଣିଲେ ବିରକ୍ତ ହେବେ ।"

ପଦୁଆଁ ଚାଲିଗଲା । ତା'ର ଦୁଃଖ ନାହିଁ, ଯାହା ମିଳିଲା ସେଇ ଢେର୍ । ମୂରୁମୂରୁ ହୋଇ ଶ୍ରୀମତୀ କହିଲେ " ଆଜି ଗୋଟାଏ ବାଜିବ ଖାଇଲାବେଳକୁ । ଭାଗ୍ୟକୁ ଆଜି

ରବିବାର । ଚାକରବାକର ନ୍ ଥିଲେ କଥାବାର୍ତ୍ତା କାହା ସାଙ୍ଗରେ ଦଣ୍ଡେ ହେବାକୁ ଫୁରୁସତ ମିଳିବ ନାହିଁ । କେତେ ଇଣ୍ଟାରେଷ୍ଟିଂ ଚମତ୍କାର ପଦୁଆଁର ଜୀବନ !''

ଯନ୍ତ୍ରଚାଳିତ ପରି ଡକ୍ଟର 'ହୁଁ' କଲେ ।

ପ୍ରାୟ ଅଢ଼େଇଟା ବେଳକୁ ଡକ୍ଟର ରାୟଙ୍କ ନିଦ ଭାଙ୍ଗିଲା କ'ଣ ଗୋଟାଏ ଶବ୍ଦରେ । ବିରାଡ଼ି ଲହୁଣୀଡବାଟା ଟେବୁଲ୍ ଉପରୁ ପକାଇଲା ଭାବି ଆଖି ମେଲାଇଲେ । ଝରକା କବାଟ ସବୁ ବନ୍ଦ ଥିବାରୁ ପ୍ରଥମେ ରାତି କି ଦିନ ଜାଣି ପାରିଲେ ନାହିଁ । ଅନ୍ଧାର ସହିତ ଆଖିର ପରିଚୟ ହେବାରୁ ଦେଖିଲେ ମୁଣ୍ଡ ଉପରେ ଶ୍ରୀମତୀ ପ୍ରସାଧନରତା । ଭିଜା ଚୁଳ ଓ ଜବାକୁସୁମର ମିଠା କଡ଼ା ଗନ୍ଧ ଘର ଭିତରେ । ପଣ୍ଡସ୍‌କ୍ରୀମ୍ ମୁହଁରେ ଘଷିସାରି ସେ କଜଳ ଲାଞ୍ଜି ଟାଣୁଛନ୍ତି । ଡକ୍‌ଟର ରାୟ, ମୋଟା ଗଳାରେ ପଚାରିଲେ, ''ଅଭିସାରରେ ବାହାରିଲ ନା କ'ଣ ?''

''ତୁମକୁ ଖେଳ କଉତୁକ ଲାଗିଛି । ତତଲା ପେଜ ପଡ଼ି ଗୋଡ଼ ଦିଟା ପୋଡ଼ି ଯାଇଥାନ୍ତା । ମୁଁ ଯାଉଛି ପଟ୍ଟନାୟକ ବାବୁଙ୍କ ଘରକୁ । ଦେଖେଁ ଭୀମାକୁ ଅଣାଇବାର କ'ଣ ବ୍ୟବସ୍ଥା କଲେ ।'' ଯୋତା ଗୋଡ଼ରେ ଲଗାଉଁ ଲଗାଉଁ  କହିଲେ, ''ହଁ, ସେ ମେହେନ୍ତରାଣୀଟା ଆସିବ ତିନିଟାବେଳକୁ । ପଖାଳ ତିଅଣ ତରକାରୀ ଚୁଲ୍ଲୀ ମୁଣ୍ଡରେ, କିଛି କରିବାକୁ ହେବ ନାହିଁ । ବଢ଼ାଇ ଦେଲେ ହେଲା । ଘର ଛାଡ଼ି କୁଆଡ଼େ ଯିବ ନାହିଁ । ଦିନ ଦ୍ୱିପହରେ ବଜାରରେ ଚୋରୀ ହେଉଛି ।''

ଶ୍ରୀମତୀ ଚାଲିଗଲେ । କବାଟରେ ବୋଲ୍‌ଟ ଲଗାଇ ଫେରିଆସି ପୁଣି ଶୋଇଲେ । ଗୋଟାଏ କାନରେ 'ବିବିଧ ଭାରତୀ' ମନୋରଞ୍ଜନ କାର୍ଯ୍ୟକ୍ରମ ଶୁଣୁଥାନ୍ତି; ଅନ୍ୟ କାନଟି ବାଡ଼ି କବାଟର ଜଞ୍ଜିର ଖଡ୍ ଖଡ୍ ଶବ୍ଦକୁ ଡେରିଥାନ୍ତି । ମନେ ମନେ ଭାବୁଥାନ୍ତି ଶ୍ରୀମତୀ ଯେବେ ଖିଆଲରେ ପଟ୍ଟନାୟକ ବାବୁଙ୍କୁ ଧରି ଭୀମାକୁ ଖୋଜିବାକୁ ହପ୍ତାଏ ଅଧେ ଗାଁକୁ ଚାଲିଯାନ୍ତେ ତେବେ ମନ୍ଦ ହୁଅନ୍ତା ନି । ହୋଟେଲରେ ଖାଇ ଚଳାଇ ନିଅନ୍ତେ ବରଂ କେଇଟା ଦିନ ।

କାନ୍ଥ ଘଡ଼ିରେ ଠଂ ଠଂ କରି ତିନି ବାଜିଲା । ଜଞ୍ଜିର ବି ଖଡ୍ ଖଡ୍ ହେଲା ।

ଡକ୍ଟର ରାୟ ଲମ୍ଫଦେଇ ଉଠିପଡ଼ିଲେ ଏବଂ ସିଧା ଯାଇ ବାଡ଼ି ଦୁଆର ଫିଟାଇ ଦେଖିଲେ ପଦୁଆଁକୁ । ସକାଳର ପଦୁଆଁ ଏ ପଦୁଆଁ ନୁହେଁ, ସାକ୍ଷାତ୍ ପଦ୍ମିନୀ । ବର୍ଷା–ଝଡ଼–ତୋଫାନରେ ମାଡ଼ ଖାଇଥିବା ଚଢ଼େଇଟିଏ ଥିଲା ପଦୁଆଁ ସକାଳେ । ବର୍ତ୍ତମାନ ସଯତ୍ନ ଲାଳିତପାଳିତ ଖେଳୁଆଡ଼ ଶିକାରୀ ଚଢ଼େଇ ପରି ସେ । କି ପରିବର୍ତ୍ତନ । ଡକ୍ଟର ରାୟ ଆତି ଉଦ୍ଭଟ କଳ୍ପନାରେ ମଧ୍ୟ ଏ ରୂପର ଛବି ମନରେ ଆଙ୍କି ନ ଥିବେ । ହଳଦିଆ ରଙ୍ଗର ନୂଆ ସିଲ୍‌କି ଶାଢ଼ୀରେ ଅବଗୁଣ୍ଠିତା ଶ୍ରୀମତୀ ରାୟ ବି କେବେ ଏମିତି ଦିଶୁ ନଥିଲେ–ପଦୁଁଆ ବର୍ତ୍ତମାନ ଯିମିତି ଦିଶୁଛନ୍ତି ତାଙ୍କରି ସେଇ ଫିକା, ତାଳିପକା ବେରଙ୍ଗ ଶାଢ଼ୀଟିରେ । ଡକ୍ଟର ରାୟ ଭାବିଲେ ଯିମିତି ବର୍ଷ–ବର୍ଷ ଧରି ନିଜ ଅସ୍ତ୍ରକୁ ସୟତାନ ପାଖରେ ବିକି ଦେଇଥିଲେ ଏଇ

ମୁହଁଟି ଲୋଭରେ ଏବଂ ସ୍ୱତଃସ୍ଫୂର୍ତ୍ତ କଣ୍ଠରେ ବାହାରି ପଡୁଥିଲା "Is this uhc face... make me immortal with kiss"- କିନ୍ତୁ ରହିଗଲେ ।

''ତୁ ଦଣ୍ଡେ ବସ । ମୁଁ ଆସୁଛି ମିନିଟ୍‌କଭିତରେ'' କହି ଡକ୍ଟର ରାୟ ତରବର ହୋଇ ଶାର୍ଟଟାଏ ଗଳାଇ ବାହାରିଗଲେ ଦାଣ୍ଡକବାଟ ଖୋଲି ।

ଘର ଶୂନ୍‌ଶାନ୍ । ପଦୁଆଁ ଏକୁଟିଆ । ପଖାଳଭାତ କାହିଁକି ସୁନାମୁଣ୍ଡାର ପ୍ରଲୋଭନ ମଧ୍ୟ ଏଡ଼ିଦେଇ ଅନ୍ୟ କେହି ସ୍ତ୍ରୀ ଏ ଅବସରରେ ପଳାଇଯାନ୍ତା; କିନ୍ତୁ ପଦୁଆଁ ଯିମିତି ପଣ କରିଛି ଆଭିଜାତ୍ୟ, ରୋମାଣ୍ଟିସିଜମ୍‌ର ବୁର୍ଖୁୟା ମୁଖାକୁ ଚିରି ଟୁକୁରା ଟୁକୁରା କରିବାର ଆନନ୍ଦ ସେ ପାଇବ । ଅବସ୍ଥାଚକ୍ରରେ ସେ ସୁବିଧାବାଦୀ ସାଜିଛି ଏବଂ ସୁବିଧାର ଗୋଲ୍‌ପୋଷ୍ଟ ସର୍ବତ୍ର ଯେଉଁଆଡ଼େ ଆଇଲେ ଗୋଲ୍ । ଉଇଲ୍ଲିର ଯେତେ ଯେତେ ନିଉ ଫ୍ରୁଡ୍‌ସ ସମସ୍ତଙ୍କ ମଝିରେ ଇନ୍ଦ-ଜାଲରେ ପି.ସି. କରିବାର କରତ ଚଳାଇ ଝିଅଟିକୁ ଦୁଇଖଣ୍ଡ କରି ଗଣ୍ଡି ମୁଣ୍ଡ ଅଲଗା ଅଲଗା କରିଦେଲା ପରି ସେ ବ୍ୟବଧାନ ସୃଷ୍ଟି କରିବା ପାଇଁ ଜିଦ୍ ଧରିଛି । ସୁନ୍ଦରୀ ତରୁଣୀ ଲାଞ୍ଜ ପିଟି ପିଟି ଶିକାରର ନିଶ୍ଚିତ ପ୍ରତ୍ୟାଖ୍ୟାନକୁ ଅପେକ୍ଷା କରୁଛି ।

ଡକ୍ଟର ରାୟ ପଟ୍ଟନାୟକ ବାବୁଙ୍କ ଘରକୁ ଯାଇ ଦେଖନ୍ତି କବାଟ ଭିତରପଟୁ ବନ୍ଦ । ''ପୁରୁଷ ପୁରୁଷଙ୍କ ଶିରୀ ସହିପାରନ୍ତି ନାହିଁ''-ଶ୍ରୀମତୀଙ୍କ ସକାଳର ଉକ୍ତି ମନେ ପଡ଼ିଲା । ତା' ଛଡ଼ା ଛୁଟୀ ବିଶ୍ରାମ ଅବସର ବିହୀନ ଜୀବନରେ ଗୋଟାଏ ଯୁଗ ପରେ ରବିବାର ଅପରାହ୍ଣ ଆସେ ସପ୍ତାହର ଶ୍ରାନ୍ତି, କ୍ଳାନ୍ତି ଅପଃନାଦନ କରିବା ପାଇଁ । ଶ୍ରୀମତୀ ଗଲେ କୁଆଡ଼େ ? କ'ଣ ମାଟିନି କ'ଣରେ ? କବାଟ ଫାଙ୍କେଇ ଉଙ୍କି ମାରିବେ ? ଛି ଏଣ୍ଟି-ରୋମାଣ୍ଟିକ୍, ଏଣ୍ଟି-ରୋମାଣ୍ଟିକ୍ ! ଖଟ ଖଟ୍ କରିବେ ନାହିଁ ଭାବୁଛନ୍ତି ବୁଲା କୁତାଟାଏ ଭୋ ଭୋ କରି ମାଡ଼ି ଆସିଲା । ବିବେକର ଦଂଶନରୁ ରକ୍ଷା ପାଇଲେ ।

ଡକ୍ଟର ରାୟ ଫେରି ଆସିଲେ ତରବର ହୋଇ । ସଂଜବେଳେ ମୁଣ୍ଡକୁ ଆଉଁଶିଲେ ଥରେ ଅଧେ । ସେଣାମାନଙ୍କର କୁଆଡେ ମୁଣ୍ଡରେ ଶିଙ୍ଗ ବାହାରେ । ଅନୁଭବ କଲେ ତାଙ୍କ ମୁଣ୍ଡଟା ଆବୁଡ଼ାବୁ ଲାଗୁଛି ।

ଶ୍ରୀମତୀ ରାୟଙ୍କ ଆଦେଶ ପାଳନ କରି ଡକ୍ଟର ରାୟ ଦବାର କଥା ସବୁ ଦେଲେ ଏବଂ ଅତ୍ୟନ୍ତ କର୍ମଠ କର୍ମଚାରୀ ନିଜ ମାଲିକାଣୀଙ୍କ ପ୍ରଶଂସା ଲାଭ ଆଶାରେ ଅଧିକା କିଛି ଦେଲେ ମଧ୍ୟ । ପଦୁଆଁ ଚାଲିଗଲା ଭାରସମ୍ଭାର ନେଇ; ପ୍ରତ୍ୟାଖ୍ୟାତାରୂପେ ନୁହେଁ ବରଂ ପ୍ରତୀକ୍ଷିତାର ଛାପ ନେଇ ।

ଡକ୍ଟର ରାୟ ଶୋଇ ଶୋଇ ଆଶ୍ଚର୍ଯ୍ୟ ହୋଇ ଭାବୁଥାନ୍ତି କିପରି ଡକ୍ଟର ଜେକିଲ୍ ଖୋଳଭିତରୁ ମିଷ୍ଟର ପ୍ରଜାପତିଟି ଏବଂ କାବ୍ୟପ୍ରାଣରୁ ପଶୁପ୍ରାଣଟି ଏତେ ଶୀଘ୍ର ବାହାରିପଡ଼ି ସ୍ୱଚ୍ଛନ୍ଦରେ ଖେଳି ପାରିଲା । ଫେର୍ ମନେ ପଡ଼ିଗଲା ସକାଳବେଳା ଉଠାଇବା ବେଳର ଦୃଶ୍ୟ, କୋଳ ବାଳା ସ୍ତରଭିନ୍ନବଲ୍‌କଳା ... ସ୍ୱରୂପ ମାଷ୍ଟାୟ ... ଲମ୍ବେ ବୃକ୍ଷରାଜଃ ... ଅଦ୍ୟ

ପ୍ରଭୃତ୍ୟୋବନତାଙ୍କି ତବସ୍ମି ଦାସଃ'' । ଥଣ୍ଡା ପଡ଼ିଯାଇ ଭାବିଲେ, ଅବଗୁଣ୍ଠନ ତଳେ ସୁନନ୍ଦା, ନନ୍ଦିତା, ଝରଣା, ସୁଷମା, ସାବିତ୍ରୀ, ଭଟ୍ଟାଚାର୍ଯ୍ୟବାବୁଙ୍କ ସ୍ତ୍ରୀ ଏପରି କି ଭୀମ ସିଂର ସ୍ତ୍ରୀ ମଦୁଆଁ ସମସ୍ତେ କ'ଣ ସମାନ ନୁହଁନ୍ତି ? ତେବେ କ'ଣ ମୋହମୁଦ୍‌ଗର ହେଲା ?

''ଫିଟାଅ'' - ଦାଣ୍ଡରେ ଶ୍ରୀମତୀ । ରୋବୋଟ୍‌ପରି ସ୍ୱୟଂଚାଳିତ ହୋଇ ଡକ୍ଟର କବାଟ ଫିଟାଇଲେ ।

''ଲଭ୍ ଏଟ୍ ଫାଷ୍ଟ ସାଇଟ୍'' ପରି 'ହେଟ୍ ଏଟ୍ ଫାଷ୍ଟ ସାଇଟ୍' ଅଛି ଏ କଥା ଦୁହେଁ ଦୁହିଁଙ୍କୁ ଦେଖି ଜାଣି ପାରିଲେ । ଦଣ୍ଡକ ଆଗରୁ ଦୁହେଁ ଥିଲେ କେତେ ଆପଣାର; ଦଣ୍ଡକ ପରେ କେତେ ପର । ଅଧଘଣ୍ଟାଏ ଆଗରୁ ଦୁହେଁ ଥିଲେ ଏକ ବୃନ୍ତର ଦୁଇ ଫୁଲ, ଅଧଘଣ୍ଟାଏ ପରେ ଏକୋଦର ପୃଥକ୍‌ଗ୍ରୀବ ଭାରଣ୍ଡ ପକ୍ଷୀ । ବାଘ-ବାଘୁଣୀ ଏକତ୍ର ଭୋଜନ ନ କରି ପୃଥକ୍ ଶିକାରରୁ ଆଜି ଫେରିଛନ୍ତି । ସ୍ୱାମୀ ସ୍ତ୍ରୀ ଅନ୍ୟର ସ୍ତ୍ରୀ ଓ ଅନ୍ୟର ସ୍ୱାମୀରୂପେ ବିଭିନ୍ନ ରଙ୍ଗମଞ୍ଚରେ ଅଭିନୟର କଣ୍ଟାକ୍ଟ ସାରି ଏକ ଗ୍ରୀନ୍ ରୁମକୁ ଫେରିଛନ୍ତି । ''ମରା ହଲ ବନ୍ଧୁ ଲାଚ୍ଛେ ।''

ଯେଣୁ ଉଭୟେ ମୁଦ୍ରାରୀ ତେଣୁ ହେଁସ ଧୂଆଧୋଇ ପ୍ରଶ୍ନ ଉଠିଲା ନାହିଁ ।

''ଗାବଃ ଗନ୍ଧେନ ପଶ୍ୟନ୍ତି'' । ସ୍ୱାମୀମାନେ ମଧ୍ୟ ଶ୍ରୀମତୀ ରାୟ ଘର ଭିତରକୁ ପଶି ଆସିଲାମାତ୍ରେ ବାରି ପାରିଲେ ଏକ ବିଦେଶୀ ଭାରି ଗନ୍ଧର ଲହରୀ । ତାଙ୍କୁ ଜଣାଗଲା ପ୍ରତିଘରର ଅନ୍ଧାରୁଆ କୋଣରେ ଯେମିତି କିଏ ଲୁଚିଛି । ଯିମିତି ଏଇ ଥିଲା, ଚାଲିଗଲା । ଯିମିତି ତାଙ୍କରି ଆଗେ ଆଗେ ସପ୍ ସପ୍ କରି କିଏ ଚାଲିଯାଉଛି, ମୁରୁକି ହସୁଛି, ମୁହଁ ମୋଡୁଛି । ଯିମିତି ଖଟରେ କିଏ ଶୋଇଥିଲା ସେ ପଶି ଆସିବା ପୂର୍ବରୁ ତରବରରେ ଚାଦରଟା ଝାଡ଼ିଝୁଡ଼ି ବିଛାଇ ଦେଇ ପଳାଇ ଯାଇଛି ।

ଯେଉଁ ଆଡ଼କୁ ଚାହିଁଲେ ସେହି ମୂର୍ତ୍ତି, ସେହି ସ୍ମିତ କେଲେଣ୍ଡର ଛବିରେ, ରେଡ଼ିଓରେ, ଆଇନାରେ । ଜୀବନଯାକ ଯେତେ ଯେତେ ସ୍ମିତ ପଟ୍ଟନାୟକବାବୁ ବା ଭୀମାକୁ ଦେଇଥିଲେ ସବୁଠୁଁ ବଳି ଶକ୍ତିଶାଳୀ ପଦୁଆଁର ଏ ସ୍ମିତ । ସାତ ବରଷରେ ସେ ଯାହା କରିପାରି ନାହାନ୍ତି ଦଶ ମିନିଟ୍‌ରେ ସେ ମେଜିକ୍ ମେହେନ୍ତରାଣୀଟାଏ ଦେଖାଇ ଦେଲା । ଡକ୍ଟର ରାୟଙ୍କ ଜ୍ଞାନଗାରିମା,ରୋମାଣ୍ଟିସିଜମ୍ ଆଭିଜାତ୍ୟର ବଡ଼ିମା ଅକ୍ଳେଶରେ ଚୁରମାର କରିଦେଲା ସାମାନ୍ୟ ଅବଗୁଣ୍ଠନରେ । ସେ ଧିକ୍‌କାର କଲେ ନିଜକୁ, ବିହ୍ୱଳ ମଧ୍ୟ ହେଲେ ।

ରୋଷେଇ ଘରକୁ ଯାଇ ଦେଖିଲେ ପଦୁଆଁ ସବୁ ପାଇଛି, କିଛି ଅଧିକ ମଧ୍ୟ । ବଡ଼ି ଡବା ଖୋଲା, ଆଚାର ବୋତଲ ନିଃଶେଷ, ଖସାଇଡୁ ଅଦୃଶ୍ୟ, ପନିପରିବା ଝୁଡ଼ି ଖାଲି ଭୀଷଣ ଜୋରରେ ଛାତି ଧଡ଼ପଡ଼ ହେବାକୁ ଆରମ୍ଭ କଲା ତାଙ୍କର । ତକିଆତଳୁ ଚାବିପେଣ୍ଡା ଖୋଜିବାକୁ ଆସି ଦେଖନ୍ତି କେତୁଟା ନୋଟ ଥିଲା ତାହା ମଧ୍ୟ ନାହିଁ । ନିଃଶ୍ୱାସର ଗତି ପ୍ରଖର ହେଲା । ଖୋଲା ଅଗଣାରୁ ତାଜା ହାୱା କିଛି ନେବାପାଇଁ ଯାଇଦେଖନ୍ତି । ଚନ୍ଦ୍ରମଲ୍ଲିକା ଫୁଲଟି

ନଖରେ ଲୀନ ହୋଇଛି । ଛୋଟ ବୁଦାଏ ରସ ବୃନ୍ତରେ ଲାଗିଛି ଯିମିତି ଲତାଟି କାନ୍ଦୁଛି ତା'ର ସର୍ବସ୍ୱ ଅପହରଣରେ ।

ଝାଳ ବହି ଯାଉଥାଏ ଦେହରୁ; ମୂର୍ଚ୍ଛିତା ହେଲାପରି ଲାଗିଲା ତାଙ୍କୁ । ସମ୍ଭାଳି ନ ପାରି ବାଷ୍ପରୁଦ୍ଧ ଦରସ୍ଫୁଟ ଗଳାରେ ପଚାରିଲେ, "ଫୁଲଟା କିଏ ଛିଣ୍ଡାଇଲା ?"

ଗୋଟାଏ ପକ୍କା ବୁଢ଼ା ଚୋର ମାଡ଼ ଦାଉରେ, ବିବେକର ଦଂଶନରେ ବା ଭୁଲ୍‌ରେ ଖନି ମାରିବା ଗଳାରେ ସତ କଥାକୁ ବଙ୍କେଇ ଟଙ୍କେଇ କହିଦିଏ; ଡକ୍ଟର ରାୟ ସିମିତି ଅବସ୍ଥାରେ ଉତ୍ତର ଦେଲେ, "ନା, ନା, ମୁଁ ? ମୁଁ ତୋଳିଲି କେତେବେଳେ, ମନେ ପଡୁ ନାହିଁ ତ ।"

ଆବିଷ୍କାରର ମାରାତ୍ମକ ଗୁରୁତ୍ୱ ଉଭୟଙ୍କ ମନରେ ଭିନ୍ନ ଭିନ୍ନ ପ୍ରତିକ୍ରିୟା ସୃଷ୍ଟି କଲା । ସ୍ୱାଭାବତଃ ଦୁର୍ବଳତା ଯୋଗୁଁ ନାରୀମାନେ ଅନ୍ୟ ଉପରେ ଅନିଷ୍ଟ କରିବା ପୂର୍ବରୁ ନିଜର କ୍ଷୟକ୍ଷତି କରିବସନ୍ତି । ଶ୍ରୀମତୀ ରାୟଙ୍କ ଆଗରେ ଦୁର୍ବଳମନାର ସେଇ ସମସ୍ୟା । " To be or not to be", ବଞ୍ଚିବେ କି ମରିବେ । ପୁରୁଷର ପଶୁବଳ ବେଶୀ ଥିବାରୁ (ଆଦିବାସୀମାନେ ଏ ପରିସ୍ଥିତିରେ କାଳ ବିଳମ୍ବ ନ କରି ସ୍ତ୍ରୀ କୁ ହତ୍ୟା କରନ୍ତି) ଡକ୍ଟର ରାୟଙ୍କ ଆଗରେ ଏକମାତ୍ର ସମାଧାନ ପନ୍ଥା ହେଲା "Put out the light and then put out the light" ପ୍ରଥମେ ଆଲୁଅ ଲିଭାଇ ନେବି ତା'ପରେ ଜୀବନ-ଦୀପ ଫୁଙ୍କି ଦେବି ।

ସନ୍ଧ୍ୟାଟି ବାହାରେ ଯେତିକି ଅଶାନ୍ତ ଘରଭିତରେ ରହସ୍ୟମୟ ଶାନ୍ତ ବାତାବରଣ ସତ୍ତ୍ୱେ ସମଧିକ ପୀଡ଼ାଦାୟକ । ଡକ୍ଟର ରାୟ ବାହାରର ତୋଫାନକୁ ମାନସିକ ଦ୍ୱନ୍ଦ୍ୱ ଅପେକ୍ଷା ସହନୀୟ ଓ ଶ୍ରେୟ ମଣି ବାହାରି ଗଲେ । ଗଲାବେଳେ କାଛ-ବାଡ଼କୁ ଶୁଣାଇ କହିଲେ, ରାତିରେ ଖାଇବି ନାହିଁ, ନିମନ୍ତ୍ରଣ ଅଛି ।"

ନାନା ଦୁଶ୍ଚିନ୍ତା, ଅନୁଶୋଚନା, ଆକୁଳତା ଓ ବ୍ୟଥା ଭିତରେ ସେ କାଳସନ୍ଧ୍ୟାରେ ଶ୍ରୀମତୀ ଏତିକି ତଥ୍ୟ ଆବିଷ୍କାର କଲେ ଯେ ସ୍ୱାମୀ-ସ୍ତ୍ରୀ ପରସ୍ପରକୁ ସନ୍ଦେହ କରି ସାରା ଜୀବନ ସୁଖରେ କଟାଇ ପାରନ୍ତି; କିନ୍ତୁ ବର୍ତ୍ତମାନ ପରି ସନ୍ଦେହବିମୁକ୍ତ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଯେପରି ଅସ୍ୱାଭାବିକ ସେମିତି ଅସହ୍ୟ ଓ ଯନ୍ତ୍ରଣାଦାୟକ । ପ୍ରତ୍ୟେକ କଥାର ବିଶେଷ କରି ଧର୍ମ ଓ ପ୍ରେମ-କ୍ଷେତ୍ରରେ ଚାକ୍ଷୁଷ ପ୍ରମାଣ ଖୋଜିବାର ଏଇ ଟ୍ରେଜିକ୍ ପରିଣତି ।

ଦଶ ବାଜିଲା । ଡକ୍ଟର ରାୟ ଲୁଗା ବଦଳାଇ ସିଧା ଶୋଇଗଲେ ଖଟରେ ।

ଭଙ୍ଗୀ କଲୋନିରେ ସେତେବେଳକୁ ମଝି ରାତି । ପତଳା ନିଦରେ ପଦୁଆଁ ହୁଏତ ତା'ର ବିଜୟର ସ୍ୱପ୍ନ ଦେଖୁଥିବ-କିମିତି ପକ୍କା ଘର ନାଲି ଚାଦର ବିଛାଇ ଶେଯରେ ସେ ଶୋଇଛି ଜଣେ ରାଜା ସାଙ୍ଗରେ ଯାହାର କୁକୁର ସାଙ୍ଗରେ ମଧ ତା'ର ଭୀମ ସିଂ ସରିତୁଳ ହେବ ନାହିଁ । ସ୍ୱପ୍ନରେ ମଧ ଉଲ୍ଲାସରେ ସେ କିରିକିରି ହସିଥିବ, ମାତ୍ର ବୁଢ଼ୀ କାଳେ ଶୀଘ୍ର ଭଲ ହୋଇଯିବ ଭାବି ଦୁଃଖ କରିଥିବ କାରଣ ତେବେ ସେ ଆଉ ବାବୁଘରକୁ ଯାଇ ପାରିବ ନାହିଁ !

ପ୍ରତି ମୁହୂର୍ତ୍ତରେ ଡବଲ ଟ୍ରେଜେଡ଼ି ଅଭିନୀତ ହେବାର ଭୟ ଓ ଆଶଙ୍କାରେ ଡକ୍ଟର ରାୟ ଅତି ମାତ୍ରାରେ ଅଧୀର ହେଉଥାନ୍ତି । ତାଙ୍କ ପାଖରେ ମଧ ବଡ଼ ମର୍ମନ୍ତୁଦ ଓ ଯନ୍ତ୍ରଣାଦାୟକ ଏ ଅପେକ୍ଷା, ଡକ୍ଟରେଟ୍ ଉପାଧି ପାଇବା କେଡ଼େ ସହଜ ! ଚିନ୍ତା ନାହିଁ ଭାବନା ନାହିଁ, ପରିଶ୍ରମ ନାହିଁ, ପୃଷ୍ଠାକୁ ପୃଷ୍ଠା କାଗଜ ଓଲଟାଇ ଥୋଇଲେ ହେଲା । କେତେବେଳେ ସେ ଭାଗ୍ୟକୁ ନିନ୍ଦୁଥାନ୍ତି ଆଉ କେତେବେଳେ 'ଯାହା ହେବାର ହେଉ' ବା ଡ଼ି ଫଟ୍ ନୀତିର ଆଶ୍ରା ନେଉଥାନ୍ତି । ତେବେ 'ମାରିବି ଏବଂ ମରିବି' ସିଦ୍ଧାନ୍ତ କାର୍ଯ୍ୟରେ ପରିଣତ କରିବା ପୂର୍ବରୁ ସେ ଶ୍ରୀମତୀଙ୍କ ପରବର୍ତ୍ତୀ କର୍ମପନ୍ଥା ଓ ନିର୍ଦ୍ଧାରଣ ଅନୁସରଣ କରିବା ଉଚିତ ମନେକଲେ ।

ଅବହିତ ହୋଇ ଶୁଣୁଥାନ୍ତି ବାକ୍ସ ଖୋଲାଖୋଲି ଗହଣାଗଣ୍ଠି ରୁଣୁଝୁଣୁ ଓ କବାଟଝରକା ବନ୍ଦ ଶବ୍ଦ । ଶ୍ରୀମତୀ କ'ଣ ରାତାରାତି ଘର ଛାଡ଼ି କୁଆଡ଼େ ଚାଲିଯିବେ ? ଯେବେ ବିଷ, ଅଫିମ, ସ୍ଲିପିଙ୍ଗପିଲ୍, ବା ଆଉ କିଛି ଖାଇ ଆତ୍ମହତ୍ୟା କରନ୍ତି ତେବେ ମାଦକ ଦ୍ରବ୍ୟର ଅବିଶିଷ୍ଟାଂଶ ଖାଇ ଦେଇ ସେ ଶ୍ରୀମତୀଙ୍କ ମୁର୍ଦ୍ଦାର ଉପରେ ପଡ଼ିଯାଇ ରୋମାଣ୍ଟିକ୍ ଏଣ୍ଡିଂ କରିପାରିବେ ତ ?

ଆଉ ଛାୟାମୂର୍ତ୍ତି ପରି ଶ୍ରମତୀ ଅବଶେଷରେ ପ୍ରବେଶ କଲେ । ସାତ ବର୍ଷ ପୂର୍ବେ ମଧୁଶଯ୍ୟା ରାତିରେ ବସନଭୂଷଣ ଅଳଙ୍କାର ପିନ୍ଧି ଅବଗୁଣ୍ଠିତା ହୋଇ ସନ୍ତର୍ପଣରେ ଯେଉଁ ଭଙ୍ଗୀରେ ପ୍ରବେଶ କରିଥିଲେ ଠିକ୍ ସେହିପରି ସେ ପଶିଲେ ଧୀରେ ପଦଚାଳନା କରି ।

ଡକ୍ଟର ରାୟଙ୍କ ମୁହଁରୁ ଆପେ ଆପେ ହଠାତ୍ ବାହାରି ପଡ଼ିଲା ''ଏ ବେଶ ?''

''ତୁମରିପାଇଁ, ଅବଗୁଣ୍ଠନବତୀ ପ୍ରତି ତୁମର ପରା ଦୁର୍ବଳତା ଅଛି ।''

''ରହସ୍ୟ ବୁଝିପାରୁ ନି । ହାତରେ କ'ଣ ?''

''ଚୁଡ଼ି ଚାରପଟ । ବରପାଳି ନ ହେଲେ ସେପ୍‌ଟିକ୍ କ'ଣ କରିବ ପରା । ଏ ହାତରେ କ'ଣ ଅଛି ଦେଖ ।''

ଏତକ କହି ଛାତିରେ ହାତଦେଇ ''ଓଃ ମରିଗଲି ।'' ''ଆଃ, ଭାରି କଷ୍ଟ ।'' ''ଛାତି ଫାଟିଗଲା !'' ''ମୋତେ ଧର ।'' କହି ଡକ୍ଟର ରାୟଙ୍କ ଉପରକୁ ପଡ଼ିଯିବା ଭଙ୍ଗୀ କଲେ ।

''କ'ଣ ହେଲା ? କ'ଣ ହେଲା ?'' ଡକ୍ଟର ରାୟ କହିଲାମାତ୍ରେ ଦେଖି ଦେଲେ ଶ୍ରୀମତୀଙ୍କ ବାଁ ହାତରେ ଟିକ୍-ଟୁଏଣ୍ଟି ଶିଶି । କରୁଣ ଚିତ୍କାର କରି କହିଲେ ''ଏ କ'ଣ କଲ ?''

''ପିଇ ଦେଇଛି । ଜୀବନରେ ବଡ଼ ଭୁଲ୍ କରିଛି । ତୁମରି ନିଷ୍ଫଳା ରୋମାଣ୍ଟିସିଜିମ୍‌ରେ ଅନୁପ୍ରାଣିତ ଏବଂ ପ୍ରଲୁବ୍ଧ ହୋଇ ମୁଁ । ବଡ଼ ଭୁଲ ବାଟରେ ଯାଇଛି । ପାପ କରିଛି । ବଡ଼ ଡିଆଁରୋଗ ତୁମର । ସନ୍ଦେହ କରି ବଞ୍ଚି ପାରୁଥିଲି, ସନ୍ଦେହମୋଚନ ପରେ ବଞ୍ଚିବା ସ୍ତ୍ରୀ ପକ୍ଷରେ ସମ୍ଭବ ନୁହେଁ, ଧର ମୋତେ ଧର । ଆଗ କ୍ଷମା ଦିଅ । ଓଃ ।''

ସ୍ୱଭାବତଃ ଭାବପ୍ରବଣ ଡକ୍ଟର ରାୟ ବିହ୍ୱଳ ହୋଇ ପଡ଼ିଲେ । ଅତି ମାରାତ୍ମକ ବିଷର ପ୍ରକ୍ରିୟା ଓ ପରିଣତି ବିଷୟରେ ଅବହିତ ଥାଇ ହଠାତ୍ ଶ୍ରୀମତୀଙ୍କ ବାଆଁ ହାତରୁ ଶିଶିଟା

ଛଡ଼ାଇ ନେଇ ଯାହା ଥିଲା ସବୁତକ ଏକାଥରକେ ପିଇ ଦେଇ ଶୀଘ୍ର ମରିଯିବା ଭୟରେ ଶେଷ ବାଣୀ ଶୁଣାଇ କହିଲେ "ଦେଖ, ତୁମେ ଥିଲ ବୋଲି ସିନା ମୋର ରୋମାଣ୍ଟିସିଜମ୍ ରସିକତା ବଞ୍ଚିଥିଲା, ତୁମେ ଚାଲିଗଲେ ପଦୁଆଁ କାହିଁ, ଅବଗୁଣ୍ଠନବତୀ ମାନେ ବା କାହାନ୍ତି ? ଧର ଏଥର ମୋତେ ଜାବୁଡ଼ି ଧର; ତୁମରି କୋଳରେ ମୁଁ ମରିବାକୁ ଚାହେଁ To die upon a kiss.

ଦୁହେଁ କୁଣ୍ଢାକୁଣ୍ଢି ହୋଇ ଦଣ୍ଡେ ରହି ମୃତ୍ୟୁକୁ ଅପେକ୍ଷା କଲେ । ମୃତ୍ୟୁ ଆସିଲା ନାହିଁ । ବରଂ ଅଙ୍ଗାଙ୍ଗୀ ସମ୍ପର୍କରେ ଦୁହେଁ କ୍ରମେ ପୁଲକ ଅନୁଭବ କଲେ । ପରସ୍ପର କ୍ରୋଡ଼ରେ ସ୍ୱାମୀ–ସ୍ତ୍ରୀ ଆଶ୍ରା କରି ରହିଥା'ନ୍ତି, ସବୁଜ ରଙ୍ଗର ନେଟ୍ ମଶାରୀ ଦୁହିଁଙ୍କୁ ଅବଗୁଣ୍ଠନ ଯୋଗାଇଲା ମିଳନାନ୍ତକ ।

ବହୁତ ରାତିପରେ ସେମାନେ ଶୋଇଲେ । ଶ୍ରୀମତୀ ହସି ହସି ପଚାରିଲେ, "ସିଂହଳ ଦ୍ୱୀପରେ ବୋଇତ ଲଗାଇ ଲାବଣ୍ୟବତୀକୁ ଖୋଜୁଥିଲ, କେତେଦୂର୍ ସଫଳ ହେଲା ସେ ଚେଷ୍ଟାରେ ? ବୋଇତ ଲାଗିଲା ?"

ଡକ୍ଟର ରାୟ କରୁଣ ହସଟିଏ ଦେଇ ଉତ୍ତର ଦେଲେ, "ବୋଇତ ପାଇ ସବୁ କାଟି ନିଆଁ ଧରାଇ ଦେଇଛି ପଦୁଆଁ । ସିଂହଳର ଲଳିତ ଲବଙ୍ଗଲତା ଓ ତମାଳତାଳୀ ବନରାଜିରେ 'ଲବଣ ଢ଼େଉ' ଲାଗି ପୋଡ଼ି ଯାଇଛି । ଆମର ନିଜ ଦେଶ ବି ଉଏଷ୍ଟ ଲେଣ୍ଡରେ ପରିଣତ ହୋଇଛି ଖାଲି ବାଲି, ସିଜୁ ଓ କଣ୍ଟା । ଏଥର ତାକୁଇ ଉର୍ବର ଫଳପ୍ରସୂ କରିବାର ଚେଷ୍ଟା କରିବା ଆସ । ବୁଝି ପାରୁନ ଆମର । ଊନବିଂଶ ଶତାବ୍ଦୀ ବା ତା ପୂର୍ବର ରୋମାଣ୍ଟିକ୍ ଆତ୍ମା ମରିଗଲାଣି ।"

"ବରପାଲି ନ ହେଲେ ସେପ୍‌ଟିକ୍ ?"

"ଆମେ କ'ଣ ନର୍ଦ୍ଦମାରେ ଘାଣ୍ଟି ହେବା ? ମ୍ୟୁନିସିପାଲିଟି ଅଛି ସେ କାମପାଇଁ ।"

"ଅବଗୁଣ୍ଠନ"

"ସେଇ ଅବଗୁଣ୍ଠନ ଲାଗି ତ ଏତେ କଥା । ରୋମାଣ୍ଟିକ୍ କବିତାର ଭାଷା ଯେପରି ଅନେକ ଅପରିପକ୍ୱ ଓ ଦରିଦ୍ର ଭାବନାକୁ ଘୋଡ଼ାଇ ରଖେ ଏଇ ଅବଗୁଣ୍ଠନ ବା ଗଗ୍‌ଲସ୍ ବା ବୀଟନିକ୍ ଚୂଳ ଅନେକ ବ୍ୟାଧି ଓ କୁତ୍ସିତତା ଢାଙ୍କି ଦିଏ । ପଟ୍ଟନାୟକ ବାବୁଙ୍କ ବିଟଲ ଚୂଳ ଓ ସଭାର ସେଇ ସ୍ତ୍ରୀଙ୍କ ଅବଗୁଣ୍ଠନରୁ କ'ଣ ଶିଖିଲ ନାହିଁ ? ସେମାନଙ୍କ ମୋହିନୀ ଶକ୍ତିରେ ମୁଗ୍ଧ ଅନ୍ଧ ହୋଇ ବିଶ୍ଳେଷଣର ଅବକାଶ ମଧ୍ୟ ଆମେ ପାଇ ନାହିଁ ପରା ।"

"ପୃଷ୍ଠା ଲେଉଟାଇବା ?"

"ଏକାବେଳେ କ୍ରସ୍‌ୱାର୍ଡ଼ ପାଝଲ ପୃଷ୍ଠାକୁ ।"

"କିଏ ଜିତିଲା ତୁମେ ନା ମୁଁ"

"ସେ ତ ଆଉ ଗୋଟାଏ ଗପ ।"



# ପାନ

''ତାମ୍ବୁଳସ୍ୟ ସଖେ ତ୍ରୟୋଦଶଗୁଣାଃ''

ଆପଣଙ୍କୁ କ'ଣ ଶ୍ଳୋକଟି ପୂରାପୁରି ମାଲୁମ ନାହିଁ ? ଯେବେ ନ ଜାଣନ୍ତି ଅଥଚ ଜାଣିବାପାଇଁ ଆଗ୍ରହ ହେଉଥାଏ ତେବେ ଆଜି ବାଟ-ଘାଟରେ ପ୍ରଥମକରି ଯେଉଁ ସଂସ୍କୃତ ଅଧ୍ୟାପକ, ପଣ୍ଡିତ ବା ଶିକ୍ଷକଙ୍କୁ ଭେଟିବେ ତାଙ୍କୁ ପଚାରି ଦେବେଟି । ଦେଖିବେ ସେ ମହାଭାଗ କେତେ ଆପ୍ୟାୟିତ ଅନୁଗୃହୀତ ହୋଇ ଆପଣଙ୍କ ଅନୁରୋଧ ରକ୍ଷା କରିବେ । ତଦ୍ଦଣ୍ଡେ ସେ 'କଟିବିନ୍ୟସ୍ତ ପାଣି ହୋଇ 'ମଘମ ସନିଭ' (କାରଣ ସେ ଯେ ପାନର ଆଜୀବନ ଭକ୍ତ ଓ ସେବକ) ଦନ୍ତପଂକ୍ତି ଦେଖାଇ ପାନବୋଳ ପ୍ରବହମାନ କଣ୍ଠରେ ସମ୍ପୂର୍ଣ୍ଣ ଶ୍ଳୋକଟି ସୁର ଧରି ଗାଇଯିବେ ଏବଂ ପରେ ପରେ ବୁଝାଇବାକୁ ଲାଗିଯିବେ ମଧ୍ୟ । ଯେବେ ଆପଣଙ୍କର ଅନ୍ୟ କାମ କିଛି ନଥାଏ ଏବଂ ଅସୀମ ଧୈର୍ଯ୍ୟରାଶିର ଅଧିକାରୀ ହୋଇଥାନ୍ତି (ଏଇଚ୍ ଆର୍ ଜେକ୍‌ସନ ସାହେବଙ୍କ କ'ଣ ଧୈର୍ଯ୍ୟ ଥିଲା ଓକିଲ ରାମରାମ ଲାଲାଙ୍କ ଯୁକ୍ତି ଶୁଣିବାପାଇଁ ?) ତେବେ ଶ୍ଳୋକଟିର ତର୍ଜମା ଶୁଣିବା ପରେ ସ୍ତମ୍ଭୀଭୂତ ହୋଇ ଚକ୍ଷୁ ବିସ୍ଫାରିତ କରି ଠାଏଁ ମାନିଯିବେ ଯେ ସର୍ବଦେଶୀୟ ସର୍ବକାଳୀୟ ଆବିଷ୍କାର ମଧ୍ୟରେ ଭାରତୀୟଙ୍କ ପାନ ଶୀର୍ଷ ସ୍ଥାନରେ । ଆପଣ କ'ଣ ଜାଣିପାରିଲେ ମୁଁ କେଉଁ ବୃଦ୍ଧ ଗବେଷକ ଅଧ୍ୟାପକଙ୍କୁ ଆଖି ଆଗରେ ରଖି ଏହା ଲେଖୁଛି ? ଦୈବାତ୍ କେବେ ଆପଣ ବେଦ ସ୍ପେଶାଲିଷ୍ଟ ବା ବେଦବ ଗୀଶଙ୍କ ହାବୁଡ଼ରେ ପଡ଼ିଯାଆନ୍ତି ତେବେ ସେ ଆପଣଙ୍କ ପରି ଧୈର୍ଯ୍ୟଶୀଳ ଶ୍ରୋତାଙ୍କୁ ପାଇ ଏତେ ମୁଖର ହୋଇ ଉଠିବେ ଯେ ବେଦରେ ପାନର ସ୍ଥାନ ବିଷୟରେ ସାଂସ୍କୃତିକ ଭାଷଣଟିଏ ଦେଇଦେବେ । ବେଦରେ କ'ଣ ନାହିଁ ? ବେଦର କେଉଁ ଅଙ୍ଗ ବା ତାଙ୍କୁ ଜଣା ?

ପ୍ରଖ୍ୟାତ ଭାର୍ଜିନିୟା ତମାଖୁର ଆବିଷ୍କର୍ତ୍ତା ସାର୍ ୱାଟେରେଲେ ବା ହେୱାର୍ଡ଼ଙ୍କ ଭଳି କେତେ ପ୍ରଖ୍ୟାତ ଆବିଷ୍କର୍ତ୍ତା ବା ପ୍ରସ୍ତୁତିକାରକ କେବେ କ'ଣ ପାଇବି । ଉଦ୍ଭାବକଙ୍କ ସମକକ୍ଷ ହୋଇ ପାରିବେ ? ପାଶ୍ଚାତ୍ୟ ସେଇଗୁଡ଼ାକ ବଡ ପରିସଂଖ୍ୟାନପ୍ରିୟ । ଖବରକାଗଜ ମଝିରେ ମଝିରେ ବିଜ୍ଞାପନଟିଏ ବାହାରେ ଯହିଁରୁ ଆପଣଙ୍କୁ ଜଣାପଡ଼େ କେତେ ଦିନରେ ଜଣେ ରେଙ୍ଗୁନ, ଚନ୍ଦ୍ରଲୋକ ଏପରି କି ସୂର୍ଯ୍ୟଲୋକ ପର୍ଯ୍ୟନ୍ତ ଦୂରତାକୁ କଲିକତାଠାରୁ ଅତିକ୍ରମ କରିଯିବ । କେତେ ସିଗାରେଟ୍, ଧ୍ୱଂସ ହେଉଛି ସେଗୁଡ଼ିକୁ ଦେଲେ ଦିନକର ରେଙ୍ଗୁନ, ପନ୍ଦର ଦିନରେ ଯାଇହେବ ବୋଲି ହିସାବ କରାଯାଇଛି । ଆମର ସରକାରଙ୍କ ପରିସଂଖ୍ୟାନବିଭାଗ-

ସିମିତି ଯେବେ ହିସାବ କିତାବ ରଖିବାକୁ ଯତ୍ନବାନ ହୁଅନ୍ତି ତେବେ ଅକ୍ଳେଶରେ ଆମେ ଜାଣିପାରନ୍ତୁ ଭାରତରେ ପ୍ରତିଘଣ୍ଟାରେ (ବିଶେଷଭୋଜନର ପରବର୍ତ୍ତୀ ଘଣ୍ଟାରେ ବା ପ୍ରତ୍ୟୁଷରେ ଚା' ପରେ) କେତେ ଏକର ମରୁଭୂମି ହରିତ ଶ୍ୟାମାୟମାନ ପତ୍ରଦ୍ୱାରା କରାଯାଇ ପାରିଥାନ୍ତା ବା ପାନସିଠାରେ କେତେ କେତେ ଗଭୀର ଗର୍ତ୍ତ ପୂରାଇ ହୁଅନ୍ତା ବା ପାନକେତେ ଟନର କେତୁଚା ଟାଙ୍କି ଭରତି ହୋଇଯାଅନ୍ତା ।

ଏ ପ୍ରକାର ହିସାବ-କିତାବ ରଖିବା ତ ଦୂରର କଥା ଆମ ଜାତୀୟକୃତ ଗଣିତ ପାଠ୍ୟପୁସ୍ତକଗୁଡ଼ିକରେ ଏ ସମ୍ବନ୍ଧୀୟ ଗୋଟାଏ ଅଧେ ଉଦାହରଣ ବି ଦିଆଯାଇ ନାହିଁ । ବିଶ୍ୱାସ 'ଦୁର୍ନୀତି', ଭ୍ରଷ୍ଟାଚାର' 'ଖାଦ୍ୟସମସ୍ୟା' ବା 'ଭାଷା' କୁ କେନ୍ଦ୍ର କରି ଯିମିତି ନିର୍ବାଚନ ବା ମେଣ୍ଟ ହେଉଛି ପାନର ବିକାଶ ଓ ଉନ୍ନତିକୁ ଦେଇ ଯେବେ କେହି ନିର୍ବାଚନ ଲଢ଼ନ୍ତା ତେବେ ସହଜ ସେ ବିଜୟ ହାସଲ କରିପାରନ୍ତା । ଏ ଦିଗରେ ଯେ ଚେଷ୍ଟା ନ ହୋଇଛି ତାହା ନୁହେଁ, କହିବା କ୍ଷୀଣ, ପରିକଳ୍ପନାବିହୀନ ଓ ଅଧାପନ୍ତରିଆ । ଆପଣ ପଢ଼ିଥିବେ କିପରି ଜଣୈକା ଭୋଟରଙ୍କ ମଧ୍ୟରେ 'ପାନ ସୁପାରି' ସଦିଚ୍ଛାର ରୂପେ ବାଣ୍ଟିଥିଲେ । ସେ ଯେବେ ନିର୍ବାଚନରେ ଅଶାନ୍ତ ତା'ର କାରଣ ସେଇ 'ପାନସୁପାରି' ଜିନିଷର ନୁହେଁ ଭାଷାର ଭ୍ରଷ୍ଟାଚାର । 'ପାନସୁପାରି' ଆମ ଶବ୍ଦ ନୁହେଁ, ବଙ୍ଗୀୟ, ବିହାରୀ ବା ଉତ୍ତରପ୍ରଦେଶୀୟ ଦେଶର ଭାଷା 'ପାନସୁପାରି' । ତେଣୁ ଭାଷାପ୍ରେମୀ ଭୋଟରମାନେ ପ୍ରାର୍ଥିନୀଙ୍କୁ ଯଥାର୍ଥ ଜବାବ୍ ଦେଇଛନ୍ତି ତାଙ୍କୁ ପରାଜୟ ପରାଭାବ ଦେଇ । ''ଆକାମାବଇ ପାନଗୁଆ ଥୋଇ ।'' ଏଇ ପାନଗୁଆ ହେଲା ଆମ ଦେଶର ସଂସ୍କୃତି ତଥା ଖାଦ୍ୟର ଯୁଗପତ୍ ସମନ୍ୱୟ, ପ୍ରତୀକ । ବ୍ରତ କର୍ମ କର୍ମାଙ୍ଗରେ 'ଗୁଆ' ଦେବା ବିଧି ପ୍ରଚଳିତ ।

ଦେଖନ୍ତୁ ଏଇ ପାନଗୁଆ (ପାନସୁପାରି ନୁହେଁ) ଦ୍ୱାରା ଦେବତାମାନେ କେତେ ସହଜରେ ସୁଲଭରେ କିଣି ଯାଆନ୍ତି । ''ପାନଗୁଆ ତୋର, ମାସକ ଧରମ ମୋର ।'' କେତେ ଶସ୍ତାରେ ମହାର୍ଘ ଧର୍ମ ମିଳି ଯାଉଛି ! ସେତିକି ନୁହେଁ ଚାରିମାସର ଆକାମାବଇ । କୌଣସି 'ପାନଖିଆ' ବଦଳରେ ଏତେ ଅମୂଲ୍ୟ ପଦାର୍ଥ ବା ମନ୍ତ୍ରୀଙ୍କ (ନୂଆ ମନ୍ତ୍ରୀମାନଙ୍କ ଉପରେ ପ୍ରଯୁଜ୍ୟ ପାଖରୁ କରାଇ ଦେଇ ପାରିବେ ? ଏଇଥିପାଇଁ 'ପାନଖିଆ' କଥାର ଚାଲୁ ଅଛି ଏ ଦେଶରେ ? ଅଳ୍ପ ସମୟରେ ବହୁତ ହାସଲ କରିବା । କେଡ଼େ ନିରୀହ, କୋମଳ, ଶାନ୍ତଶିଷ୍ଟ, ଧର୍ମାତ୍ମା ଶବ୍ଦଟି । ଏବକାର ପରି ରୂଢ଼, କର୍କଶ ଗଦ୍ୟମୟ ନୁହେଁ । ବଦଳରେ ଦେବଦେବୀଙ୍କୁ କରାୟତ୍ତ କରି ଅଥଚ ସାମାନ୍ୟ ପୁରୁଷ ଓ ମହିଳାଙ୍କୁ ଭୋଟ ମିଳିଲା କାହିଁକି ? ଏଇ 'ଗୁଆ' ଓ ସୁପାରି ବ୍ୟବଧାନ ଭୋଟର ମଧ୍ୟରେ ବିଭେଦ ଆଣି ଦେଲା । ଭୋଟରମାନେ ଭାବିଲେ ଯେ ପାନଖିଆ ନେଲେ ସୁଧମୂଳ କରିବାକୁ ପଡ଼ିବ । ସେ ଯାହା ହେଉ ଓଡ଼ିଆ ସଭ୍ୟତାର ମଞ୍ଜୁଷା ବଟିଆ ଯେ କାମ ଦେଲା ନାହିଁ ସେଥିପାଇଁ ବିସ୍ମୟରେ ସମାଧି ଶଯ୍ୟାରେ କଡ଼ ଲେଉଟାଉ ତେବେ ମୁଁ କହେଁ, ଆମର ବଟୁଆତ୍ୱ ଯାଇ ନାହିଁ । ଆଗାମୀ ନିର୍ବାଚନ ପାଇଁ ମୁଁ ଭାବୀ ପାନବିଭାଗ

ମନ୍ତ୍ରୀଙ୍କୁ ଦୁହାଟାଏ ଦେଉଛି ଯାହାକୁ ସେ ହଜାର ହଜାର ଛପାଇ ପ୍ରାଚୀର-ପତ୍ର ଆକାରରେ ମାରିପାରନ୍ତି । "ପାଞ୍ଚ ପଇସାରେ ଖିଲିଏ ନୁହେଁ ପଇସାରେ ପାଞ୍ଚ ଖିଲ ।" ଜନୈକା ଓଡ଼ିଆଣୀ ପାନ ଭାଙ୍ଗୁଥିବା ଛବି ପାଖରେ ଥିବ, ନିର୍ବାଚନୀ ଇସ୍ତାହାରେ ସେ ପାନକୁ ଗୋଟିଏ ଖାଦ୍ୟ (ପତ୍ର ଯିମିତି ଛେନିର) ବୋଲି ଘୋଷଣା କରି ଟାଇଚୁଙ୍ଗ ଧାନ ପରି ବ୍ରହ୍ମପୁରୀ ବିରିକୁଳୀ ସଂମିଶ୍ରଣରେ ଏକ ନୂଆ ଜାତିର ଉତ୍ପାଦନ ବୃଦ୍ଧିକ୍ଷମ ପାନର ପ୍ରସାର ଲକ୍ଷ୍ୟ ବୋଲି ଘୋଷଣା କରାନ୍ତି । ଦେଖନ୍ତୁ ପ୍ରତିଦ୍ୱନ୍ଦ୍ୱୀ ଖାଦ୍ୟମନ୍ତ୍ରୀଙ୍କ ଅମାନତ ଉଠି ଯାଉଛି କି ନାହିଁ । ଆମ ଦେଶରେ ପାନୁଆ ମନ୍ତ୍ରୀର ତ ନଜିର ଓ ପରମ୍ପରା ତ ଅଛି ।

ହଁ, ପାନର ତ୍ରୟୋଦଶ ଗୁଣ କଥା କହୁଁ କହୁଁ ଅଟକି ଗଲି । ସେଗୁଡ଼ିକରୁ ଅସଲ ଗୁଣଟି କହି ଦେଉଛି । ତାହା ହେଲା 'କାମାଗ୍ନି ସନ୍ଦୀପନଂ ।" ପାନ ଯେ କାମାଗ୍ନି ଉଦ୍ଦୀପନ କରେ ସେ ବିଷୟରେ କ'ଣ ଆପଣଙ୍କ ସନ୍ଦେହ ଅଛି ? ଭାବି ଦେଖନ୍ତୁ ତ ପାନ-ଦୋକାନଗୁଡ଼ାକ କେଉଁଠି । ଯେଉଁଠି ପୁରୁଷ, ସ୍ତ୍ରୀଙ୍କ ସଙ୍ଗମସ୍ଥଳ ସେଇଠି ପାନ କିଣା-ବିକା ଦିଆନିଆ । ହାଟବଜାର, ମେଳା-ମଉଛବ, ମସଜିଦ-ମନ୍ଦିରଠାରୁ ଆରମ୍ଭ କରି ସିନେମାଛକ ଓ କଲେଜ ବିଶ୍ୱବିଦ୍ୟାଳୟ କେମ୍ପାସ ପର୍ଯ୍ୟନ୍ତ ସବୁଠି ପାନ ଦୋକାନ । କଟକ କଲିକତାରୁ ଦିଲ୍ଲୀପ୍ରଭୃତି ସହରର ଛକଘାଟି ଜାଗାରେ ମନ୍ଦିର, ମଦଦୋକାନ ପାଖକୁ ପାନଦୋକାନଟିଏ । (ପାନ ଦୋକାନରେ କ'ଣ ନ ମିଳେ ? କ'ଣ କାରବାର ନ ଚାଲେ ? ଆକବରୀଠାରୁ ଲଟରି ଟିକଟଯାକେ । ସର୍ବୋପରି ଚୋରା କାରବାର ଚିଜର ନ ହୁଏ ?) ସେଇ ପାନଦୋକାନରେ (ବାରିକଙ୍କ ସେଲୁନ୍‌ରେ ମଧ) ବିଶ୍ୱପ୍ରଖ୍ୟାତ ସିନେମାର ମୋହନ ସୁନ୍ଦର ଓ ସୁନ୍ଦରୀଙ୍କ ଚୁନ୍ଦେଇ ଛବି ସଜା ହୋଇ ଗରାଖଙ୍କ ଚିତ୍ତ ଆକର୍ଷଣ କରେ ।

ଖାତା ଦିଆନିଆଠାରୁ ଆରମ୍ଭ କରି ଟଫିବଣ୍ଟା ଓ କପି ଯୋଗାରୁ କାମାଗ୍ନି ସନ୍ଦୀପନ ପର୍ଯ୍ୟନ୍ତ ସମସ୍ତ ଯୁବସୁଲଭ କ୍ରିୟା ପ୍ରକ୍ରିୟା ଏଇ ପାନ-ଦୋକାନ ମାଧମରେ । ସ୍କୁଲ କଲେଜ ବିଶ୍ୱବିଦ୍ୟାଳୟ ମାନଙ୍କରେ ଉଠୁଥିବା କମନରୁମ୍ ଦାବୀ ପୂରଣ କରିବା ପରିବର୍ତ୍ତରେ ଯେବେ ଶିକ୍ଷାମନ୍ତ୍ରୀ ସମ୍ମୁଖସ୍ଥ ପାନଦୋକାନଗୁଡ଼ିକୁ କାଣ୍ଟିନ-କାମ୍ -କମନରୁମ ଗଢ଼ିବାରେ ସାହାଯ୍ୟ ଦିଅନ୍ତେ ତେବେ ଅକ୍ଳେଶରେ ସେ ଜାତିସ୍ମର ହୋଇ ଯାଆନ୍ତେ । କଲେଜଛକ ବା ବିଶ୍ୱ-ବିଦ୍ୟାଳୟ ହତାର ପାନଦୋକାନରୁ କେବେ ଖଣ୍ଡିଏ ଆପଣ ଖାଇଛନ୍ତି ? ଥରେ ନାରୀ ପାନଦୋକାନଟିଏ ସସ୍ମିତରେମୁଠାଏ ଲାଲି ସବୁଜ କ'ଣ ମୂରାଇ ଦେଇ ଅତରକାଠି ବୁଲାଇ ନେଇ ପାନଟା ମୋତେ ବଢ଼ାଇ ଦେଲା । ଯେମିତି ଚୋବାଇଛି ମୋର ଦେହ ରୋମାଞ୍ଚ ହେଲା । ବାସ୍ତବିକ ମୋର ଭୟ ହେଲା ଜରତା କାମମୋହିନୀ କର୍ପୂର ଦେଇ ଦେଇଛି କି ? ସେଇ ପାନରୁ ଖଣ୍ଡିଏ ଖଣ୍ଡିଏ କଳରେ ପୂରାଇ ହଳ ହଳ ବା ଯୋଡ଼ ଯୋଡ଼ ଟୋକା ଟୋକୀ ଦୋକାନରୁ ସିଧା ବିସ୍ତୀର୍ଣ୍ଣ କଲେଜପଡ଼ିଆ ବା ଅରଣ୍ୟପ୍ରାନ୍ତରର ଦିଗ୍‌ବଳୟରେ ମିଶି ଯିବାର ଦୃଶ୍ୟ ଆପଣ କ'ଣ ଦେଖି ନାହାନ୍ତି । ଏ ତ ପାଞ୍ଚପଇସିଆ ପାନ । କେଉଁଠି (କାନ୍ପୁର,

କନୌଜ, ଲକ୍ଷ୍ନୌ ଓ ଦିଲ୍ଲୀ ଆଡ଼େ) କସ୍ତୁରୀ, ସୁବର୍ଣ୍ଣଭସ୍ମ ବା ହୀରାଭସ୍ମ ଦେଇ ସୁନେଲି ଅବଗୁଣ୍ଠନ ତଳେ ପାନଟି ଶହେ ଟଙ୍କା ଦାମ୍‌ରେ ବିକ୍ରି ହୁଏ ବୋଲି ଶୁଣାଯାଏ; ସିମିତି ରଜା ରାଜୁଡ଼ା (ନପୁଂସକ ?) ଖାଉଥିବା ପାନ କଥା ଭାବନ୍ତୁ ତ । କାୟ-କଳ୍ପ ଚିକିତ୍ସାରେ ପାନ ଯେ ନିଶ୍ଚୟ ଏକ ଅପରିହାର୍ଯ୍ୟ ଅନୁପାନ ମୋର ଏଥିରେ ସନ୍ଦେହ ନାହିଁ । (ବାବା ବିଶ୍ୱନାଥଙ୍କୁ ମଦନାନନ୍ଦ ମୋଦକ ପରିବର୍ତ୍ତେ ଏଇ କିସମର ପାନ ମୁଖରୋଚକ ଆକାରରେ ସମର୍ପଣ କରାଯାଏ କି ?)

ଏ ଯୁଗରେ କେବଳ ବାଟୋଇଙ୍କପାଇଁ ପାନବିଡ଼ି ଦୋକାନ କରି ବ୍ୟବସାୟୀ ତିଷ୍ଠିବା ମୁସ୍କିଲ । କାରଣ ବାଟୋଇମାନେ ସ୍ୱଭାବତଃ ବଟୁଆ-ଧର୍ମୀ, ସ୍ୱାବଲମ୍ବୀ, ପ୍ରାଚୀନକାଳୀନ ମରହଟ୍ଟୀ । ଖାଣ୍ଟି ଓଡ଼ିଆ ବହିର ଦୋକାନୀଟିଏ ଶସ୍ତା ହିନ୍ଦୀ ପତ୍ର-ପତ୍ରିକା ବା ସାରିବାଦି ମୋଦକ ନ ରଖିଲେ କ'ଣ ଉଧେଇ ପାରିବ ? ଘଇତା ପଛେ ମରୁ ସଉତୁଣୀ ରାଣ୍ଡ ହେଉ, ନୀତିରେ ଇଂରାଜୀ ଅନଭିଜ୍ଞ ରାଜନୈତିକ ଜନତା ଯିମିତି ହିନ୍ଦୀ ସ୍ୱାଗତିକା ଗାଉଛନ୍ତି ପୁଣି ଫକୀରମୋହନଟିଏ ଅଚିରେ ଲୋଡ଼ା ହେବ ଭାଷାକୁ ହିନ୍ଦୀ ଦାଉରୁ ବଞ୍ଚେଇବାପାଇଁ ।

ଶ୍ଳୋକଟି ଶେଷ ହେଲା କିମିତି ? 'ସ୍ୱର୍ଗେଷ୍ୱପି ଦୁର୍ଲଭାଃ' ତ୍ରୟୋଦଶ-ଗୁଣବିଶିଷ୍ଟ ଆମର ଏ ପାନ ସ୍ୱର୍ଗରେ ମଧ୍ୟ ଦୁର୍ଲ୍ଲଭ । ସେଇଥିପାଇଁ ତ ଶ୍ରାଦ୍ଧସାମ୍ବହରିକମାନଙ୍କରେ । ପୂଜା-ପଣାରେ ତାମ୍ବୁଳର ବ୍ୟବସ୍ଥା । ରଜାରାଜୁଡ଼ାଙ୍କ ଶ୍ରାଦ୍ଧରେ ଖଟପଲଙ୍କତଳେ ପିକଦାନିଟିଏ ବି ଦାନପାଇଁ ରଖାଯାଇଥାଏ । କେଉଁ ପିତୃପିତାମହବତ୍ସଳ ଦାୟାଦ ପୂର୍ବପୁରୁଷ ପାଟି ଆମ୍ବିଳିଆ ଖଟାଳିଆ ହେବାକୁ ଦେବ ? କେଉଁ ଅବା ପାନ ବିହୁନରେ ଦେବଦେବୀଙ୍କ ପାଟିରୁ ଦୁର୍ଗନ୍ଧ ବାହାରୁ - ଏ କଥା ଚାହିଁବ ? ତେବେ ସ୍ୱର୍ଗର ଓ ମର୍ତ୍ତ୍ୟର ପାନଭିତରେ ସ୍ୱର୍ଗ-ମର୍ତ୍ତ୍ୟର ପ୍ରଭେଦ । ହେଲା ପୁଣ୍ୟ, ଧର୍ମ ଓ ସତ୍ୱ ଗୁଣର ସ୍ଥାନ । ଦେବଦେବତାଙ୍କ ସମସ୍ତେ ମୁଖ୍ୟତଃସତ୍ୱଗୁଣବିଶିଷ୍ଟ । ଏ ସବୁ ଗୁଣକୁ ଧଳା । ଯିମିତି କି ପାପ ବା ତମୋଗୁଣର ରଙ୍ଗ ଦେବତାମାନେ ରଙ୍ଗକୁ ଘୃଣା କରନ୍ତି କେବଳ ଧଳା ତାଙ୍କର କାମ୍ୟ । (ସରସ୍ୱତୀଙ୍କ 'ଯାକୁନ୍ଦେନ୍ଦୁ' କେତୋଟି ଧଳା ରଙ୍ଗର ଚିଜ ଅଛି ଗଣିଯାଆନ୍ତୁ) । ଦେବତାମାନେ ତେଣୁ କରି ବିଡ଼ିଆ ପାନ ପସନ୍ଦ କରନ୍ତି । ନିଷ୍ପାପ, ତେଣୁ ତାଙ୍କ ପାନଛେପ ମଧ୍ୟ ଶ୍ୱେତରଙ୍ଗ । ପାନରୁ ସେମାନେ ଚୂନପରି ପିକ ବାହାର କରନ୍ତି । ରଞ୍ଜିତ ହେଲେ ସେମାନେ ନିଜକୁ ବ୍ୟଭିଚାରୀ ବୋଲି ଲଜ୍ଜିତ ହେବେ ବୋଲି ବିଡ଼ିଆର ବ୍ୟବସ୍ଥା । ଆମର ଭିନ୍ନ ବିଚାର । ମର୍ତ୍ତ୍ୟବାସୀ ପାପୀ, ତମୋଗୁଣୀ । ଚାହାନ୍ତି ରଙ୍ଗ । ସେମାନେ ଓଠଗୁଡ଼ାକ ଗାଢ଼ ନାଲିଗୁଡ଼ାକୁ ଘୋର କଳା କରିବାକୁ ଚାହାନ୍ତି । ଖଦିର-ସାରେଣ...ନ ରାଗଃ ଜାୟତେ... ପ୍ରୟୋଧରେ ।'' ଏ ଶ୍ଳୋକଟି କିଏ ନ ଜାଣେ ପଦ୍ମିନୀଜାତୀୟା ସ୍ତ୍ରୀ (ସେମାନେ ତ ମର୍ତ୍ତ୍ୟର ନୁହନ୍ତି କଥା ଛାଡ଼ନ୍ତୁ, ଶଙ୍ଖିନୀ, ଚିତ୍ରିଣୀ ଏପରି କି ଜାତୀୟା ସ୍ତ୍ରୀ ଯେବେ ପାନଟିଏ କଲରେ ଜାକିଥାଏ କିମିତି ଦିଶେ ? (ରସିକରାଜ ଫକୀରମୋହନଙ୍କ ବର୍ଣ୍ଣନାରୁ 'ଗୁଣ୍ଡିମିଶା ଖିଲ୍ଲୀ ଗୁଞ୍ଜିତ ଗାଲେ' ଉଠଇ ଚମ୍ପାର ଦୁମ୍ ଦୁମ୍

ଚାଳିଶକ୍ତି ଆସନ୍ତା କେଉଁଠୁ ବାଜା ମୁର୍ଦାରରୁ କଦଳୀଭଣ୍ଡା ପରି ଜିଭ ବାହାରିଥିବାର ପଥ ପ୍ରତିପାଦନ କରିହୁଅନ୍ତା କିପରି ?) ବେଲାଏ ହାଣ୍ଡିଆ ଆରକ୍ତ ଚକ୍ଷୁରୁ ଜ୍ୟୋତି ବିକୀରଣ କରି ଆଦିବାସୀ ରମଣୀ ଯେବେ ଓଠରେ ସ୍ମିତ ଫୁଟାଇବ ଦେଖିବା ପାଇଁ ଅର୍ଦ୍ଧେକ ଦୁନିଆର ଶ୍ୱେତାଙ୍ଗିନୀ ଓଡିଶାର ବଙ୍ଗଳା ଅତିଥି ସଦନରେ ଆଉ ଭିଡ଼ ଦେବେ ? ସେଦିନ ଭୁବନେଶ୍ୱର ଷ୍ଟେସନରେ ବିଦେଶୀଟିଏ ଭାରତୀୟ ରୀତିରେ ଶାଢ଼ୀ ପିନ୍ଧି, ଦୋକନୀ ଠାରୁ ପାନଟିଏ କିଣି ଚୋବାଇଦେଇ ସାଙ୍ଗକୁ ପଚାରିଲା ଲାଲ ହେଲା କି ନାହିଁ ? ଷ୍ଟେସନପାନରୁ ମଜା ବା କେଉଁଠୁ ବାହରିବ ?

ପାନ ଖାଇବାବେଳର ମଜା ତ ଅଛି, ପାନର ଅପେକ୍ଷାରେ ରହିବାବେଳଟି ମଧ୍ୟ, ଆହୁରି ହୃଦ୍ୟ, ଉପଭୋଗ୍ୟ ତେବେ ଏଥର ପାନ ଖଣ୍ଡିଏ ଆସୁଛି' – ଏ ପଦକ କହି ଅତି ବିନୟ ହୋଇ ବସି ଇଉକ୍ଲିଡ଼ ସମାଧାନ କରିପାରନ୍ତି, ସମ୍ବନ୍ଧ, ମକିମୋକଦ୍ଦମା, ରାଜନୈତିକ ଚାଲବାଜି ଜୀବନର କଠିନ ସମସ୍ୟାର ନିଷ୍ପତ୍ତିମାନ ଗୁଆ ଟୁକ୍ ଟୁକ୍ ଶବ୍ଦ ଶୁଣୁ ଶୁଣୁ ଆୟତ୍ତକୁ ଆଣି ପାରନ୍ତି । ବାମ ବା ଡ଼ାହାଣୀ ଆଲୁଅ ପରି ଯାହା ଘୁଞ୍ଚୁ ଘୁଞ୍ଚୁ ଯାଇଥିଲା ବାସ୍ତବ ହୋଇ ଆପଣଙ୍କୁ ଧରାଦେବ ଏତିକିବେଳେ ।

ପାନ ଭାଙ୍ଗିବା ଏକ କଳା, ଲଳିତ କଳା । କୋଣାର୍କର ପାଷାଣ୍ଡ୍ୟ କଳା, କଟକର ତାରକସି ବା ଭଞ୍ଜ ସାହିତ୍ୟର ସେମିତି ଜାତିର ଗୌରବ, ପାନ ଭାଙ୍ଗିବା ଓଡ଼ିଆଣୀ ସେମିତି ଏକ ବିଶିଷ୍ଟ କାରୁକଳା ସୃଷ୍ଟି । ପିଲାଦିନର ଅତୀତଟି ମନେ ଥିବ ।

''ଆମ୍ବ ଗଛ ଆବୁ ଆବୁ,<br>
ବଡ଼ ହେଲେ ସଖୀରେ ମୋହରି ହେବୁ,<br>
ପାନ ଖିଲ ଭାଙ୍ଗୁଥିବୁ ।''

ପାନଖିଲ ଭାଙ୍ଗୁଥିବୁ'' – ଏହି ପାନ ଭଙ୍ଗାର ପତ୍ନୀତ୍ୱର ସର୍ବପ୍ରଥମ ଓ ସର୍ବଶେଷ କର୍ତ୍ତବ୍ୟ ଯିମିତି । ପାନ ଭାଙ୍ଗିବାକୁ ବସିଥିବା ରମଣୀର ଛବି ମନେ ପକାନ୍ତୁ ତ ।

ଦିଲ୍ଲୀର କନଟ୍ ପ୍ଲେସ୍, କଲିକତାର ବଡ଼ ବଜାର ବା ବାଲୁବଜାର ପଟୀରେ ପାନଭଙ୍ଗା ଦେଖିଥିବେ । ପାନଭଙ୍ଗାରେ ଆୟାସ ନାହିଁ କି କଳା ନାହିଁ । ଗୋଟାଏ ବା ଷ୍ଟିଲ୍ ଲୋଟାରେ ଚୂନଖଇରମିଶା ପାଣି, ତହିଁରେ ଗୋଟିଏ ମୋଟା ଦାନ୍ତକାଠି, ବଡ଼ ବଡ଼ ଦାନ୍ତ ପରି ଗୁଆକାଟି ଗୋଟା ପତର ପାନ – ଏ ହେଲା ଗୌସ୍ତାକଡ଼ ପାନଦୋକାନ; ଏଠି ରୁଚି ବା ସୌନ୍ଦର୍ଯ୍ୟବୋଧର ଅବକାଶ ନାହିଁ, ଅଛି ଅର୍ଥନୀତି, ବ୍ୟବସାୟମୂଳକ ବୁଦ୍ଧି ! ପାନର ଯଥାର୍ଥ କ୍ରେତା ଓ ବିକ୍ରେତାଙ୍କ ସମୟ ପ୍ରତି ନଜର ନଥାଏ । ସେମାନେ ଉଭୟେ କଳାର ପୂଜାରୀ । ପାନ ବିକ୍ରେତା ହେଉ ବା ଗୃହିଣୀ ହେଉନ୍ତୁ ସେ କଦାପି ପାନ ବନାଇବାର କୌଣସି ଅଙ୍ଗ, ଅନୁମାନ ବା ଅନୁଷ୍ଠାନ, ଆଚାର କଦାପି ବାଦ୍ ଦେବେ ନାହିଁ । ଟ୍ରେନ୍ ବା ବସ୍ ଚାଲିଯାଉ; ସିନେମାର ଭାରତୀୟ ସମାଚାର ବା ଅସଲ ଛବିର ରିଲ୍‌ଟାଏ ତେଣେ ସରିଯାଉ ପଛକେ । ପାନର ଭକ୍ତ କ'ଣ ତର୍‌ବର ହୋଇ ଅଧାଭଙ୍ଗା ପାନ ନେଇ ଧାଇଁଯିବେ ?

ଇ.ଏମ୍. ଫରଷ୍ଟାର ତାଙ୍କ 'ପାନ' ଶୀର୍ଷକ ପ୍ରବନ୍ଧରେ ଅତି ଦରଦ ଓ ସହାନୁଭୂତି ସହିତ ଜଣୈକା ଅତିଥିବତ୍ସଳାଙ୍କ ଚିତ୍ର ଆଙ୍କିଛନ୍ତି । (ସାହେବଗୁଡ଼ାକର ଆଖି ଏତେ ତୀକ୍ଷଣ ଯେ ଦିନେ ଦୁଇଦିନ ଭିତରେ ଆମର ବାହାର ଭିତର ଦେଖି ଇମିତିଗୁଡ଼ାଏ ଲେଖି ଦିଅନ୍ତି ଯେ ଆମେ ଆମ ଦେଶକୁ ସେଇ ଲେଖା ଜରିଆରେ ଜାଣୁଁ ।) ସେ ରମଣୀଟି ହୁଏତ ଦକ୍ଷିଣ ଭାରତୀୟା । ଆମ ଓଡ଼ିଆଣୀମାନେ ପାନ ଭାଙ୍ଗିବାରେ ସମଧିକ-କଳାନିପୁଣା । ପାନ ଆପଣ ଖାଉଥାନ୍ତୁ ନ ଖାଉଥାନ୍ତୁ ଅତିଥିପ୍ରାଣା ରମଣୀ ଯେବେ ପାନ ଯାଚନ୍ତି ତେବେ ତାକୁ ଗ୍ରହଣ ନ କରିବା ଆପଣଙ୍କ ପକ୍ଷରେ ହୃଦୟହୀନତାର, ଅରସିକତାର ଚିହ୍ନ ହେବ । କାରଣ ସେଇ ପାନଖଣ୍ଡିକରେ (ପାନ ଗୋଟାଏ ଦିଆଯାଏ ନାହିଁ ଯୋଡ଼ାଏ ଖିଲି ଅବଶ୍ୟ ଥିବ) ଅମାପ ଆତିଥେୟତା, ବଂଶମର୍ଯ୍ୟାଦା, ପରମ୍ପରା ଏବଂ ହିନ୍ଦୁ ପରିବାରର ଇହକାଳପରକାଳର ପୁଣ୍ୟରାଶି ପୁଞ୍ଜୀଭୂତ । ହାତଯୋଡ଼ି 'ନା' କରି ପାନ ପ୍ରତ୍ୟାଖ୍ୟାନ କରି ହୁଏ ନାହିଁ । ହାତପତାଇ ତାକୁ ସାଗ୍ରହ ଗ୍ରହଣ କରି ଅତିଥିଙ୍କୁ ସମ୍ମାନ ଦେଖାଇବାକୁ ହୁଏ ।

କଳ୍ପନା-ଚକ୍ଷୁରେଦେଖନ୍ତୁ ଆପଣଙ୍କ ସେଇ ମହୀୟସୀ ସ୍ୱାଗତିକାଙ୍କୁ । 'ଲୁଚିଛି ନା ଗୋଡ଼ ଦୁଇଟା ଦିଶୁଛି' ପ୍ରବାଦର ଉଦାହରଣ ଦେଇ ସେ କବାଟକଣରେ ପାନ ଜାକି (ଡବା ନୁହେଁ)ଟି ଆଗରେ ଥୋଇ ବସିଛନ୍ତି । ସଉପଖଣ୍ଡ କରେ ବାଁ ଜଙ୍ଘକୁ ମାଡ଼ିବସି ପୂଜା ଅର୍ଚ୍ଚନା କରିବା ଭଙ୍ଗୀରେ ପାନ ଭଙ୍ଗା ଆରମ୍ଭ କରୁଛନ୍ତି । ଆପଣଙ୍କ ମନଲାଖି ପାନଟିଏ (ପାଚିଲା ପତର ପୁଣି ନିଖୁଣ ହୋଇଥିବ ନିଶ୍ଚୟ) ପାଇବା ତାଙ୍କ ପକ୍ଷରେ କାଠିକରପାଠ ହୋଇଛି । କୌଣସିଟି ତାଙ୍କ ପସନ୍ଦକୁ ଆସୁ ନାହିଁ । ବୋଧହୁଏ ସେ ଖୋଜୁଛନ୍ତି ଏମିତି ପତ୍ରଟିଏ ଯାହା ଏ ମର୍ତ୍ତ୍ୟର ଲତାରେ ଜନ୍ମି ନ ଥିବ । ଦୋ-ଦୋମନା ହୋଇ ନାସିକାକୁଞ୍ଚାଇ ଅବଶେଷରେ ସେ ପତ୍ରଟିଏ ବାଛିଲେ ଏବଂ 'ଚର୍' କରି ଶିରାଟି ତୋଳି ନେଲେ । ସମାନ ଦୁଇଫାଳ ହୋଇ (ଆପଣ ଡରୁଥିଲେ ସାନ ବଡ଼ ହୋଇଯିବ ବୋଲି) ପାନଟି ତାଙ୍କ କରପତ୍ରରେ ପଡ଼ି ରହିଲା । ଏଥର ଦେଖନ୍ତୁ ସେ କେଡ଼େ ତତ୍ପରା, ଚଞ୍ଚଳା ହୋଇ ଉଠିଲେ । ଚମ୍ପା କଢ଼ି ପରି ଅଙ୍ଗୁଳି ତାଙ୍କ ତରତରହୋଇ ଚୂନରୁ ଆରମ୍ଭ କରି ଡବା ଉପରେ ଡବାଭିତରୁ ନାନା ଉପାଦାନ ବାହାର କରି ଆଣିଲେ । ଯଦି ତାଙ୍କ ସହିତ ଆପଣଙ୍କ କଥାବାର୍ତ୍ତାରେ ବାଧା ନ ଥାଏ ତେବେ ସେ ଦଣ୍ଡେ ରହି ଅନୁଚ୍ଚ ସୁମିଷ୍ଟ ଗଳାରେ ପାଚରିବେ "ଗୁଣ୍ଡି ଖାଆନ୍ତି ?" ସେ ଶବ୍ଦ କେତୁଟା ଆପଣଙ୍କୁ ଏତେ ମିଠା ଲାଗିବ ଯେ ଆପଣ ଭାବାବେଶରେ ମୁଗଧ ହୋଇ ଅଥବା ଅନ୍ୟମନସ୍କ ହୋଇ ଗୁଣ୍ଡ ନ ଖାଇଥିଲେ ବି 'ହଁ' କହିଦେବେ । ପୁଣି ତାଙ୍କ ଆଙ୍ଗୁଳି ତତ୍ପର ହୋଇ ଉଠିବ । ଲବଙ୍ଗର ଫଳଟିକୁ ଟୁକ୍ କରି ଉଠାଇ ଫୋପାଡ଼ି ଦେବେ । ଆପଣ ତଳେ ପଡ଼ିବା ଶବ୍ଦ ବି ଶୁଣି ପାରିବେ, ଏତେ ଆବେଗମୟ ନିସ୍ତବ୍ଧ ବାତାବରଣ । ଖିଲଟିରେ ଲବଙ୍ଗ ମାରି ପାନ-ପାତ୍ର (ମଦ୍ୟପାତ୍ର ନୁହେଁ)ଟି ଅଳ୍ପ ହସ, କିଞ୍ଚିତ ଭଙ୍ଗୀରେ ବଢ଼ାଇଦେବେ । ସଦିଚ୍ଛା, ହୃଦୟବତ୍ତା ଓ ରୋମାନ୍ସର ଗୋଟିଏ ଏଟମ୍ ବମ୍ ଏଇ ଖିଲଟି । 'ସ୍ୱର୍ଗେଷ୍ୱପି ଦୁର୍ଲଭଃ'- କବି କ'ଣ

ମିଛରେ ଲେଖିଛନ୍ତି । ଏମିତି ପାନଖିଲଟିଏ ପାଇଁ ସ୍ୱର୍ଗରୁ ଦେବତା ମାନେତଳକୁ ଓହ୍ଲାଇବାରେ ବିଚିତ୍ରତା କ'ଣ ଅଛି ? କେତେ କିସମର ଗୁଆ ସେ ଭାଙ୍ଗି ପାରନ୍ତି ପଚାରିଲେ ବୁଝିବେ ଯେ ଧାମନଗରୀ ଚୂଡ଼ାଠାରୁ ପତଳା ବା ଫୁଲକେଶରଠାରୁ ସରୁ ଗୁଆ ସେ ଦେଇପାରିବେ । "କେତେ ପ୍ରକାର ଖିଲ ମୋଡ଼ି ପାରନ୍ତି ?" ଉତ୍ତରରେ ସେ କହିଯିବେ ଜ୍ୟାମିତି ପରିମିତିର ସମସ୍ତ କଳ୍ପିତ ଅକଳ୍ପିତ ରୂପ । ପୂର୍ବେ ବୋହୂଟିଏ ବାଛିଲାବେଳେ ପାନଭାଙ୍ଗି ଜାଣିବା ଥିଲା ଏକ ଅପରିହାର୍ଯ୍ୟ ଯୋଗ୍ୟତା । ତା ନ ହେଲେ ଲାବଣ୍ୟବତୀର ବାସରଘରେ କୁମାରର ତକିଆପାଖରେ ପାନଥାଳି ସାଜିଦବ କିଏ ? ଏଇ କଳା ଜାଣି ନଥିବା କେତେ କେତେ ଅବିବାହିତା ନ ରହିଥିବେ ? କେତେ ପତ୍ନୀ, ପତିବ୍ରତା ବା ବିତାଡ଼ିତା ହୋଇଥିବେ ଭାବି ପାରୁଛନ୍ତି ତ।

ପୂର୍ବେ ଅଣ୍ଡିରା ପିଲା (ଦକ୍ଷିଣ ଓଡ଼ିଶାର ବିପରୀତ) ମାନେ ମଧ ଏ ଅଗ୍ନିପରୀକ୍ଷାର ସମ୍ମୁଖୀନ ଥିଲେ । ମଧ ଇଂରାଜୀବିଦ୍ୟାଳୟରେ ଯୋଗ୍ୟତା ପଣ୍ଡିତ ମହାଶୟ (ଏମିତି ସିମିତି ପଣ୍ଡିତ ସେ 'ଉତ୍ତୁଙ୍ଗବକ୍ଷା ହିଁ ନିତମ୍ବଗୁର୍ବୀ'ର ଠାରୁ ବଳି ପ୍ରଗଳ୍ଭ ଚତୁର, ରସିକ) ପଚାରିଲେ "ପାନ ଭାଙ୍ଗି ଜାଣୁ ?" ମୁଁ କହନ୍ତେ ସେ ମନ୍ତବ୍ୟ କଲେ "ପାନ ଭାଙ୍ଗି ଜାଣୁ ନା ପାଠ କ'ଣ ପଢ଼ିବୁ ?" ଅରୁଣି, ଏକଲବ୍ୟର ହେଲେ ଗୁରୁ ପ୍ରସାଦ, ଗୁରୁସେବା ଦରକାର । ପାନଭଙ୍ଗା ବିଦ୍ୟା ହାସଲ କଲି ଅଙ୍ଗୁଳିରୁ ଟିକିଏ ରକ୍ତ ମାଉଁସ, ଚମଡ଼ା "ଗୁରୁକୃପା ହିଁ କେବଳ ସହିତ ସମର୍ପଣ କରି । ବରାବର ବରାଦ ମୁତାବକ ଯୋଗାଇବାର ହୁକୁମ୍ ଗୁରୁଙ୍କଠାରୁ ମିଳିଲା; କିନ୍ତୁ ପ୍ରରୋଚନାରେ ଦିନେ ଜ୍ଞାନଫଳ ଅର୍ଥାତ୍ ଫ୍ରୁଟ୍ ନୋଲେଜରୁ ଅର୍ଥାତ୍ ଗୁଆରୁ (ଜ୍ଞାନଗୁରୁ ସ୍ଥାନରେ କ'ଣ ଗୁଆ ଥାପନା କରାଯାଏ ନାହିଁ । ଖାଇଦେଲି । ବୁଡ଼ିଗଲା ଗୋଡ଼ ତଳକୁ ତଳକୁ । ପରେ ଜ୍ଞାନପତୟ ଭକ୍ଷିଲି । ପାପରେ ମୁହଁ ଓଠ ଲାଲ ଲୁଗାକାନିରେ ରଗଡ଼ି ମଧ ରଙ୍ଗ ଉଠାଇ ପାରିଲି ନାହିଁ । ପାପ କି କେବେ ନିଶ୍ଚିହ୍ନ କରିହୁଏ ? ମହର୍ଷି ଫେରି ଜାଣି ପାରିଲେ ମୋର ପାପଗର୍ଭ କଥା । ସଙ୍ଗେ ସଙ୍ଗେ ଅଭିଶାପ । 'ଜାଣିଲି ଧାନେ ସତୀ' ଏବଂ 'ଘେନି ବ୍ୟତିକ୍ରମଫଳ' କହି ପାଞ୍ଚ ଦଶଟି ପାହାର ବେତରେ ଦେଲେ । ଏଥକୁ ସଇତାନ ପ୍ରତିଶୋଧ ପାଞ୍ଚିଲା । ଚୂନ, ବଡ଼ ବଡ଼ ଗୁଆ, ଛିଆଦା କଡ଼ାଗୁଣ୍ଡି ଦେଇ ଭାଙ୍ଗଲା; କିନ୍ତୁ ବଣୁଆ ଓଲ ପୋଡ଼ି ସିଝାଇ ତନ୍ତୁ ମରିଚ ତା ସାଙ୍ଗକୁ ଦେଇ ଯେ ପରମତୃପ୍ତିରେ କରୁଥିଲା ତାଙ୍କ ପାଟିକୁ ଏ ବିଷକାଫି କଲା ନାହିଁ, ଦେହ ସୁଦ୍ଧା ନୀଳ ହେଲା ନାହିଁ । ସୟତାନ ପରାଭବ ପାଇଲା ।

ମୋ ପାକୁଆ ପାଟିକୁ ତା ପାକୁଆ ପାଟି ଆଈମା ପିଲାଦିନରେ ଯେଉଁ ମାଉଥ୍ ଟୁ ମାଉଥ୍ ଟ୍ରାନ୍ସଫସନ୍ ରକ୍ତ ରଙ୍ଗର ପାନ ଛେପ (ଏ ବୀଭତ୍ସ ରସ !) ସଞ୍ଚାର ତାହା ମଧ ଇଂରାଜୀ ବିଦ୍ୟାଳୟରେ ମୋତେ ନବ ଯୋଗାଇଲା । ଏଇ ତାମ୍ବୁଳିନୀଙ୍କୁ ସାଙ୍ଗ କରି କେତେ ନିର୍ଯ୍ୟାତନା ନ ଭୋଗିଛି, କେତେଥର ହୋଇଛି । ଲୋକଙ୍କ ଉପରେ ତାମ୍ବୁଳରସ ବିବର୍ଷଣା

ଶୁଣିଛି । ନିଜ ଉପରେ କେତେଥର ତାହା ମଧ୍ୟ ମୁଁ ମୁହଁ ଫିଟାଇ କାହାକୁ କିଛି କହି ନାହିଁ । ସଙ୍ଗିନୀଙ୍କ ବିରହରେ ବାୟା ପରି ହୋଇ ରାମ ସୀତାଙ୍କୁ ଖୋଜିଲା ପରି ଖୋଜିଛି,ପାଇ ନାହିଁ । ସାଙ୍ଗ କରି କେତେ କେତେ ପଢ଼ା ବହିର ପୃଷ୍ଠାକୁ ଚିରି ନ ଦେଇଛି । ଯାକୁଇ ପାଟିରେ ରଖି ଛିଙ୍କମାରି ମୂଲ୍ୟବାନ ଲୁଗା-ପଟା, ପୋଷାକ-ପତ୍ର ନଷ୍ଟ କରିଛି । କେତେଥର ପିଲାଝିଲାଙ୍କୁ ବଜାରକୁ ନ ପଠାଇଛି ଆଣିବା ପାଇଁ । ତାଙ୍କରି ସାହଚର୍ଯ୍ୟରେ ପାଟିକୁ ତାଳ ଦେବାକୁ ଶିଖାଇ ପାରିଛି । ଶାଳୀମାନଙ୍କ ପାନ ଚୋବାଇ ମୁଖ ବିକୃତ କରି ସେମାନଙ୍କୁ ଆନନ୍ଦ ନ ଯୋଗାଇଛି । ସତ ସତରେ ଥଟ୍ଟାତାମସା, ଆନନ୍ଦ ତଥା ପ୍ରେମର ଏ ପାନଖିଲଟି ବାର୍ତ୍ତାବହ ପ୍ରେମିକର ତୃଷ୍ଟି ସମ୍ବଳ ।'' କେବଳ ସେତିକି ନୁହେଁ ତକ୍ଷକ ଲୁଚି ପରୀକ୍ଷିତ ମହାରାଜାଙ୍କୁ ଦଂଶନ ଏଇ ପାନ ଭିତରେ ମୋ ସ୍ତ୍ରୀଙ୍କ ପ୍ରଦତ୍ତ ପେଚା ମୋ ଭିତରକୁ ପଶି ମୋତେ ହେନ୍‌ପେକ୍‌ଡ଼ କରିଛି । ପେଚା ମାଉଁସ ନ ଖାଇ ମଧ୍ୟ ସ୍ତ୍ରୀଙ୍କ.ଆଗରେ ପେଚାଙ୍କ ବୋକା ହୋଇ ନାହାନ୍ତି କ'ଣ ?) ମୁଁ ସ୍ତ୍ରୀବୁଦ୍ଧି ହୋଇ ଗର୍ବ ଅନୁଭବ କରିଛି । ଏକେତ ସ୍ତ୍ରୀବୁଦ୍ଧି କଲ୍ୟାଣପ୍ରସବିନୀ । ଦୁଜେ ସ୍ତ୍ରୀ-ବୁଦ୍ଧି ପରିଚାଳିତ ଦାଉରୁ ରକ୍ଷା ପାଏ । ସ୍ତ୍ରୀ ଚାଲିଯିବା ପରେ ମୁଁ ଖାଇବାରେ ବଡ଼ କଷ୍ଟ ପାଉଛି । ପେଚାମାଉଁସଖିଆ କର୍ତ୍ତୃତ୍ୱହୀନ ହେନ୍‌ପେକଡ୍ ସ୍ୱାମୀ ସହସ୍ରଗୁଣେ ପରିଚାଳିତ, ସ୍ତ୍ରୀ ନିର୍ବ୍ୟପେକ୍ଷ ଭର୍ତ୍ତା ଅପେକ୍ଷା ଯିମିତି ଗିଳୁ, ମହାଗିଳୁ, ତଦ୍‌ଗିଳୁ ରାଘବ କିନ୍ତୁ ଅଛନ୍ତି ପାନ-ଭକ୍ଷଣରେ ସେହିପରି ଅନେକ ରଥୀ ଅଛନ୍ତି । ତା' ଛଡ଼ା ପାନ ଭାଙ୍ଗିବା ପରି ପାନ ମଧ୍ୟ କଳା ଅଛି । ଉଭୟ ପ୍ରକାର ଓ ପରମାଣତଃ (ଭୋଳି ନନା ! ମୋର ସକଳ ଗର୍ବ କରିଛ ଚୂର୍ଣ୍ଣ !) ବାବୁଙ୍କୁ ପାନ ଖିଆରେ ବଳଯିବ କିଏ ? ସେ ଥିଲେ ମୟୂରଭଞ୍ଜର ଗୋଟାଏ ସବ୍‌ଡ଼ିଭିଜନର ଏସ.ଡି. ଓ । ମୋର ଅଗ୍ରଜପ୍ରତିମ ବନ୍ଧୁଙ୍କ ପାନଖିଆର ସମସ୍ତ ତଥ୍ୟ ମୁଁ ସଂଗ୍ରହ କରିଛି । ସେ ପୁରୁଣା ପୋଥିରୁପାନ ପ୍ରସ୍ତୁତପ୍ରଣାଳୀ ଶିକ୍ଷା କରିଥିଲେ । ଗାୟତ୍ରୀ, ଜାଇତ୍ରି, ଯଷ୍ଟିମଧୁ ଏମିତି କେତେ କ'ଣ ମସଲା ସେ ବ୍ୟବହାର କରୁଥିଲେ । ବ୍ରହ୍ମପୁର ଛାଚି ପାନ ନ ହେଲେ ନ ଚଳେ । ଟାଟାନଗର କଲିକତା ବାଟଦେଇ ହପ୍ତାକୁ ଝୁଡ଼ିଝୁଡ଼ି ପାନ ଆସେ । ଗୁଣ୍ଡି ତାଙ୍କ ସ୍ତ୍ରୀ ନିଜେ ପ୍ରସ୍ତୁତ କରନ୍ତି । ସେ ବି ଥିଲେ ଜଣେଁକା ବିଳାସକୁଶଳା ରମଣୀ । ଚୁଆ ତେଲ ଗୁଣ୍ଡିରେ ପଡ଼େ । ଖଇର କିଆ କେତେକୀ ଫୁଲ ଭିତରେ ପାନମହୁରୀ ଦେଇ ତିଆରି ହୋଇଥାଏ । ବନ୍ଧୁ ଓ ବାନ୍ଧବୀଙ୍କ ପାନକାହାଣୀ ଶୁଣିଥିଲି । ଦିନେ ଦୈବାତ୍ ଚାକ୍ଷୁଷ ପ୍ରମାଣ ପାଇଲି । ବନ୍ଧୁ ଗସ୍ତରେ ଗଲେ ସ୍ତ୍ରୀଙ୍କୁ ସଙ୍ଗରେ ନେଇ ଯାଆନ୍ତି (ଅନ୍ୟ କାହାରି ହାତର ପାନ ସ୍ୱାମୀଙ୍କୁ ରୁଚିବ ନାହିଁ ଯେ) । ଏକ ଡାକବଙ୍ଗଳାରେ ଦୁହେଁ ରହିଲୁଁ । (ବିପଦ ପଡ଼ିଲେ ବିଚିତ୍ର ଲୋକଙ୍କ ସହିତ ଏକ ଶଯ୍ୟାରେ ଶୋଇବାକୁ ପଡ଼େ) । ରାତି ଦଶଟା ବେଳକୁ ତାଙ୍କ ସ୍ତ୍ରୀ ପଚିଶ ଖଣ୍ଡ ପାନର ଥାଳିଆଟି ସ୍ୱାମୀଙ୍କ ତକିଆ ପାଖରେ ଥୋଇ ଦେଇ ଚାଲିଗଲେ ବଜାରରେ ଥିବା ଜଣେଁକା ବାନ୍ଧବୀ ପାଖକୁ ରାତ୍ରି ଯାପନ ପାଇଁ, ମୁଁ ଓ ଭୋଳିନନା ଏକା କୋଠରୀରେ ଶୋଇଲୁଁ । ରାତି ଗୋଟାଏ ବେଳେ କ'ଣ ଗୋଟାଏ ଅସ୍ୱାଭିବିକ ଶବ୍ଦରେ ମୋର ନିଦ ଭାଜିଗଲା । ଶବ୍ଦଟା

ବନ୍ଧୁଙ୍କ ପାଟିରୁ ଆସୁଥାଏ। ସ୍ତିମିତ ଆଲୋକରେ ଯାହା ଦେଖିଲି ସେଥିରେ ମୁଁ କାବା ହୋଇଗଲି । ସେ ଚିତ୍ ହୋଇ ନିଘୋଡ଼ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି, ଦଣ୍ଡେ ପରେ କଡ଼ ଲେଉଟାଇ ପାନଥାଳି ଆଡ଼କୁ ମୁହଁ କରୁଛନ୍ତି, କୂଳରୁ ଗହମବୋରା କ୍ରେନଟି ନିର୍ଭୁଲରେ ଜାହାଜଭିତରେ ନେଇ ଛାଡ଼ିଲା ପରି ବାଆଁ ହାତ ପାନ ଥାଳିଆରୁ ପାନଟିଏ ନେଇ ଠିକ୍ ପାଟିରେ ଥୋଇ ଦେଉଛି । ପାଟି ଆପେ ଆପେ ଆଁ ହେଲାବେଳକୁ ଦାନ୍ତମାନେ ସଙ୍ଗେ ସଙ୍ଗେ ତାଙ୍କ କାମରେ ଲାଗିଯାଉଛନ୍ତି । ପିକ ପାତ୍ରରେ ପିକ ପଡୁଛି, ସିଠା ସ୍ଥାନରେ ସିଠା ପଡୁଛି । ସବୁ ଯାଦୁ ବା ଯନ୍ତ୍ର ପରି ମୋତେ ବୋଧ ହେଲା । ରାତିଯାକ ମୁଁ ଏ ଦୃଶ୍ୟ ଉପଭୋଗ କଲି । ସକାଳେ ନନା ମୋତେ କହିଲେ ଯେ ବର୍ଷକୁ ଅନ୍ତତଃ ଶଗଡ଼େ ପାନସିଠା ସେ ଗୋଲାପ ବଗିଚାରେ ପକାନ୍ତି । ଲାଲିପାଖୁଡ଼ାକୁ ପାନ ଭିତରେ ଦେଇ ପୁଣି ଖାଆନ୍ତି । ଚକ ପୁରା ବୁଲି ଆସେ । ରାତିର ସମସ୍ତ ସ୍ୱପ୍ନ ପାନ ସଂକ୍ରାନ୍ତ, କଚେରୀର ମାଲିମକଦ୍ଦମା ବା ବିରକ୍ତିକର ଆପତ୍ତି ଅଭିଯୋଗର ସେ ସ୍ୱପ୍ନରେ ସତ୍ତା ନ ଥାଏ । ଏଇ ପାନ ବଳରେ ସେ ଧରାକୁ ସ୍ୱର୍ଗ (ସରା ?) କରିଛନ୍ତି । ଅଫିମ ଛରିଆରେ କୋଲରିଜ କୁବ୍‌ଲା ଖାଁ ସାଜିଥିଲେ । ବନ୍ଧୁଙ୍କ ଯଦି କବିତ୍ୱ ଥାଆନ୍ତା ତେବେ ସେ ପାନ ପ୍ରଭାବରେ କିଛି ନ ହେଲେ ଅନ୍ତତଃ ଲୋଟସ ଇଟର ବା ପଦ୍ମଭୁକ୍‌ର ରାଜ୍ୟଟିଏ କାବ୍ୟ ସୃଷ୍ଟିରେ ଗଢ଼ି ପାରିଥାନ୍ତେ ।

ଏଇଠି କଟଟତପ (ଭଞ୍ଜ ସାହିତ୍ୟର ଏକ ଲାଳିକା ?) କାର ଡକ୍ଟର କ୍ଷୀରୋଦ ପାଳ 'ପାନ ପ୍ରସଙ୍ଗ'ରେ ଦନ୍ତରୋଗ ବା ନିକୋଟିନ୍ ଜାତ ରୋଗ ଏପରିକି କେନ୍‌ସାରର ଭୟ ଦେଖାଇବେ । ନିନ୍ଦୁକର ଅଭାବ ନାହିଁ ଭଲ ଚିଜର । ପ୍ରଭୁ ଯୀଶୁ କ'ଣ ନିନ୍ଦୁକ ହାବୁଡ଼ରୁ ରକ୍ଷା ପାଇଛନ୍ତି ? ପାନଠୁଁ ବଳି ଅନାବିଳ ପଦାର୍ଥ ଦୁନିଆଁରେ କେଉଁଠି ଅଛି ? ଅପ୍ରାକୃତ ପ୍ରେମ ଯାରି ଛରିଆରେ, ଅଯାଚିତ ବନ୍ଧୁତା ଯାରି ମାଧ୍ୟମରେ । ଗୋଟାଏ ଜାତିର ସହୃଦୟତା, ଉଦାରବତ୍ତାର ସନ୍ତକ ଏଇ ପାନ ଖିଲଟି । ଉପରନ୍ତୁ ପାନ ଗୋଟାଏ ଜାତିର ଖାଦ୍ୟ । ଯାରି ଉପରେ ନିନ୍ଦା ବା ଆକ୍ରମଣ ଗୋଟାଏ ଜାତି ଉପରେ ଆକ୍ଷେପ ଓ ବିଦ୍ରୂପ । ପାନକୁ ଯେ ବିଳାସସାମଗ୍ରୀ କହି ଟେକ୍‌ସ ବସାଏ ସେ ଜାତିଦ୍ରୋହୀ; ତା' ମୁହଁରେ ପାଇଓରିଆ ହେଉ ତା'ର ପ୍ରତିକୃତି ଗୌରୀଶଙ୍କର ପାର୍କରେ ପୋଡିବା ଉଚିତ, ଅପର ପକ୍ଷରେ ଯେ ଜାତିସ୍ମର ହେବାକୁ ଚାହେଁ ସେ ପାନର ଉନ୍ନତି, ବିକାଶ ଓ ପ୍ରସାର ଉପରେ ଜୋର ଦେଉ । ଧାନ, ଚାଉଳ ଉପରେ ଟେକ୍‌ସ ଏ ଜାତି ସହିପାରେ; କିନ୍ତୁ ଗୁଆ ଦର ଆଠଣା ସ୍ଥାନରେ ଆଠ ଟଙ୍କା, ଧୂଆଁପତ୍ର ଆଠଣା ଜାଗାରେ ଷୋଳଟଙ୍କା, ପାନବିଡ଼ା ଦୁଇ ପଇସା ସ୍ଥାନରେ ଦୁଇଟଙ୍କା, ପାନମସଲା ଦୁଇଟଙ୍କାକୁ ଆସି ଅଶୀଟଙ୍କା । ନିହାତି ମାଇଚିଆ ଅଧମ ଜାତି ନ ହେଲେ ଏ ଅବସ୍ଥା କିଏ ବରଦାସ୍ତ କରନ୍ତା । ଆମର କୋଡ଼ିଏ ଜଣଯାକ ଲୋକସଭାର ସଦସ୍ୟ ଯେଝା ବଟୁଆ ଧରି ଯେବେ ଅଧିବେଶନକୁ ଯାଉଥାନ୍ତେ ଏବଂ ମଝିରେ ମଝିରେ ସଦସ୍ୟମାନଙ୍କ ଭିତରେ ଓଡ଼ିଶୀ ପାନଖିଲ ବାଣ୍ଟୁଥାନ୍ତେ (ମହାପ୍ରସାଦ ବାଣ୍ଟି ସଦିଚ୍ଛା ଓ ଲୋକପ୍ରିୟତା କିଣାଯାଏ)

ତେବେ ପାନସୃଷ୍ଟିରେ ରାମରାଜ୍ୟ ଆସିଯାଆନ୍ତା । ଶସ୍ତାରେ ପାନ ଖାଇ କିରାଣୀ, ମାଷ୍ଟର, ମାଜିଷ୍ଟ୍ରେଟ ସମସ୍ତେ କର୍ମକ୍ଷମ ଉଦ୍‌ଯୋଗୀ ହୋଇ ଯାଆନ୍ତେ । କୃଷକମାନେ ଧୂଆଁପତ୍ର ଚୋବାଇ ଅଧିକ ଖାଦ୍ୟ ଉତ୍ପାଦନକ୍ଷମ ହୁଅନ୍ତେ ମଧ । ବାଳପରି ପାନ ମଧ ରପ୍ତାନି ହୋଇ ବୈଦେଶିକ ମୁଦ୍ରା ଉପାର୍ଜ୍ଜନ କରନ୍ତା । ଦେଶଯାକ କୃତ୍ରିମ ଲିପ୍‌ଷ୍ଟିକ୍ ପରିବର୍ତ୍ତରେ ନୈସର୍ଗିକ ନାଲି ରଙ୍ଗ ବିମ୍ବାଧରୀଙ୍କ ଓଷ୍ଠକୁ ଅଧିକ କରନ୍ତା । ଧର୍ମର ଏ ଦେଶ ପ୍ରେମର ଦେଶରେ ପରିଚିତ ହୁଅନ୍ତା ।

ପାନର ଯଥାର୍ଥ ରସିକ, ଚିହ୍ନରା ଗ୍ରାହକ ଓ ଥିଲେ ମୟୂରଭଞ୍ଜର ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ଶରତ୍‌ଚନ୍ଦ୍ର (ତାଙ୍କ ପରି ନିଃସ୍ୱାର୍ଥ ଦେଶସେବୀ ବିରଳ । ଦଶ ଏଗାରବର୍ଷ ମୟୂରଭଞ୍ଜର ନିରଙ୍କୁଶ କ୍ଷମତାର ଅଧିଷ୍ଠିତ ଥାଇ ମଧ ଟାଳକୁ ନୂଆ ଛପର କରି ପାରି ନ ଥିଲେ ଅଥଚ ପାଖ ଗୁଡ଼ାକ ଦୋତାଲା ତେତାଲା ହୋଇଗଲା) ଯେଉଁ କେତୋଟି ସେ ଅପ୍ରତିଦ୍ୱନ୍ଦ୍ୱୀ ଶାସକ ଥିଲେ ସେ ଭିତରେ ସେ ପାନକୁ ସମ୍ବଳ କରିଥିଲେ । ପ୍ରଜାମଣ୍ଡଳର ନେତା ଥାଇ ଦଳର ମାନଙ୍କଦ୍ୱାରା ଏତେ ଉତ୍‌ପୀଡ଼ିତ ହେଉଥାଆନ୍ତି ଯେ ତାଙ୍କୁ ମଧ ହେଉ ନଥାଏ, ରାତିରେ ଅଳ୍ପ ଅଳ୍ପ ଜ୍ୱର ମଧ କେବଳ ପାନରୁ ଖଣ୍ଡିଏ ଖଣ୍ଡିଏ ଛେଚି ମୁଖ୍ୟମନ୍ତ୍ରିତ୍ୱର ଜ୍ୱାଳା ଉପଶମ କରୁଥାନ୍ତି । ଅବ୍ୟବହିତ ପୂର୍ବରୁ ସେ ସଦଳବଳ ଗୋଟାଏ ବିମାନରେ ଦିଲ୍ଲୀ ଯାଉଥାନ୍ତି ସର୍ଦ୍ଦାର ପଟେଲଙ୍କ ସହିତ ପାଇଁ । ଉଡ଼ାଜାହାଜଟି ଉତ୍ତରପ୍ରଦେଶ ଉପରଦେଇ ଯିବାବେଳେ ଭୀଷଣ ଝଡ଼ତୋଫାନର ସମ୍ମୁଖୀନ ହେଲା । ପକେଟ୍‌ରେ ପଡ଼ି ଥରକୁ ଥର ଜାହାଜ ପଡୁଥାଏ ଉଠୁଥାଏ ତେଣେ ଯାତ୍ରୀଙ୍କ ଆଗରେ ନାଲି ଅକ୍ଷରରେ ଅଣ୍ଟା ଫିତା ବାନ୍ଧିବା ପାଇଁ ଲେଖା ହୋଇଥାଏ । ଯାତ୍ରୀମାନେ ଆଶଙ୍କାରେ ସତ୍ୟନାରାୟଣ ପୂଜା, ଅମ୍ବିକାଙ୍କୁ ବୋଦା, କୃପଣ ତିନି ପଇସାର ତ୍ରିନାଥମେଳା ମନାସୁଥାନ୍ତି । ଚାଲିଥାଏ କ୍ୱଚିଦ୍ ସୁରାଣାଂ ପଥାକ୍ୱଚିଦ୍ ଘନାନାଂ କ୍ୱଚିଦ୍ । ମୁଖ୍ୟମନ୍ତ୍ରୀ କିନ୍ତୁ ସେତେବେଳେ ଧରାପୃଷ୍ଠରେ ଯାହାଙ୍କ ନିଦ ନ ଥିଲା ସେ ବିପଦର ମୁହୂର୍ତ୍ତରେ ମଧ ଆକାଶମାର୍ଗରେ ନିଦ୍ରିତ ଥାନ୍ତି । ହେଲେ ପଛ ସିଟ୍‌ରେ ବସିଥିବା ଅନ୍ତର୍ଯ୍ୟାମୀକୁ ଡାକି ସେ ତାଙ୍କ ଚପରାସି ତଥା ଡ୍ରାଇଭର । ଛେଚା ପାନ ଭାର ତା'ରି ଉପରେ ନ୍ୟସ୍ତ । କଲିକତାରୁ ସେ କେବଳ ପାନ ଛେଚି ପାନ ଛେଚିବା, କୁଟିବା (କତୁରିବା ପାଇଁ ପ୍ରକାରଯନ୍ତ୍ର ଆମେ ବାହାର ନ କରିଛୁଁ, କିଛି ନ ମିଳିଲେ ପାପୁଲିକୁ ଡାହାଣ ହାତ ବୁଢ଼ା ଆଙ୍ଗୁଳି ଅଛନ୍ତି) ରଖିଥାଏ । ଝୁଟ୍‌ଫେବ୍ ଯୁଦ୍ଧକ୍ଷେତ୍ରର ଶିବିରରେ ସତୃଷ୍ଣ ନୟନରେ ପାଣିଟୋପିଏ ପାଇଁ ସାବ୍ ଭଙ୍ଗୀରେ ମୁଖ୍ୟମନ୍ତ୍ରୀ ପାନଛେଚାକୁ ପୁଳାଏ ପାଇଁ ଯିମିତି ବଢ଼ାଇଛନ୍ତି ଅନ୍ତର୍ଯ୍ୟାମୀ ସନ୍ତ୍ରସ୍ତ ହୋଇ ପାନ ଛେଚିବାକୁ ପଡ଼ିଲା କାରଣ ଷ୍ଟକରେ ଆଉ ନଥିଲା । ଦୁର୍ଯୋଗଭିତରେ ଯାଉଥିଲାବେଳେ ଠକ୍ ଠକ୍ ଶବ୍ଦ ଯେମିତି ଯାତ୍ରୀ ଶୁଭୁଛି ଲମ୍ବା ଚୌଡ଼ା ପାଇଲଟ ଜଣେ କକ୍‌ପିଟ୍‌ରୁ ପଶି ଆସିଲେ । ଅନୁସନ୍ଧାନ କରି ଆସିଲେ ସେଇ ଯେଉଁଠୁ ଏ ଅସ୍ୱାଭାବିକ ଅଶ୍ରୁତପୂର୍ବ ଶବ୍ଦ ବାହାରୁଛି । ସେତେବେଳେ ପିତଳର ହେମଦସ୍ତାରେ ପାନ ଭରି ରଖି ଜୋର୍‌ରେ ଛେଚିବାରେ ଲାଗିଛି ।

ପାଇଲଟ୍ ସିମିତି ତାକୁ ଇଂରାଜୀରେ "ସେଇଟା କ'ଣ ?" ବୋଲି ପଚାରଛନ୍ତି ଅନ୍ତର୍ଯ୍ୟାମୀ ଉତ୍ତର ଦେଇ ନ ପାରି ଯନ୍ତଟା କେବଳ ଦେଲା । ଆଶ୍ୱସ୍ତିର ହସଟାଏ ଦେଇ ପାଇଲଟ୍ ଘରକୁ ଫେରିଗଲେ । ଅନ୍ତର୍ଯ୍ୟାମୀଠାରୁ ଖଣ୍ଡିଏ ପାନଯେବେ ନେଇଥାନ୍ତେ ତେବେ ତାଙ୍କ ହସଟା ଆହୁରି ହୃଦ୍ୟ ଓ ହୋଇଥାନ୍ତା ।

ମଣିଷ ଜୀବନରେ ନାଟକୀୟ ପରିବର୍ତ୍ତନ ଆସେ । ମୋର ଜୀବନରେ ଦୈବାତ୍ ଏକ ଅଭାବନୀୟ ପରିବର୍ତ୍ତନ । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଉତ୍ତର ବାଲେଶ୍ୱରର ଈଶ୍ୱରପରିତ୍ୟକ୍ତ ଗାଁକୁ ପ୍ରିଜାଇଡ଼ିଂ ଅଫିସର ହୋଇ ଯାଏଁ । ଚାଳ ଛପରହୀନ ଏକ ସ୍କୁଲ ଘରେ ଆମର ରହଣି । ଦିନରେ ଖରା, ରାତିରେ ତରା ଦେଖୁଥାଉଁ । ଆମର ବିଧାୟକ ବିଚରା ନାନା ଚେଷ୍ଟା ଚରିତ୍ର କରି ମାଛକୁ ତେ଼ଲ ଟା କୁ ଚେନି ଯୋଗାଡ଼ କରି ପାରୁ ନ ଥାନ୍ତି; କିନ୍ତୁ ଚୋବାଉଥାନ୍ତି ପ୍ରଚୁର ପାନ । ଭୋଟ ଗ୍ରହଣ ଦିନ ଦେଖିଲି ୧୧୫୪ ଭୋଟଦାତାଙ୍କ ମଧ୍ୟରୁ ଭୋଟ ଦେଲେ ୧୩୩ । ତା ଭିତରୁ ୧୨୮ ଜଣ ବିଧବା । ମୋ ମନରେ ଦୁଃଖ ଆସିଲା ଆମର ଗଣତନ୍ତ୍ର ବିଧବାଙ୍କ ଶାସନ । ଇଂଲଣ୍ଡ ପରି ପୁରାତନ ଗଣତାନ୍ତ୍ରିକ ରାଷ୍ଟ୍ରରେ ଶାସନ ଠିକ୍ ଚାଲୁ ନାହିଁ ବୋଲି ଆକ୍ଷେପ କରି ବାର୍ଣ୍ଣାଡ଼ଶ କହିଥିଲେ ଯେ ପର୍ଯ୍ୟନ୍ତ ଇଂଲଣ୍ଡର ଲୋକ ନିଉଟନ୍,ସେକ୍ସପିଅର ବା ବର୍ଣ୍ଣାଡ଼ଶ ନ ହୋଇଛନ୍ତି ସେଯାକେ ଗଣତନ୍ତ୍ର ଏକ ଅଳୀକ ସ୍ୱପ୍ନ । ବିରକ୍ତିକର ଶେଷରେ ବୁଲି ବାହାରିଲି । ପ୍ରଥମ ନଜର ପଡ଼ିଲା ଅବୃତ ଚାଳଘର ପରି ଗୋଟାଏ ସ୍ଥାନ । ଶାଳବଣର ନଡ଼ିଆବଗିଚା, ଲଙ୍କାଆମ୍ବ, ପୁନ୍ନାଗବଣ ଓ (ବରଜବନ୍ଧୁ କ'ଣ ପକ୍ଷାନ୍ତରେ ସୂଚନା ଦିଏ କୃଷିପ୍ରଧାନ ସଭ୍ୟତା ଯୁଗରେ ପାନବରଜର ପୃଷ୍ଠପୋଷକ ଥିଲେ ?) ଦର୍ଶନୀୟ ଦୃଶ୍ୟାବଳି । ଯୋତା ବାହାରେ ଥୋଇ (ନାନା ଆଚାରବିଧି ନୀତିନିୟମ ପାନବରଜରେ ପାଳନ କରାଯାଏ) ଭିତରକୁ ପଶିଗଲା ମାତ୍ରେ ଖରାଦିନର ତାତି ଝାଞ୍ଜି ପରିବର୍ତ୍ତେରେ ଛାୟାଶୀତଳ ସ୍ଥାନଟିର ହେମାଳ ସୁରଭିତ ବାୟୁମଣ୍ଡଳ ଉପଭୋଗ କଲି । ସୁକୋମଳାଙ୍ଗୀ 'ସଞ୍ଚାରିଣୀ ପଲ୍ଲବିନୀ ଲତା' ଗୁଡ଼ିକୁ ଆଉଁଶିବାକୁ ଚୁମ୍ବିବାକୁ ମନ ବଳିଲା । ଜୀବନର ପରମ ତୃପ୍ତି-ଗତିମୁକ୍ତିବିଧାୟିନୀ ପାନଖିଲିର ଉତ୍ସରେ ବୁଡ଼ି କୃତକୃତ୍ୟ ହେଲି । ବାତ୍ସଲ୍ୟ-ସ୍ନେହରେ ଲତାଗୁଡ଼ିକୁ ପାଳୁଥିବା ଲୋକଟିକୁ ଦେଖି ମନେ ପଡ଼ିଲା । "ପାତୁଂ ନ ପ୍ରଥମଂ ବ୍ୟବସ୍ୟତି ଜଳଂ" ଶ୍ଲୋକଟି । ତୀର୍ଥଦର୍ଶନରୁ ଫେରିବା ଯାତ୍ରୀର ହୃଦୟ ନେଇ ଫେରିଲେ । ବାଟରେ ମୋର ପଥପ୍ରଦର୍ଶକ ସ୍କୁଲଶିକ୍ଷକଙ୍କୁ କୌତୂହଳ ଚରିତାର୍ଥ କରିବା ପାଇଁ ଟିକିଏ ଲଘୁମନା ହୋଇ ପଚାରିଲି "ଏ ଇଲାକାରେ ଏତେ ବିଧବା କାହିଁକି ?" ସେ ପାନବରଜ ଆଡ଼କୁ ହାତ ବଢ଼ାଇ କହିଲେ, "ଅଣ୍ଟାଭଙ୍ଗା ହାଡ଼ଭଙ୍ଗା ପରିଶ୍ରମରେ ଏ ପାନବରଜ । ମହଣକିଆ ଜଳକଳସି କାଖରେ କାନ୍ଧରେ ପଚିଶ ପଚାଶ ଫୁଟ ଉଠାଇ ଏତେ ଏତେ ଲତାଙ୍କୁ ବାଲିଆ ଖରାଭୂଇଁରେ ବଞ୍ଚାଇବା କ'ଣ ସହଜ କଥା । ବର୍ଷ ବର୍ଷ ଧରି ସେ ଅମାନୁଷିକ କାମ କରି କେଉଁ ମଣିଷ ବଞ୍ଚିବ ?' ଇଣ୍ଟନଟାଏ ଜାଳି ଅଗଣାରେ ବସିଥାଏ; ପାନବରଜର ସେଇ ଯୁବକଟି ଆସି

ନମସ୍କାର କରି ବିଡ଼ାଏ ପାନ ମୋ ହାତକୁ ବଢ଼ାଇ ଦେଲା । ବଛା ବଛା ମଣିଷ ହୃଦୟପରି ପାନଗୁଡ଼ାକୁ କ୍ଷୀଣ ଆଲୁଅରେ ଓଲଟାଉଁ ଓଲଟାଉଁ ଯୁବକଟିକୁ ତା' ବଂଶାନୁଚରିତ ପଚାରିଲି । ବୁଝିଲି ଯେ ତା' ବାପା, ବଡ଼ବାପା, ଗୋସେଇଁ ବାପା, କକା ଓ ବଡ଼ଭାଇ ସମସ୍ତେ ସେଇ ପାନବରଜରେ ଲୁହଲହୁ ଢ଼ାଳି ଅକାଳରେ ବିଦାୟ ନେଇଛନ୍ତି । ହଠାତ୍ ମୋ ମନରେ ଛନକା ପଶିଲା ଯିମିତି ତା'ର ପିତୃପୁରୁଷଙ୍କ ହୃଦୟଗୁଡ଼ାକ ନେଇ ଖେଳୁଛୁଁ । ଦଣ୍ଡେ ପରେ ପାନଟିଏ ଯେତେବେଳେ ଚୋବାଇ ଦେଲି ମୋତେ ଲାଗିଲା ଯିମିତି ସେଇ ହୃଦୟର ରକ୍ତ ମୋ ଓଠକୁ ଲାଲିକରି ଦେଉଛି । ହଠାତ ମୁହଁ ଧୋଇ ପକାଇ ସେଇ ସ୍ୱର୍ଗତ ଆତ୍ମାଗୁଡ଼ାକ ପାଖରୁ କ୍ଷମାଭିକ୍ଷା କଲି । 'ପାନଗୁଆ ତୋର' ବୋଲି କହି ପାନ ଓ ସମସ୍ତ ସରଞ୍ଜାମ ପାଖ ଗାଡ଼ିଆ ଭିତରକୁ ଫୋପାଡ଼ି ଦେଲି । କେହି ଏବେ ପାନ ଯାଚିଲେ ମୁଁ ସେଇ ଆତ୍ମାମାନଙ୍କ ଉଦ୍ଦେଶ୍ୟରେ ନମସ୍କାର ଜଣାଇ 'ନା' କରେଁ । ପାନ କେହି ଚିରିଲେ ମୁଁ ବୁକୁପଟା ନିଶ୍ୱାସଟାଏ ଅନୁଭବ କରେଁ ।



# ଶ୍ୱେତ ବିପ୍ଳବ

ଢୋରେ ବ୍ରେକ୍ ଦେଇ ପାହାଚ ପାଖରେ ବାସ୍‌ଟା ଛିଡ଼ା ହୋଇଗଲା । କେତେଜଣ ଯାତ୍ରୀ ଓହ୍ଲାଇ ପଡ଼ି ଧାଇଁଲେ ପୂର୍ବମୁହାଁ ହୋଇ । ଭୁବନେଶ୍ୱରରୁ ଫେରୁଥାଏଁ । ଡ୍ରାଇଭର ଓହ୍ଲାଇବାର ଦେଖି ମୁଁ ମଧ୍ୟ ଓହ୍ଲାଇ ଏପାଖ ସେପାଖ ହୋଇ ଟହଲ ମାଇଲି । ଆଖି ପଡ଼ିଲା ସାମନା ରାସ୍ତାକଡ଼ ବଡ଼ ପଟାଖଣ୍ଡିକ ଉପରେ । ପରିଷ୍କାର ଗୋଲ ଗୋଲ ଅକ୍ଷରରେ ଲେଖା ହୋଇଛି ''ଶ୍ୱେତ ବିପ୍ଳବ'' ।

କେତେ ବର୍ଷ ଆଗରୁ ସେମିତି ବର୍ଣ୍ଣବିପ୍ଳବର ଦୁଇ ଟିଏ ଶୁଣିଥିଲି ଏବଂ ଜାଣିଥିଲି, ପିଲାଙ୍କ ପ୍ରଶ୍ନପତ୍ରରୁ । ପ୍ରବନ୍ଧଟିଏ ଲେଖ 'ସବୁଜ ବିପ୍ଳବ' ବା Green Revolution ଉପରେ । ବର୍ଷେ ଦିବର୍ଷ ପରେ ତା'ର ଅର୍ଥ ଜାଣିଲି ଅଧିକ ଖାଦ୍ୟ ଶସ୍ୟ ଉପୁଜାଅ' କଥାଟିରୁ । ଶ୍ୱେତ ବିପ୍ଳବ ପୁଣି କ'ଣ ? ଅଧିକ ଧଳା ଧଳା କୋଠା ତୋଳି ଦେଶକୁ ଧଳା କରିଦିଅ ! ରଣଜିତ ସିଂ କୁଆଡ଼େ କହିଥିଲେ 'ସବ୍ ଲାଲ ହୋ ଯାଏଗା' । ବ୍ରିଟିଶ୍ ଯିବା ପରେ ସବୁ ଧଳା ହୋଇଯିବ ନା କ'ଣ ? ଚାରିଆଡ଼େ ଚାହିଁଲି । ଦେଖିଲି ଖଣ୍ଡେ ଦୂରରେ ଗୋଟାଏ ଚାଳିଆ ତଳେ ବିରାଟ କଡ଼ାଟାଏ ଅଛି, ଯହିଁରେ ଶହ ଶହ ରସଗୋଲା ଭାସୁଛନ୍ତି । ପୁଣି ପାଖ ଚୁଲି ଉପରେ ଆଉ ଏକ ଅତିକାୟ କଡ଼ାରେ ହଜାରକରୁ ଊର୍ଦ୍ଧ୍ୱ ରସଗୋଲା ଉବୁଟୁବୁ ହେଉଛନ୍ତି, କଳକଳ ହୋଇ ଫୁଟନ୍ତ ସିରାରେ । ଏଇ ତେବେ ଶ୍ୱେତ ବିପ୍ଳବର ଇଙ୍ଗିତ, ସୂଚନା,ପ୍ରତୀକ, ଚିତ୍ରକଳ୍ପ, ସନ୍ତକ, ଉଦାହରଣ ? ଭୁବନେଶ୍ୱରରେ ନଡ଼ିଆ କୋରା ଦେଖିଥିଲି ଓଡ଼ିଶା / ଭାରତ / ପୃଥିବୀ / ସଂସାର/ ବିଶ୍ୱ / ବ୍ରହ୍ମାଣ୍ଡ / ଜଗତ୍ ବିଖ୍ୟାତ – ଏ ଗୁଡ଼ାକ ସେମିତି ଦିଶୁଥିଲା ।

ପଳାଶ ପତ୍ର ଠୁଙ୍ଗାରେ ମେଞ୍ଚା ମେଞ୍ଚା ଛେନାପୋଡ଼ (ଆମ ଅଞ୍ଚଳରେ ଛେନାପୋଡ଼ ସେମିତି ଧଳା ରଙ୍ଗ ଦିଶେ ମାତ୍ର ଛେନା କି ସୁଜି କି ମଇଦା ଠଉରାଇ ହୁଏନି) ଏବଂ ସରାମାନଙ୍କରେ ଗଣ୍ଡା ଗଣ୍ଡା ରସଗୋଲା ନେଇ ଫେରୁଥିବା ସ୍ଫୀତବକ୍ଷ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣକୁ କିଛି ନ ବୁଝି ପଚାରିଦେଲି ଶ୍ୱେତ ବିପ୍ଳବ ଆଣିଲେ ?' ମୋର ମୂର୍ଖାମି ଦୂର କରିବାପାଇଁ ସେ କହିଲେ ''ଶ୍ୱେତ ବିପ୍ଳବ ମାନେ ଛେନାପୋଡ଼ ବା ରସଗୋଲା ନୁହେଁ ଶ୍ୱେତ ସହିତ କିଛି ସମ୍ପର୍କ ନାହିଁ । ଏଇ ଦେଖନ୍ତୁ ସେଇ ଘାସଗଛ ଗୁଡ଼ାକୁ, ତା'ର ନାଆଁ ପରା' ଘାସ; ତାକୁ ଇ ଚାଷ କରି ଗାଈକି ଦେଲେ ତା' ମୁହଁରୁ ଧଳା ଦୁଧ ନିଃସାରଣ ହେବ ।'' ମୋର ମନେ

ପଡ଼ିଗଲା, ବୁଝିଗଲି ମଧ୍ୟ, କଥାଟି । ''ଦେ କମାର ଦେ ଦାଆ; କାଟେ ଘାସ, ଖାଉ କାଳୀ ଗାଈ, ଦେଉ ଦୁଧ, ଖାଉ ମିରିଗ ... ଧାଇଁ ଯାଇ ଖାଏ କଲୁରି ବେଣ୍ଟ''-ପିଲାଦିନିଆ, କାହାଣୀ ଗୀତଟି ଗାଇଗଲି । ଟିକିଏ ଆଗକୁ 'ଦୁଗ୍ଧ-ଯୋଗାଣ କେନ୍ଦ୍ର' ଆଉ ମିଲ୍କ ବାର' ବିଜ୍ଞାପନ ଦେଖି ନିଃସନ୍ଦେହ ହେଲି ଯେ ଅନ୍ତତଃ ଯୋଡ଼ାଏ ଜିଲ୍ଲା ଦୁଧ ଦହିରେ ଭାସୁଛି ବନ୍ୟା ଜଳରେ ଭାସିଲା ପରି । ଏବେ ଅବଶ୍ୟ ସେ ପ୍ରଜ୍ଞାପନ, ପଟା କାହିଁକି ପାରା ଘାସ ନାହିଁ; ଆନ୍ଧ୍ର ପ୍ରଦେଶର ଘୁଷୁରି ଚାରଣ କରୁଛନ୍ତି ସେ ସ୍ଥାନରେ ।

ମୁଁ ଟିକେ କାଠୁଆ, ନିପାଣିଆ, ପାହାଡ଼ିଆ ଅଞ୍ଚଳର ଲୋକ । ଆମ ଆଡ଼େ ମଣିଷର ବରଂ କ୍ଷୀର ହବ; ଗାଈର ଦୁଧ ହବନି, ହେଲେ ବି ଅଳ୍ପକେ ଶୁଖିଯିବ । ବନ୍ୟା ନାହିଁ, ଶୁଖିଲା ଠୋ ଠୋ ଇଲାକାଟା ବର୍ଷଯାକ । ଲୋକଗୁଡ଼ାକ ଶୁଖିଲା ଶୁଖିଲା, ମୁହଁରେ ଜ୍ୟୋତି ନାହିଁ; ଗାଲ ଠକରା । ତଥାପି ଗୋଧନ ପ୍ରତି ଆମର ପାରମ୍ପାରିକ ବଂଶଗତ ଲୋଭ ତଥା ସମ୍ମାନ ରହିଛି । ଗୋଷବାପାଙ୍କ ନିଷର ଜମି ଥିଲା, କିନ୍ତୁ ସେ ଚାଷ କରୁ ନଥିଲେ; ମୃତାହରେ ଦାନ ସୂତ୍ରରେ ଗୋରୁ ଗାଈ ଆଣୁଥିଲେ ଯଜମାନ ଘରୁ; ମାତ୍ର ଦୁଇ ପାଉ ନ ଥିଲେ । ତନ୍ତୀକୁ ଚାଷ ଅଦୁଆ ପରି ବ୍ରାହ୍ମଣକୁ ଗୋରୁଗାଈ ଅଦୁଆ । ତାଙ୍କୁ ତ ବାରବ୍ରତ ବିବାହ ଶ୍ରାଦ୍ଧାଦିରେ ଘିଅ ଦହି ଦୁଧ ଭୋଜନ ଜରିଆରେ ମିଳି ଯାଉଥିଲା ! ଗାଈ ଗୋବର ପାଇଁ, ଗୋବର ବିକିବା ପାଇଁ, ଚାଷ ପାଇଁ ଜାଳ ପାଇଁ ନୁହେଁ । କାଠ ପ୍ରଚୁର ତ ହାତ ପାଆନ୍ତାରେ ସେବେ ଥିଲା, ପୋଖରୀ ହୁଡ଼ାକୁ ଲାଗି ।

ବାପାଙ୍କ ଅମଳରେ ଗୋଜାତିର ଭାଗ୍ୟରେ ସାମାନ୍ୟ ଉନ୍ନତି ହେଲା । ରୋଷେଇ ଘରକୁ ଲାଗି ଗୁହାଳ ଘରଟିଏ ହେଲା । ପିଲାଦିନେ ଏକ ଦୁଇ କରି ଗଣିଛି ଗାଈବାଛୁରୀ ବଳଦ ମିଶି ଚଉଦ ମୁଣ୍ଡ । ବର୍ଷେ ବର୍ଷେ ଏକାବେଳକେ ପାଞ୍ଚଟା ଗାଈ ଦୁହାଳ ହୋଇଥିଲେ । ମୁଁ ନିଜେ ବିଲରୁ କଙ୍କଡ଼ା ଘାସ (ବାଛୁରୀଙ୍କ ଭାରି ପ୍ରିୟ) ପାଛିଆ ପାଛିଆ ଆଣି ଟିକି ଟିକ ବାଛୁରୀଙ୍କି ଖୁଆଇଛି । ବଡ଼ି ଭୋର ସଖାଳୁ ବାପା ଉଠି ଚୁରୁକ ଚୁରୁକ କରି ଗୋଟାଏ ଛୋଟ ପିତଳ ଲୋଟାରେ ଛଅ ଛଟାଙ୍କି ଯାକେ ଦୁଧ ଦୁହିଁ ପାରିଥିବାର ଗର୍ବ ମାଆ ଆଗରେ ପ୍ରକାଶ କରୁଥିବାର ମୋର ମନେ ଅଛି । ହେଲେ ଆଷାଢ଼-ଶ୍ରାବଣର ବାଛୁରୀଗୁଡ଼ାକ ଫଗୁଣ ବେଳକୁ ଗୁହାଳରେ ନଥାନ୍ତି । ତାଙ୍କ ମାଆମାନଙ୍କର ପତ୍ମା ବି ଦେଖିବାକୁ ମିଳେନି । ମାଆକୁ ଦିନେ ପଚାରିଲି, ''ମାଆ ! ଆମ ଗାଈଗୋରୁଙ୍କ ଦିହ ହେଉନି ସେମାନେ ଦୁଧ ଦେଉ ନାହାନ୍ତି କାହିଁକି ?'' ମାଆ ଅଳ୍ପ ହସି କହିଲା ''ତୋ ବାପାଙ୍କ ପରା ସିଂହରାଶି । ସିଂହ ଆଉ ଗାଈ ଏକାଠି ରହି ପାରିବେ ?

ବାପା ଆମ କଥୋପକଥନ ଦାଣ୍ଡ ମେଲାରେ ବସି ଶୁଣୁଥିଲେ । ବାହାରି ପଡ଼ି ମାଆକୁ ଉତ୍ତର ଦେଲେ ''ତୋ ଭାଇର (ମୋ ମାମୁଁ, ତାଙ୍କ ଶଳା) ଗୁହାଳ ଅବସ୍ଥା କେଉଁ ଭଲ କି ? ମୋର ସିଂହ ରାଶିକୁ ତା'ର ପରା ଷଣ୍ଢ ରାଶି । ଷଣ୍ଢ ରାଶି ଗାଈ ସହିତ ଭଲ ମେଳ ହେବା

କଥାଟି କାହିଁ ଆମର ଯାହା ତାଙ୍କର ବି ସେଇୟା । କାଲିତ – ମୁଁ ନିଜ ଆଖିରେ ଦେଖି ଆସିଛି । ବଡ଼ ଭାଇ (ତୋ ଭାଇନା) କେମିତି ବିଚିତ୍ର ବୁଦ୍ଧିରେ ଦୁଧ ଦୁହୁଁଥିଲେ ।''

ବାପା କହି ଚାଲିଲେ ''ଗଲା ଶନିବାର ହାଟରୁ ସେ ଗାଈଟିଏ କିଣିଛନ୍ତି । ତିରିଶି ଟଙ୍କାରେ । ପେଟେ ଉଞ୍ଚ, କାଳୀ ଗାଈ, ପେଜକୁଣ୍ଡା ଖାଇ, ଶାସ୍ତ୍ରସମ୍ମତ ଦୁଧିଆଳି ଗାଈଟି ତାଙ୍କ କହିବା ମୁତାବକ, କାଳେ ମାଛିମାନେ ଗାଈ କି ଦୁଧ ଦେବାରେ ବାଧା ଦେବେ ସେଥିପାଇଁ ଭୋର ସକାଳେ ଦୁଧଦୁହାଁ କାମ ଆରମ୍ଭ କରୁଥିଲେ । ଭାଇ ଦାନ୍ତପତ୍ର ଘଷି କଡ଼ାପାନ ଖିଲେ କଳରେ ଚାକି ପ୍ରସ୍ତୁତ ହୋଇ ବସିଥାନ୍ତି । ଉଚ୍ଛବ (ଗାଈଦୁହାଁଳି) ଆସିଯାଏ । ପିଲାଙ୍କ ମାମୁ କଚ୍ଛାଭିଡ଼ି ବାହାରି ପଡ଼ନ୍ତି, ଡାଳଟିଏ ଧରି । ଖୁଣ୍ଟରୁ ଗାଈ ଫିଟାଇ ଢିଙ୍କିଶାଳକୁ ଅଣାଯାଏ । ଘରର ମଝି ଖୁଣ୍ଟରେ ଗାଈ ବେକକୁ ବନ୍ଧା ହୁଏ ଖୁବ୍ ଆଣ୍ଟରେ । ଆଗ ଦୁଇ ଗୋଡ଼ରୁ ଗୋଟାକୁ ଦହିମୁହାଁ ଖୁଣ୍ଟରେ ଅନ୍ୟଟାକୁ ଗାଈ ବନ୍ଧା ଖୁଣ୍ଟରେ ବନ୍ଧାଯାଏ । ପଛ ଦି' ଗୋଡ଼କୁ ଗାଈ ଛାନ୍ଦଣିରେ ବନ୍ଧା ହେଲେ ମାଇଁ ଆସିଯାନ୍ତି ସୋରିଷତେଲ ମାଳପା ଗିନା ଓ ପାଣିକଂସା ଧରି । ବାଛୁରୀ ଛଡାଯାଏ, କାଳେ ବେଶୀ ଦୁଇ ଢୋକ ପିଇଯିବ ବୋଲି ମାମୁ ନଇଁ ପଡ଼ି ଚାହିଁଥାନ୍ତି ଗାଈ ଚିରକୁ । ପହ୍ନାଇଲା ବେଳଜାଣି ବାଛୁରୀକି ଟାଣି ଆଣି ଢିଙ୍କି ଲାଞ୍ଜରେ ବାନ୍ଧିଦେଇ ନିଜେ ଠେଙ୍ଗା ହାତରେ ଚାରପିଟ ବୁଲାଚଲା କରନ୍ତି, କାଳେ ଗାଈ ମୁଣ୍ଡ ହଲାଇବେ । ଉଚ୍ଛବ ଆରମ୍ଭକରେ ପହ୍ନାରେ ତେଲପାଣି ଥରକୁ ଥର ଦେଇ । ପୁଣି ବାଛୁରୀ ଛଡାଯାଏ ପୁଣି ବନ୍ଧାଯାଏ, ପୁଣି ଦୁହାଁଯାଏ । ତୋ ଭାଇର ଖୁବ୍ ଆନନ୍ଦ ଓ ଗର୍ବ ଯେ ସେ ଗାଈକୁ ଜବ୍‌ଦକରି, ମଣ କରି ପାରିଛନ୍ତି । ଲୋଟାକୁ ଚାହିଁ ଦେଖିଲି ଛଅଛଟାଙ୍କି ଅନ୍ଦାଜ କ୍ଷୀର । ମାମୁଁ କହନ୍ତି 'ବଟ ଅଠା ପରି କ୍ଷୀର, ଗୁଡଠୁଁ ବଳି ମିଠା କୁଆଡ଼େ ।' ଆଉ ଥରେ ଗଲେ ମୁଁ ତାକୁ ପଚାରିବି ସେ ଗୋ କ୍ଷୀର ନା ଗୋରକ୍ତ ପିଉଛନ୍ତି ।'

ମାମୁଁ ବାପାଙ୍କ ଅମଳରେ ଯେଉଁ ଶ୍ୱେତ ବିପ୍ଳବର ସୂତ୍ରପାତ ହୋଇଥିଲା ତାହାର ପ୍ରଗତି ବ୍ୟାହତ ହେଲା ମୋ ଅମଳରେ । କାରଣ ଚାକିରୀଯୁଗ ସେତେବେଳକୁ ଆରମ୍ଭ ହୋଇଯାଏ; ଆଉ ଘରେ ବସି ବିଲବାଡ଼ି ଗୋରୁଗାଈ କାମଧନ୍ଦାରେ ମଜି ବୈଦେହୀଶବିଳାସ ପାଠର ଅବକାଶ ମୋ ଅମଳରେ ରହିଲା ନାହିଁ । ନୂଆ ଗୀତ ହେଲା ଧନ୍ୟ ଧନ୍ୟରେ ମନ କଳିକାଳ,....ସଙ୍ଗେଘେନି ଦୋଚାରି ଫେରିଲେ କାଶୀଗୟା ନୀଳାଚଳ ।'' ସହର ଜାଗାକୁ ଆସିବା ମାତ୍ରେ ଘରଟିଏ କରିବାର ଲୋଭ ଜନ୍ମିଲା । ଛୁଆ ପିଲା ହେଲେ । ତାଙ୍କୁ ପାଳିବା ପାଇଁ ସ୍ତ୍ରୀଙ୍କ କ୍ଷୀର ଯଥେଷ୍ଟ ହେଉଥିଲେ ମଧ ମୋର ଟିକିଏ ଅଧିକା ଦରକାର ପଡ଼ିଲା ଝାଳନାଳର କ୍ଷତିପୂରଣ ପାଇଁ । ମୋର ମୀନ ରାଶି; ସ୍ତ୍ରୀ ଙ୍କର ମଧ । ଗାଈଟିଏ ଅଠେଇଶି ବାରଣା ଦେଇ ଜଣେ ହୋଟେଲ ବାଲା ପାଖରୁ କିଣିଲି । ଦାମକୁ ଚାହିଁ ମନ୍ଦ କ୍ଷୀର ଦେଲାନି । ହେଲେ ଟିକିଏ ମରଦମୁହାଁ ଗାଈଟା; ଯେ ଦେଖିଲା ପଚାରିଲା ''ଏଟା ଗୋରୁ ନା ଗାଈ ?'' ତାକୁ ବିକି ବଳଦ କରି ଅନ୍ୟ ଜୀବଟିଏ କିଣିଲି । ଯାହାର ସ୍ତ୍ରୀ ଅଛି ତାକୁ ବା ତାର

ପିଲାଝିଲାଙ୍କୁ ଦୁଧର ଅଭାବ ବାଧିବ ନାହିଁ । ଦୁହିତା ବା ଗୃହିଣୀ ନାହିଁ ତ ଦୁଧ ବା ଗୃହ ଆଶା ରଖିବ ନାହିଁ । ଏ ଗାଈ କ'ଣ, ଆଉ ଯେତେ ଯେତେ ଗାଈ ତାପରେ କିଣିଲି ସମସ୍ତଙ୍କୁ ସେ ଆମ ସହିତ ସୁନ୍ଦର ଚଳାଇ ନେଲେ । ନିଜେ ଗର୍ଭିଣୀ ଥିଲେ ମଧ୍ୟ ଖରାବର୍ଷାରେ ବାଡ଼ିରୁ ଘାସକାଟି, କୁଡୁଚି ରାନ୍ଧି ଗାଈଙ୍କି ଖୁଆଇଲେ ଗୋଟାକୁ ଗୋଟା ବାଡ଼ିର ଲାଉ ମଧ୍ୟ କାଟି ସେଥିରେ ପକାଇଲେ । ଆମର ଉଣା ହବ, ଗାଈ ବାଛୁରୀର ଉଣା ସେ ସହିବେ ନାହିଁ । ଦୁଧ ବଳକା ହେଲା । ଦହି ଦୁଧ ଲହୁଣୀ ଛେନା ଘିଅରେ ଘରଦ୍ୱାର କ'ଣ ସ୍ତ୍ରୀଙ୍କ ଦିହ ବି ବନ୍ଧେଇଲା ।

ଯାପରେ ଦୁର୍ଭାଗ୍ୟ, ଦୁର୍ବିପାକ । ଦୁଇପଡୋଶୀଙ୍କ ଘରକୁ କ୍ଷୀର ବିକିବାକୁ ଆରମ୍ଭ କରିଛି କାହା ଦୁର୍ବୁଦ୍ଧିରେ କେଜାଣି ବାଛୁରୀଟା । ଅକସ୍ମାତ୍ ଦୁଇ ଘଣ୍ଟା ଭିତରେ ମରିଗଲା, ବଢବଢିଆ ରୋଗ । ଦୁଧ ବିକିବାକୁ ସ୍ତ୍ରୀ ମନା କରୁଥିଲେ । ମୁଠାଏ ଘାସ ଉପାଡ଼ି ଆଣି ତା ମୁହଁରେ ଦେଇ ଛିଡ଼ା ହୋଇ ରହିଛି ଦଣ୍ଡେ ପରେ ଦେଖୁଁ ଦେଖୁଁ ଡୋଳାଓଲଟାଇ ବାଛୁରୀଟି ଚାଲିଯିବା ଦୃଶ୍ୟ ଏବେ ବି ଦିଶିଯାଉଛି । ବାପା ପାଖରେ ଥିଲେ । କହିଲେ ଚରାମରା ଜାତି ମରିଗଲେ କାନ୍ଦିବା କଥା ନୁହେଁ ।

ନୂଆ ଘରଟିକୁ ମନ ମାଫିକ ସଜାଇ ଫୁଲ ଫଳରେ ପ୍ରାଚୁର୍ଯ୍ୟ ଭିତରେ କର୍ମ ନିପୁଣା ଗୃହିଣୀ ଓ ପିଲାଝିଲାଙ୍କୁ ଧରି ପାଞ୍ଚୋଟି ବର୍ଷ କଟି ଯାଇଛି କି ନାହିଁ ଭଗବାନଙ୍କର (ଡି.ପି. ଆଇଙ୍କର) ଦିହ ସହିଲା ନାହିଁ । ପାଜି ଚିତ୍ରଗୁପ୍ତଙ୍କ ରିପୋର୍ଟରେ ସେ ଦୁନିଆର – ଏ ପାଖରୁ ସେ ପାରିକୁ ଆମକୁ ବଦଳ କରିଦେଲେ । ଗାଈ ବାଛୁରୀ ଗାଁକୁ ଚାଲିଗଲେ ସେଇ ଗୁହାଳକୁ ଯେଉଁଠି ବାପାଙ୍କ ଅମଳରେ ପାଞ୍ଚ ଗାଈରୁ ପାଞ୍ଚଛଟାଙ୍କି କ୍ଷୀର ବାହାରୁଥିଲା । ପାରା କୁକୁଡା ବିରାଡି ଇଏ ସିଏ ନେଇଗଲେ । କୁରୀଟିକି ମଧ୍ୟ ଜଣେ ମୁସଲମାନ ପଡୋଶୀ ଦୟାକରି ନେଇଗଲେ । ସେଇ କୁରୀଟି ଗାଈଗୋରୁ ଡେଙ୍କିଶାଳ ଜଗୁଥିଲା ମୋର ।

ନୂଆ ସ୍ଥାନଟି ଆମକୁ ଖୁବ୍ ଅସ୍ୱାସ୍ଥ୍ୟକର ବୋଧହେଲା ଏବଂ ଦୁଃଖ ସୀମା ରହିବ ନାହିଁ ବୋଲି ଜଣାଗଲା । ପ୍ରଥମେ ପାଣି, ଏ ପାଣି, ଖୁବ୍ ହାର୍ଡ, ଏତେ ହାର୍ଡ ଯେ ଦୁଧରେ ମିଶାଇଲେ ଦୁଧ ଛିଡିଗଲା । ଜଳବାୟୁ କେବଳ ଆମାଶୟ, ରକ୍ତାମାଶୟ ପାଇଁ ଅନୁକୂଳ ପ୍ରଶସ୍ତ । ତେବେ ଦୁଧ କୁଆଡ଼େ ଖୁବ୍ ପ୍ରଚୁର ଓ ଶସ୍ତା । ସେର ପ୍ରାୟ ଆଠ ଦଶଣା ପଡୁଛି । ଦୁଧ ଶରୀର ପକ୍ଷରେ ହିତାକରକ ଭାବି କିଛିଦିନ ବେଶ୍ ପିଇଲୁଁ । କିମିତି ଟିକେ ଗନ୍ଧାଏ ମାତ୍ର । ବହଳ ଦୁଧ ଏମିତି ଗନ୍ଧାଇପାରେ ଧରିନେଲୁଁ । ଦିନେ କାମକୁ ଯାଇଛି ଦେଖିଲି ମେଣ୍ଢା ଛେଳି ଗାଈ ଗୋଠ ଭିତରେ ଗୁଡ଼ାଏ କଳା କଳା ପିଲା ଛୋଟ ଛୋଟ ନଡ଼ିଆତେଲ ଖାଲି ଡବା ଧରି ଛେଳି ମେଣ୍ଢା ମାନଙ୍କ ପାଖରୁ ମହୁମାଛି ଫୁଲରୁ ଫୁଲ ଉଡି ମହୁ ସଂଗ୍ରହ କଲାପରି ଦୁଗ୍ଧ ସଂଗ୍ରହ କାର୍ଯ୍ୟରେ ବ୍ୟାପୃତ । ମାମୁଁଙ୍କ ଗାଈଦୁହାଁର ଉନ୍ନତ ପ୍ରଣାଳୀ ପ୍ରୟୋଗ କରୁଛନ୍ତି । ପଛଗୋଡ଼ ଦୁଇଟା ଜଣେ ଟେକିଧରେ, ଆଉ ଜଣେ ପହ୍ନାର ଚରି ଟଣାଟଣି କରି ଟୋପାଏ ଦିଟୋପା ସଂଗ୍ରହ କରେ । ଟୋପାଏ ଟୋପାଏ ପାଣି ମିଶି ସମୁଦ୍ର ହେଲା ପରି ଏଇ ଟୋପାଏ

ଛେଳି/ମେଣ୍ଢା ଦୁଧରେ କେଉଁ ଦୁଧବିକାଳୀର ଗରା ଭରତି ହୋଇଯାଏ ଏବଂ ଆମେ ତାକୁଇ ଶସ୍ତାରେ ଖାଣ୍ଟି ଗାଇ ଦୁଧ ଆକାରରେ ଆନନ୍ଦରେ ସେବନ କରୁଥାଉଁ । ବରାଦ କଲେ ଶସ୍ତାରେ ଲହୁଣି ଘିଅ ମଧ ମିଳେ । ମତେ ଜଣାଗଲା ଘୁଷୁରି, ଗଧ ଆଦିର କ୍ଷୀର ଦୁହିଁ ଏ ପିଲାଏ ମତେ ଦଉଛନ୍ତି ।

ଆଉ ବଜାରରୁ କ୍ଷୀର କିଣିବି ନା ନାହିଁ ଠିକଣା କରିବାକୁ ଯାଇଛି ହଷ୍ଟେଲର ଅପ୍‌ପା ରାଓ ଆସି ପଚାରିଲା "ସାର୍ ଆପଣଙ୍କ ଆଗରେ କ୍ଷୀର ଦୁହିଁ କରି ଦବ ଜଣେ କହୁଛି, ଆଣିବେ ?" ମୁଁ ଖୁବ୍ ସନ୍ଦେହୀ ହୋଇ ଯାଇଥିବାରୁ କହିଲି " ତାକୁ କହି ମୁଁ ନିଜେ କାଲି ସକାଳେ ଯିବି; ଦେଖିବା ପରେ ଜବାବ୍ ଦେବି ।"

ପରଦିନ ସକାଳେ ନୂଆ ଦୁଧ କେନ୍ ଧରି ଗାଇଆଳ ଘରେ ପହଞ୍ଚିଲି । ମୋତେ ଖଟିଆ ଖଣ୍ଡେ ଦେଇ ସେ କହିଲା, "ବାବୁ, ଦଣ୍ଡେ ରହ, ପୁଅଟା ଆସୁ, ବାଛୁରୀ ଆଣିବ ।" ଅଧ ଘଣ୍ଟାଏ ଗଲା; ପୁଅ ବା ବାଛୁରୀର ଦେଖା ନାହିଁ । ମୁଁ ଭାବିଲି ବାଛୁରୀଟାକୁ ଚରେଇବା ପାଇଁ ଦୂରକୁ ପୁଅ ନେଇ ଯାଇଥିବ । ଅବଶେଷରେ ପୁଅ ଫେରିଲା । ବାପ ପୁଅକୁ ହୁକୁମ କଲା "ବାବୁ କେତେବେଳୁ ବସିଲେଣି; ଯାଆ ଶୀଘ୍ର ବାଛୁରୀଟାକୁ ଆଣ ।" ପୁଅ ଉଦଣ୍ଡେ ଡାବୁଆ ଘର ଉପରକୁ ଯାଇ ବାଛୁରୀ ଆଣିଲା । ଇଏ କ'ଣ ? ପାଳ ବିଡ଼ାକ ଉପରେ ବାଛୁରୀ ଚମଡ଼ା; ଆଖି ଚିତ୍ର କରା ହୋଇଛି, ଚାରିଟା କାଠିରେ ଗୋଡ଼ ତିଆରି ହୋଇଛି । ମୁଁ ସାଙ୍ଗେ ସାଙ୍ଗେ ରାଇଟ ଏବାଉଟ ଟର୍ଣ୍ଣ ନ କରି ସମଗ୍ର ପ୍ରକ୍ରିୟା ଦେଖିଲି । ଗାଇଗୁଡ଼ାକ ଏତେ ବୋକୀ ଯେ ମଲା ଜୀଅନ୍ତା ପିଲାଙ୍କ ପ୍ରଭେଦ ଜାଣନ୍ତି ନାହିଁ; ଛୁଆଙ୍କ ଏତେ ଶରଧା ଯେ କୁଟା ବିଡ଼ାକୁ ବାଛୁରୀ ଭାବି ଦୁଧ ପନ୍ହେଇବେ !"

ମୋ ସ୍ତ୍ରୀଙ୍କୁ ଏ ଉପାଖ୍ୟାନ କହନ୍ତେ ସେ ବହେ ହସିଲେ । କହିଲେ, "ତୁମେ ବ୍ୟସ୍ତ ହୁଅନି ଭଗବାନଙ୍କ ଦୟାରୁ ସାତ ସାତୁଟା ପିଲା ଝିଲାଙ୍କୁ ପେଟ ପୁରା ଦୁଧ ଦେଇ ବଢ଼ାଇଛି ଦିନେ ଗାଇକ୍ଷୀର ଦେଇନି । ଏଇଟାକୁ ବି ସେମିତି ବଢ଼ାଇ ନେବି । ତୁମେ ଚିନ୍ତା କରନି ।"

ତାଙ୍କର ଏ ନିର୍ଭର କଥା ସତ୍ତ୍ୱେ ମୋ ଭାଗ୍ୟକୁ ଗାଇଟାଏ ଜୁଟିଲା । ବୁଢ଼ୀଟିଏ ଅସ୍ଥି ଚର୍ମସାର, ଛଅ ସାତ ବାଛୁରୀର ମାଆ । ତଥାପି ପହ୍ଲା ଏମିତି ଫୁଲିଛି ଯେ ଚେହେରା ସହିତ ଅସାମଞ୍ଜସ୍ୟ ଦେଖିବାକୁ ଅନେକ କୌତୂହଳୀ ସହକର୍ମୀ  ଧାଇଁଲେ । ଦାମ ଅଠାନବେ ଟଙ୍କା; ପରଦିନ ସକାଳେ କ୍ଷୀର ପାଇଲି ଅନ୍ଦାଜ ଦେଢ଼ସର ।

ଯେଉଁମାନେ ସେକ୍‌ସପିଅରଙ୍କ ଟ୍ରେଜେଡି ପଢ଼ିଛନ୍ତି ସେମାନେ ବେଶ୍ ଜାଣନ୍ତି ଯେ ତୃତୀୟ ଅଙ୍କରେ ନାୟକର ଭାଗ୍ୟ ଏକ ଶୀର୍ଷକରେ ପହଞ୍ଚେ ଏବଂ ତା' ପରେ ଟ୍ରେଜେଡି ଆଡ଼କୁ ଗତି କରେ । ମୋ ଜୀବନର ଶ୍ୱେତ ବିପ୍ଳବର ଟ୍ରେଜେଡ଼ି ଏଇଠାରେ ଆରମ୍ଭ ହେଲା । ଏକ ଆକସ୍ମିକ ଦୁର୍ଘଟଣାରେ ମୋ ସ୍ତ୍ରୀ ଜୀବନାବସାନଘଟିଲା । ଯେଉଁଦିନ ଏକଥା ହେଲା ସେଦିନ ରାତି ଦେଢ ବର୍ଷର ପିଲାକୁ ଛାତିରେ ଚାକି ଶୁଆଇ ଥିଲାବେଳେ ଭୋକ ଜ୍ୱାଳାରେ

ସେ ସେତେ ବେଳେ ମାଆ ମାଆ ଡାକି ଦୁଧ ଅଣ୍ଡଳିଲା ମୁଁ ସ୍ରଷ୍ଟାକୁ ଦାରୁଣ ଅଭିଶାପ ଦେଲି । ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିରେ ପାର୍ବତୀଙ୍କି ଯେମିତି ଗୋଟିଏ ସ୍ତନ ଦିଆ ଯାଇଛି ଅପରଟି ଯଦି ଶିବଙ୍କୁ ଦିଆଯାଇଥାନ୍ତା ଗଣେଶ ବା କାର୍ତ୍ତିକ ମାଆ ନଥିଲା ବେଳେ କନ୍ଦାକଟା କରନ୍ତେ ନାହିଁ କ୍ଷୀର ପାଇଁ । ବାପା ବେଣ୍ଟି ଧରାଇ ଦେଇ ତୁନି ହୋଇ ସାଙ୍ଗେ ସାଙ୍ଗେ ଶୋଇଯାଆନ୍ତେ ।

ତା' ପରେ ପୁଣି ଦୈବ (ଡି.ପି. ଆଇ.) ବଦଳି କଲା; ଏଥର ମଧ୍ୟ ଓଡ଼ିଶାକୁ । ପୁଣି ଗଣ୍ଠିଲି ବାନ୍ଧି ବାଲବଚ୍ଚା ଧରି ଘର ଖୋଜ, ଦୁଧ ଖୋଜ । ବୁଢ଼ୀ ଗାଈଟିକି ଦେଇ ଆସିଲି ଏସିଷ୍ଟେଣ୍ଟ ସୁପରିଣ୍ଟେଣ୍ଡେଣ୍ଟଙ୍କୁ । ଛଅମାସ ପରେ ମୋତେ ଚାଳିଶିଟି ଟଙ୍କା ମନିଅର୍ଡ଼ର କରି ସେ ପଠାଇ ଥିଲେ । ମୁଁ ସେଇ ଟଙ୍କାରେ ଆଉ ତିରିଶି ଟଙ୍କା ମିଶାଇ ଯେଉଁ ଟେବୁଲ୍ ଫେନ୍‌ଟି କିଣିଥିଲି ତାହା ବୁଢ଼ୀ ଗାଈଟିପରି ମୋ ପାଖରେ ରହିଛି । କ୍ଷୀର ବଦଳରେ ପବନ ଦେଉଛି ।

ନୂଆ ସ୍ଥାନରେ ପୁଣି ମୁର୍ଖାମୀରେ ଗାଈ ରଖିଲି । ଅବସରରେ ତାକୁ ପଡ଼ିଆରେ ଚରାଇଲି ମଧ୍ୟ । ଏତିକି ମୋ ମୁଣ୍ଡରେ ପଶିଲା ନାହିଁ ଯେ ଗୋପୀ ନ ଥିଲେ ରାଇ ନାହିଁ କି ମାଈ ନଥିଲେ ଗାଈ ନାହିଁ । ଯାହାର ସ୍ତ୍ରୀ ନଥିବ ସେ ଯଦି ପୋଲିସ ଚାକିରୀ କରୁ ନ ଥିବ ବା ବୋଡିଂ ଓ ଜେଲ ସୁପରିଣ୍ଟେଣ୍ଡେଣ୍ଟ୍ ହୋଇ ନଥିବ ସେ ଗାଈ ରଖି ପାରିବ ନାହିଁ । ଛଅ ମାସରେ ମୋର ଅଜ୍ଞତା ଓ ଅନଭିଜ୍ଞତାରୁ ପ୍ରଥମ ଗାଈଟି ମଲା । ମୁଁ ମାରି ଦେଇ କହିବା ଠିକ୍ ହେବ । ଜିଦ୍‌ରେ ପୁଣି ଗୋଟିଏ ରଖିଲି । ଦୁଇଶହ ଅଠାବନ ଟଙ୍କାରେ; ମୁଁ ମାତ୍ର ତିନି କିଲୋ କ୍ଷୀର ପାଇଥିଲି ତାଠୁଁ ।

ଭାଗ୍ୟକୁ ସେତିକିବେଳେ ଫୁଲନଖରାରେ ଯେଉଁ ଶ୍ୱେତ ବିପ୍ଳବର ସୂତ୍ରପାତ ହୋଇଥିଲା ତାହା ମଧ୍ୟ ଓଡ଼ିଶାକୁ ପ୍ରସରିଲା ଏବଂ ସହର ନିକଟରେ ସେଇ ପାରା ଘାସ ସହିତ ଯୋଗାଣ କେନ୍ଦ୍ରଟିଏ ଖୋଲିଲା । କାର୍ଡ଼ ପାଇଁ ଧରାଧରି କରି ଖଣ୍ଡିଏ ପାଇଲି ଗୋଟିଏ ଲିଟରର । ନିଜେ ଯାଇ ଆଣିବାକୁ ହବ ।

କପାଳକୁ ଚୈତନ ବୋଲି ପିଲାଟିଏ ଆସି ଜୁଟିଲା । ମୋର ଇଲାକାର ପିଲାଟି, ମଫସଲର, ଏକାନ୍ତ ଗରିବ ଘରର । ସୁନ୍ଦର ଚେହେରା ମୋରି ପୁଅଝିଅମାନଙ୍କ ରଙ୍ଗର । କେତୁଟା ଦିନରେ ମୋ ପରିବାରରେ ମିଶିଗଲା । ରୋଷେଇ ବାସେଇ, ବଜାର ସଉଦା କରବାଠୁ ଆରମ୍ଭ କରି ଯାବତୀୟ ପୁରୁଷ ସ୍ତ୍ରୀ ସାଧ୍ୟ କାମ ସେ ଏମିତି କରିପାରିଲା ଯେ ଆମେ ଜୀବନର ବିରାଟ କ୍ଷତି ଓ ଅଭାବକୁ କ୍ରମେ ଭୁଲି ଗଲୁଁ । ଅସାବଧାନତାରେ ସେ ସାଇକେଲଟାଏ ବି ହଜାଇ ଦେଲା । ପୁଅ ହଜାଇ ଥିଲେ ଭର୍ତ୍ସନା କରିଥାନ୍ତି, ମାରିଥାନ୍ତି ହୁଏତ । ତାକୁ କିଛି କହିଲି ନାହିଁ । ଫ୍ରିଜ, କାଇଗେସ, ଫିଲ୍‌ଟର, ପ୍ରେସର କୁକାର ଆଦି ଯନ୍ତ୍ରପାତିର ସହଜରେ ଅଳ୍ପ ଦିନରେ ବ୍ୟବହାର ପ୍ରଣାଳୀ ଶିଖିଗଲା । ମୋ ପିଲାଙ୍କ ସାର୍ଟ ପେଣ୍ଟ ପିନ୍ଧି ବଜାରକୁ ଦୁଧ କେନ ନେଇ ଯାଇଥିଲାବେଳେ ମୋତେ ମୋ ପୁଅ ଯାଉଛି ପରି ଜଣାଯାଏ । ଖୁବ୍ ବିଶ୍ୱସ୍ତ ପ୍ରଭୁଭକ୍ତ ପିଲାଟି । କିନ୍ତୁ ବୟସର ଦୋଷ ଆଉ ପ୍ରେମ ରୋଗ

ଛେଳି/ମେଣ୍ଢା ଦୁଧରେ କେଉଁ ଦୁଧବିକାଳୀର ଗରା ଭରତି ହୋଇଯାଏ ଏବଂ ଆମେ ତାକୁଇ ଶସ୍ତାରେ ଖାଣ୍ଟି ଗାଈ ଦୁଧ ଆକାରରେ ଆନନ୍ଦରେ ସେବନ କରୁଥାଉଁ । ବରାଦ କଲେ ଶସ୍ତାରେ ଲହୁଣି ଘିଅ ମଧ ମିଳେ । ମତେ ଜଣାଗଲା ଘୁଷୁରି, ଗଧ ଆଦିର କ୍ଷୀର ଦୁହିଁ ଏ ପିଲାଏ ମତେ ଦଉଛନ୍ତି ।

ଆଉ ବଜାରରୁ କ୍ଷୀର କିଣିବି ନା ନାହିଁ ଠିକଣା କରିବାକୁ ଯାଇଛି ହଷ୍ଟେଲର ଅପ୍‌ପା ରାଓ ଆସି ପଚାରିଲା "ସାର୍ ଆପଣଙ୍କ ଆଗରେ କ୍ଷୀର ଦୁହିଁ କରି ଦବ ଜଣେ କହୁଛି, ଆଣିବେ ?" ମୁଁ ଖୁବ୍ ସନ୍ଦେହୀ ହୋଇ ଯାଇଥିବାରୁ କହିଲି " ତାକୁ କହି ମୁଁ ନିଜେ କାଲି ସକାଳେ ଯିବି; ଦେଖିବା ପରେ ଜବାବ୍ ଦେବି ।"

ପରଦିନ ସକାଳେ ନୂଆ ଦୁଧ କେନ୍ ଧରି ଗାଈଆଳ ଘରେ ପହଞ୍ଚିଲି । ମୋତେ ଖଟିଆ ଖଣ୍ଡେ ଦେଇ ସେ କହିଲା, "ବାବୁ, ଦଣ୍ଡେ ରହ, ପୁଅଟା ଆସୁ, ବାଛୁରୀ ଆଣିବ ।" ଅଧ ଘଣ୍ଟାଏ ଗଲା; ପୁଅ ବା ବାଛୁରୀର ଦେଖା ନାହିଁ । ମୁଁ ଭାବିଲି ବାଛୁରୀଟାକୁ ଚରେଇବା ପାଇଁ ଦୂରକୁ ପୁଅ ନେଇ ଯାଇଥିବ । ଅବଶେଷରେ ପୁଅ ଫେରିଲା । ବାପ ପୁଅକୁ ହୁକୁମ କଲା "ବାବୁ କେତେବେଳୁ ବସିଲେଣି; ଯାଆ ଶୀଘ୍ର ବାଛୁରୀଟାକୁ ଆଣ ।" ପୁଅ ଉଦଣ୍ଡେ ଡାବୁଆ ଘର ଉପରକୁ ଯାଇ ବାଛୁରୀ ଆଣିଲା । ଇଏ କ'ଣ ? ପାଳ ବିଡ଼ାକ ଉପରେ ବାଛୁରୀ ଚମଡ଼ା; ଆଖି ଚିତ୍ର କରା ହୋଇଛି, ଚାରିଟା କାଠିରେ ଗୋଡ଼ ତିଆରି ହୋଇଛି । ମୁଁ ସାଙ୍ଗେ ସାଙ୍ଗେ ରାଇଟ ଏବାଉଟ ଟର୍ଣ୍ଣ ନ କରି ସମଗ୍ର ପ୍ରକ୍ରିୟା ଦେଖିଲି । ଗାଈଗୁଡ଼ାକ ଏତେ ବୋକୀ ଯେ ମଲା ଜୀଅନ୍ତା ପିଲାଙ୍କ ପ୍ରଭେଦ ଜାଣନ୍ତି ନାହିଁ; ଛୁଆଙ୍କ ଏତେ ଶରଧା ଯେ କୁଟା ବିଡ଼ାକୁ ବାଛୁରୀ ଭାବି ଦୁଧ ପହ୍ନେଇବେ !"

ମୋ ସ୍ତ୍ରୀଙ୍କୁ ଏ ଉପାଖ୍ୟାନ କହନ୍ତେ ସେ ବହେ ହସିଲେ । କହିଲେ, "ତୁମେ ବ୍ୟସ୍ତ ହୁଅନି ଭଗବାନଙ୍କ ଦୟାରୁ ସାତ ସାତୁଟା ପିଲା ଝିଲାଙ୍କୁ ପେଟ ପୁରା ଦୁଧ ଦେଇ ବଢ଼ାଇଛି ଦିନେ ଗାଈକ୍ଷୀର ଦେଇନି । ଏଇଟାକୁ ବି ସେମିତି ବଢ଼ାଇ ନେବି । ତୁମେ ଚିନ୍ତା କରନି ।"

ତାଙ୍କର ଏ ନିର୍ଭର କଥା ସତ୍ତ୍ୱେ ମୋ ଭାଗ୍ୟକୁ ଗାଈଟାଏ ଜୁଟିଲା । ବୁଢ଼ୀଟିଏ ଅସ୍ଥି ଚର୍ମସାର, ଛଅ ସାତ ବାଛୁରୀର ମାଆ । ତଥାପି ପହ୍ନା ଏମିତି ଫୁଲିଛି ଯେ ଚେହେରା ସହିତ ଅସାମଞ୍ଜସ୍ୟ ଦେଖିବାକୁ ଅନେକ କୌତୁହଳୀ ସହକର୍ମୀ ଧାଇଁଲେ । ଦାମ ଅଠାନବେ ଟଙ୍କା; ପରଦିନ ସକାଳେ କ୍ଷୀର ପାଇଲି ଅନ୍ଦାଜ ଦେଢ଼ସର ।

ଯେଉଁମାନେ ସେକ୍‌ସପିଅରଙ୍କ ଟ୍ରେଜେଡି ପଢ଼ିଛନ୍ତି ସେମାନେ ବେଶ୍ ଜାଣନ୍ତି ଯେ ତୃତୀୟ ଅଙ୍କରେ ନାୟକର ଭାଗ୍ୟ ଏକ ଶୀର୍ଷକରେ ପହଞ୍ଚେ ଏବଂ ତା' ପରେ ଟ୍ରେଜେଡି ଆଡ଼କୁ ଗତି କରେ । ମୋ ଜୀବନର ଶ୍ୱେତ ବିପ୍ଳବର ଟ୍ରେଜେଡ଼ି ଏଇଠାରେ ଆରମ୍ଭ ହେଲା । ଏକ ଆକସ୍ମିକ ଦୁର୍ଘଟଣାରେ ମୋ ସ୍ତ୍ରୀ ଜୀବନାବସାନଘଟିଲା । ଯେଉଁଦିନ ଏକଥା ହେଲା ସେଦିନ ରାତି ଦେଢ ବର୍ଷର ପିଲାକୁ ଛାତିରେ ଜାକି ଶୁଆଇ ଥିଲାବେଳେ ଭୋକ ଜ୍ୱାଳାରେ

ସେ ସେତେ ବେଳେ ମାଆ ମାଆ ଡାକି ଦୁଧ ଅଣ୍ଡଳିଲା ମୁଁ ସ୍ରଷ୍ଟାକୁ ଦାରୁଣ ଅଭିଶାପ ଦେଲି । ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିରେ ପାର୍ବତୀଙ୍କି ଯେମିତି ଗୋଟିଏ ସ୍ତନ ଦିଆ ଯାଇଛି ଅପରଟି ଯଦି ଶିବଙ୍କୁ ଦିଆଯାଇଥାନ୍ତା ଗଣେଶ ବା କାର୍ତ୍ତିକ ମାଆ ନଥିଲା ବେଳେ କନ୍ଦାକଟା କରନ୍ତେ ନାହିଁ କ୍ଷୀର ପାଇଁ । ବାପା ବେଣ୍ଟି ଧରାଇ ଦେଇ ତୁନି ହୋଇ ସାଙ୍ଗେ ସାଙ୍ଗେ ଶୋଇଯାଆନ୍ତେ ।

ତା' ପରେ ପୁଣି ଦୈବ (ଡି.ପି. ଆଇ.) ବଦଳି କଲା; ଏଥର ମଧ୍ୟ ଓଡ଼ିଶାକୁ । ପୁଣି ଗଣ୍ଠିଲି ବାନ୍ଧି ବାଲବତା ଧରି ଘର ଖୋଜ, ଦୁଧ ଖୋଜ । ବୁଢ଼ୀ ଗାଈଟିକି ଦେଇ ଆସିଲି ଏସିଷ୍ଟେଣ୍ଟ ସୁପରିଣ୍ଟେଣ୍ଡେଣ୍ଟଙ୍କୁ । ଛଅମାସ ପରେ ମୋତେ ଚାଳିଶିଟି ଟଙ୍କା ମନିଅର୍ଡ଼ର କରି ସେ ପଠାଇ ଥିଲେ । ମୁଁ ସେଇ ଟଙ୍କାରେ ଆଉ ତିରିଶି ଟଙ୍କା ମିଶାଇ ଯେଉଁ ଟେବୁଲ୍ ଫେନ୍ଟି କିଣିଥିଲି ତାହା ବୁଢ଼ୀ ଗାଈଟିପରି ମୋ ପାଖରେ ରହିଛି । କ୍ଷୀର ବଦଳରେ ପବନ ଦେଉଛି ।

ନୂଆ ସ୍ଥାନରେ ପୁଣି ମୂର୍ଖାମୀରେ ଗାଈ ରଖିଲି । ଅବସରରେ ତାକୁ ପଡ଼ିଆରେ ଚରାଇଲି ମଧ୍ୟ । ଏତିକି ମୋ ମୁଣ୍ଡରେ ପଶିଲା ନାହିଁ ଯେ ଗୋପୀ ନ ଥିଲେ ରାଈ ନାହିଁ କି ମାଈ ନ ଥିଲେ ଗାଈ ନାହିଁ । ଯାହାର ସ୍ତ୍ରୀ ନଥିବ ସେ ଯଦି ପୋଲିସ ଚାକିରୀ କରୁ ନ ଥିବ ବା ବୋଡିଂ ଓ ଜେଲ ସୁପରିଣ୍ଟେଣ୍ଡେଣ୍ଟ ହୋଇ ନଥିବ ସେ ଗାଈ ରଖି ପାରିବ ନାହିଁ । ଛଅ ମାସରେ ମୋର ଅଜ୍ଞତା ଓ ଅନଭିଜ୍ଞତାରୁ ପ୍ରଥମ ଗାଈଟି ମଲା । ମୁଁ ମାରି ଦେଇ କହିବା ଠିକ୍ ହେବ । ଜିଦ୍‌ରେ ପୁଣି ଗୋଟିଏ ରଖିଲି । ଦୁଇଶହ ଅଠାବନ ଟଙ୍କାରେ; ମୁଁ ମାତ୍ର ତିନି କିଲୋ କ୍ଷୀର ପାଇଥିଲି ତାଠୁଁ ।

ଭାଗ୍ୟକୁ ସେତିକିବେଳେ ଫୁଲନଖରାରେ ଯେଉଁ ଶ୍ୱେତ ବିପ୍ଳବର ସୂତ୍ରପାତ ହୋଇଥିଲା ତାହା ମଧ୍ୟ ଓଡ଼ିଶାକୁ ପ୍ରସରିଲା ଏବଂ ସହର ନିକଟରେ ସେଇ ପାରା ଘାସ ସହିତ ଯୋଗାଣ କେନ୍ଦ୍ରଟିଏ ଖୋଲିଲା । କାର୍ଡ଼ ପାଇଁ ଧରାଧରି କରି ଖଣ୍ଡିଏ ପାଇଲି ଗୋଟିଏ ଲିଟରର । ନିଜେ ଯାଇ ଆଣିବାକୁ ହବ ।

କପାଳକୁ ଚୈତନ ବୋଲି ପିଲାଟିଏ ଆସି ଜୁଟିଲା । ମୋର ଇଲାକାର ପିଲାଟି, ମଫସଲର, ଏକାନ୍ତ ଗରିବ ଘରର । ସୁନ୍ଦର ଚେହେରା ମୋରି ପୁଅଝିଅମାନଙ୍କ ରଙ୍ଗର । କେତୁଟା ଦିନରେ ମୋ ପରିବାରରେ ମିଶିଗଲା । ରୋଷେଇ ବାସେଇ, ବଜାର ସଉଦା କରବାଠୁ ଆରମ୍ଭ କରି ଯାବତୀୟ ପୁରୁଷ ସ୍ତ୍ରୀ ସାଧ୍ୟ କାମ ସେ ଏମିତି କରିପାରିଲା ଯେ ଆମେ ଜୀବନର ବିରାଟ କ୍ଷତି ଓ ଅଭାବକୁ କ୍ରମେ ଭୁଲି ଗଲୁଁ । ଅସାବଧାନତାରେ ସେ ସାଇକେଲଟାଏ ବି ହଜାଇ ଦେଲା । ପୁଅ ହଜାଇ ଥିଲେ ଭର୍ତ୍ସନା କରିଥାନ୍ତି, ମାରିଥାନ୍ତି ହୁଏତ । ତାକୁ କିଛି କହିଲି ନାହିଁ । ଫ୍ରିଜ, କାଲଗେସ, ଫିଲ୍‌ଟର, ପ୍ରେସର କୁକାର ଆଦି ଯନ୍ତ୍ରପାତିର ସହଜରେ ଅଳ୍ପ ଦିନରେ ବ୍ୟବହାର ପ୍ରଣାଳୀ ଶିଖିଗଲା । ମୋ ପିଲାଙ୍କ ସାର୍ଟ ପେଣ୍ଟ ପିନ୍ଧି ବଜାରକୁ ଦୁଧ କେନ ନେଇ ଯାଇଥିଲାବେଳେ ମୋତେ ମୋ ପୁଅ ଯାଉଛି ପରି ଜଣାଯାଏ । ଖୁବ୍ ବିଶ୍ୱସ୍ତ ପ୍ରଭୁଭକ୍ତ ପିଲାଟି । କିନ୍ତୁ ବୟସର ଦୋଷ ଆଉ ପ୍ରେମ ରୋଗ

କେତେ ଶୀଘ୍ର ଏଇ ଚଉଦବର୍ଷିଆକୁ ଖରାପ କରିଦେଲା ! ମୋଫସଲର ଟୋକାଗୁଡ଼ାକୁ ବଜାର ହାୱା କେତେ ଶୀଘ୍ର ଅସଚ୍ଚରିତ୍ର କରିଦିଏ ! ମୋ ପାଇଁ ଯେ ଜୀବନ ଦେବାକୁ ପ୍ରସ୍ତୁତ ସେ କିମିତି ନେବା କଥା ଭାବିଲା ମୁଁ ଆଶ୍ଚର୍ଯ୍ୟ ହେଲି ।

ସେତେବେଳକୁ ଆମେରିକାର ଗୁଣ୍ଡ ଦୁଧ ସହର ମଫସଲ ଚାରିବାଟେ ଖେଳି ଯାଇଥାଏ । ଏବଂ ଦୁଧ ଭେଜାଲ କରିବା ପାଇଁ ଅସୁବିଧା ନଥାଏ । ଜାଣି ହୁଏନି କିଏ ଗୁଣ୍ଡ ଦୁଧ ।

ଚୈତନ ସଞ୍ଜ ପାଞ୍ଚ ବାଜିଲେ ଯୋଡ଼ାଏ ଥଳି ଓ ଦୁଧ କେନ୍‌ଟି ଧରି ବଜାର ସଉଦା ପନିପରିବା ପାଇଁ ବାହାରି ଯାଏ ଏବଂ ରାତି ଆଠ ପରେ ଫେରି ଆସେ । ସେତେବେଳକୁ ସେ ଚାରି ବର୍ଷର ଆମ ପାଖରେ ରହିଲାଣି । ଲକ୍ଷ୍ୟ କଲି ଚୈତନ ଯେତେ ଯେତେ ଡେରି କରି ଘରକୁ ଫେରୁଛି ଦୁଧ ସେତେ ବେଶୀ ପାଣିଚିଆ ହେଉଛି । ରହସ୍ୟ ଭେଦ କରିବା ଚେଷ୍ଟା କଲି ନାହିଁ । ଧରି ନେଲି ଦୁଗ୍ଧଯୋଗାଣ କେନ୍ଦ୍ର ଲହୁଣୀ ତୋଳି ନେଉଛି, ବା ଯେଉଁମାନେ ଠେଲା ଗାଡ଼ିରେ ଦୁଧ ଡବା ସବୁ ଆଣୁଛନ୍ତି ସେଥିରୁ ଖାଣ୍ଟି କ୍ଷୀର ବଡ଼ବଡ଼ିଆଙ୍କ ପାଇଁ ରଖି ପାଣି ମିଶାଇ ସମତୁଲ କରି ଦେଉଛନ୍ତି, ଅନ୍ୟ ଲୋକଙ୍କୁ ଲୁଚା ଚୋରାରେ ବିନା କାର୍ଡ଼ରେ ଯୋଗାଇ ।

ଦିନେ ଚୈତନ ପୋଷ୍ଟ କାର୍ଡ଼ ସାଇଜର ଫଟୋଟିଏ ମୋ ଆଗରେ ଧରି ଗେହ୍ଲେଇ ହୋଇ କହିଲା "ବାପା ! ଏଇ ଦେଖନ୍ତୁ ଆମ ଫଟୋ, କାଲି ଉଠାଉଥିଲୁ । ଆମ ପାଖରେ ଯେଉଁ ଝିଅଟି ବସିଛି ସେ ଆମକୁ ଧରମ ଭାଇ କରିଛି । କ୍ଲାସ ସେଭେନ୍‌ରେ ପଢ଼େ, ମିସନ ବାଳିକା ସ୍କୁଲରେ । ଦଶଟା ଟଙ୍କା ଦେବେ ? ସେ ବହିପତ୍ର କିଣିବ । ତାକୁ ଆମେ ସାହାଯ୍ୟ ଦେଇ ପଢ଼ାଉଛୁଁ । "ପହିଲାକୁ ଦେଖିବା" କହି ଚୁପ୍ ରହିଲି । ଛବିରୁ ଦେଖିଲି ଝିଅଟା ସୁନ୍ଦର, ସ୍ୱାସ୍ଥ୍ୟବତୀ । ବୟସ ଅନୁପାତରେ ଟିକିଏ ବେଶୀ ବଡ଼ ଦିଶୁଛି । ତହିଁ ପରଦିନ ଟିକିଏ ଗୋଏନ୍ଦାଗିରି କରି ଜାଣିଲି ସେ ଝିଅଟିର ମାଆ ଅଧାବଙ୍ଗାଳୀ ମେଦିନୀପୁରରୁ ଆସି ବିଶ୍ୱେଶ୍ୱର ମନ୍ଦିର ପାଖରେ କାଠ କେବିନି ପକାଇ ପାନ ଚା ଦୋକାନଟିଏ କରିଛି । ସବୁ ଟୋକା ସଞ୍ଜରେ ସେଠି ଆଡ୍ଡା ଦିଅନ୍ତି । ଆମ ଚୈତନ ସେ ଦୋକାନରେ ଜଣେ ଗରାଖ । ସେ ଆଉ ଜଣେ ତାର ବଜାରୀ ସାଙ୍ଗ ସେଇଠି ମୋର ଲିଟର ଦୁଧରୁ ଅଧେ ଦେଇ ଚା ପାନ ସିଗାରେଟ୍ ଖାଆନ୍ତି, ଆଉ ଝିଅଟିକୁ ପଢ଼ାପଢ଼ିରେ ସାହାଯ୍ୟ କରନ୍ତି । ଉଭୟ ମାଆ ଝିଅଙ୍କ ଗୁଣ ଏକାପରି । ଚୈତନକୁ ଖୁବ୍ ଭର୍ତ୍ସନା କଲି । ଦୁଇଦିନ ପରେ ପୁଣି ଯିମିତି ସେଇଠି ତାକୁ ଦେଖିଲି ସିଧା ସେଇ ରାତି ତାକୁ ପେଡିପୁଟୁଳା ସହିତ ବିଦାୟ କରିଦେଲି । ଶୁଣିଲି ସେ ଆତ୍ମହତ୍ୟା କେଉଁଠି କରିବ ସ୍ଥିର କରିବା ପାଇଁ ଖଡଗପୁର ପର୍ଯ୍ୟନ୍ତ ଚାଲି ଯାଇଥିଲା ।

ଦୁଗ୍ଧଯୋଗାଣ କେନ୍ଦ୍ରରୁ ଦୁଧ ଆଣିବା ବନ୍ଦ । ଚୈତନ ଗଲା ଦୁଧକାର୍ଡ ବି କୁଆଡ଼େ ଗଲା । ଦୁଗ୍ଧ ବିହୁନେ ସ୍ୱାସ୍ଥ୍ୟ ହାନି । ଦୁଧ ବିନା ପିଲା ବୁଢ଼ା କେହି ବଞ୍ଚିପାରିବେ ନାହିଁ । ମନଦୁଃଖରେ ପିଣ୍ଡାରେ ବସିଥାଏଁ; ଦେଖିଲି ସାଇକେଲରେ କୋଡ଼ିଏ ଅନ୍ଦାଜ କେନ୍ ଓ ପଛରେ ଏକ ବିରାଟ ପିତଳ ଗରା ବୋଝେଇ କରି ଗୋଟାଏ ଦୁଧବାଲା ଯାଉଛି ।

''ଭଲ ଦୁଧ ଦେଉଛ ନା ?''

''ପରୀକ୍ଷା କରି ନିଅନ୍ତୁ, ଆପଣଙ୍କ ମିଟର ଥିବ ।''

''ଏତେ କ୍ଷୀର କେଉଁଠୁ ପାଉଛ ?''

''ଆମର ଗାଈ 'ମଇଁଷି ଗୋଠ ଅଛି, ତାଛଡ଼ା ଆମ ମଫସଲରେ ଏବେ ଜର୍ସି ଗାଈ ସମସ୍ତଙ୍କ ଘରେ; ବେଙ୍କମାନେ ଦେଇଛନ୍ତି, ଦିନରାତି ଦୁଇତିନିଥର ବଜାରକୁ ଆଣି ବିକିଲେ ବି ସାରି ପାରୁନୁ । ଦୁଧର ନଈ ବହୁଛି ଗାଁ ଗଣ୍ଡାରେ ।''

ଶ୍ୱେତ ବିପ୍ଲବ ଏତେ ଶୀଘ୍ର ମଫସଲକୁ ପହୁଞ୍ଚିଗଲା ! ପର ଦିନଠୁଁ ସେ ଲିଟାରେ ଲେଖାଏଁ ଦୁଧ ତିନିଟଙ୍କା ଦରରେ ଦେଲା । ପ୍ରଥମ ଦିନ ଅପେକ୍ଷା ଦିନକୁ ଦଶ ପାରସେଣ୍ଟ କମ୍ ଖାଣ୍ଟି ଏମିତି କେଉଁ ହେଉଁ ପଞ୍ଚମ ଦିନ ବେଳକୁ ଅଧା ପାଣି ଅଧା ଦୁଧ । ପଚାରିଲେ କୁହେ 'କଅଁଳା ବାଛୁରୀ, ବର୍ଷାଦିନ, ଗାଈ କଅଁଳ ଘାସ ଖାଉଛନ୍ତି କ୍ଷୀର ପାଣିଚିଆ ହବ ।'' ପୁଅ ବାହାଘରକୁ କୋଡ଼ିଏ ଲିଟର ଦୁଧ ଦେଇପାରିଲା ଏକ ସ୍ୱତନ୍ତ୍ର ବ୍ୟବସ୍ଥା ମୋ ପାଇଁ କରି । ପିଲାଝିଲାଏଁ କହିଲେ କାଗଜ ପରି ପତଳା ସର ମଧ୍ୟ ପଡ଼ିଲା ନାହିଁ କିନ୍ତୁ ଅତିଥିମାନେ ପାୟସର ଭୂରିଭୂରି ପ୍ରଶଂସା କଲେ ।

ବର୍ଷା ଦିନରେ ମଧ୍ୟ ଭିଜିତିନ୍ତି ଲୋକଟା ଭୋର ସକାଳୁ କ୍ଷୀର ଦେଇଯାଏ । ଦିନେ ଦେଖିଲି ଦୁଧ ବେଲାରେ ସବୁ ବାଲି କିଛି ତଳେ ଲାଗିଛି । ଗୁହାଳର ବାଲି ଭାବିଲି । ଆଉ ଦିନେ ଦୁଧ ଭୀଷଣ ହଳଦିଆ ଲାଳଚିଆ ଦିଶିଲା । ବହୁତ ଜେରା ଜମାନବନ୍ଦୀପରେ ସେ କହିଲା ''ନଈ ଡଙ୍ଗାରେ ପାରିହୋଇ ଆସୁଥିଲି । ଡଙ୍ଗା ବୁଡ଼ିଗଲା । ଆପଣଙ୍କ ଦୁଧ କେନ୍ଦ୍‌ଟା ଅନେକ ସମୟ ପାଣିରୁ ଟେକି ଧରିଥିଲି; ହାବୁକାଏ ପାଣି ସେତିକିବେଳେ ପଶିଯାଇଥିବ ।'' ତାରି କଥାକୁ ବିଶ୍ୱାସ କରି ନଈ ନିର୍ମଳ ହେଲାଯାକେ ଅପେକ୍ଷା କଲି । ଶରତ୍‌କାଳ ପରେ ବି ପ୍ରଚୁର ପାଣି ମିଶା ହୋଇଥିବାର ଅନୁମାନ କରି ପଚାରିଲି ପୁଣି ସେଇ ପ୍ରଶ୍ନ ଠାକୁରଦେବତା ରାଣ ପକାଇ । ଦୁର୍ବୃତଟା ଲଜ୍ଜାହୀନ ହୋଇ କହିଗଲା ''ବାବୁ, ଆମେ ଛଅ ଭାଇ; ଦୁଧ ଆହୁରି କିଛି ଦିନ ପାଣି ହେବ । ପୋଲିସ ଆମ ଛଅ ଭାଇକି ଆରେଷ୍ଟ୍ କରିଛି, ଆମେ ଛଭାଇ ଜଣକ ବିଲରୁ ଆଶୁଧାନ କାଟୁଥିଲୁଁ । ଚୋରି କେଶ୍ ।'' ମୁଁ ପଚାରିଲି ''ମୋକଦ୍ଦମା ନ ସରିଲା ପର୍ଯ୍ୟନ୍ତ ତେବେ ଏମିତି ଦୁଧମିଶା ପାଣି ତିନିଟଙ୍କାରେ କିଣୁଥିବି ।''

ଅନ୍ୟ ନିଷ୍ପତ୍ତି ପାଇଁ ମୋତେ ପ୍ରାୟ ସାତ ଦିନ ସମୟ ଲାଗିଲା । ଏମିତି ବୈପ୍ଳବିକ ବିପ୍ଳବରେ ମୁଁ ସହୀଦ୍ ହେବି ଏ କଥା ଭାବି ନଥିଲି ପାହାଳ ପାଖରେ ସେ ପଟାଖଣ୍ଡିକ ପଢ଼ି ଆଖପାଖର ରସଗୋଲା ଭାଣ୍ଡ ଓ ପାରା ଘାସ ଦେଖୁଥିଲାବେଳେ ।

ଟିକିଏ ପଛବୁଦ୍ଧିଆ ବଂଶର ଦାୟାଦ ହୋଇଥିବାରୁ ଓ ସ୍ମୃତି ଶକ୍ତି ଦୁର୍ବଳ ହୋଇ ଆସୁଥିବା ବେଳେ ଦିନେ ମନେ ପଡ଼ିଲା ମିସ୍‌ଫ୍ରୁଟ୍‌ସିକ ଫ୍ଲାୱାରସଙ୍କ କଥା । ଆଠ ଦଶ ବର୍ଷ ପୂର୍ବେ ତାଙ୍କୁ ଦେଖିଥିଲି ଏକ ଇଉନିଭରସିଟିର ଗେଷ୍ଟହାଉସରେ । ଏଇ ଶ୍ୱେତାଙ୍ଗିନୀଟି ସହିତ

ଅଳ୍ପ ସମୟ ପାଇଁ ଆଳାପ ଆଲୋଚନାର ଏପରିକି ପାଖ କୋଠରୀରେ ରାତିଟିଏ ରହିବାର ସୌଭାଗ୍ୟ ମିଳିଥିଲା । ତାଙ୍କ ଦିହତ ସ୍ୱାଭାବିକ ଶ୍ୱେତ, ରଙ୍ଗୀନ ପ୍ରକର ଫୁଲସବୁ ଶ୍ୱେତ, Ten thausand saw I at a Glance ମୁହଁଟି ଧଳା ପଦ୍ମ ପରି, ଦାନ୍ତ ଶ୍ୱେତ କୁନ୍ଦ ପରି ନିଶ୍ଚୟ । ତାଙ୍କ ନାଆଁ ମିସ୍ ଫ୍ଲାୱାରସ୍ । ସେ କେତେ ଦିନ ରହି ଉତ୍କଳୀୟ ମନ୍ଦିର କଳା ଓ ସ୍ଥାପତ୍ୟର ଯୌନ ପରିପାଟୀ ଯୌନ ପରିଚର୍ଯ୍ୟା ଓ ଯୌନ ଆବେଦନ ସମ୍ପର୍କରେ ଗବେଷଣା କରୁଥିଲେ । ତାଙ୍କର ଏ ବୈପ୍ଳବିକ ଗବେଷଣାରେ ମୁଁ ମନ୍ତ୍ରମୁଗ୍ଧ ହୋଇ ଯାଇଥିଲି । ଶାନ୍ତିନିକେତନ ବେଗ୍‌ରେ ଗରମ ପାଣି ବୋତଲ ଓ ଦୁଧଗୁଣ୍ଡ ଧରି ସେ କାମକୁ ଯାଇଥିଲେ । ସେ ମୋତେ କହିଥିଲେ "ମୁଁ ଦୁଧ ପିଏ ନାହିଁ, ଇଣ୍ଡିଆନ୍ ଦୁଧ ପିଇଲେ ମୋର ଡିସେଣ୍ଟ୍ରି ହୁଏ; ଏଇଟି ମୋତେ ସୁହାଉଛି ।" କହି ମୋ ପାଇଁ କପେ ଦୁଧ ଫେଣ୍ଟିଲେ ଏବଂ ଧରାଇଦେଲେ ।

ଏବେ ତାଙ୍କୁଇ ସ୍ମରଣ କରି ତାଙ୍କ ଦୁଧ ଫେଣ୍ଟାଫେଣ୍ଟିକୁ ଆଖି ଆଗରେ ରଖି ପ୍ରତିଦିନ ରାତିରେ ଗୁଣ୍ଡ ଦୁଧ ଗ୍ଲାସେ ରାତିରେ ପିଇ ଶୋଇପଡ଼େ । ବିଦେଶୀ କରିବା ପାଇଁ ଓଭେଲଟିନ୍ ବା କଫିଗୁଣ୍ଡଟିକେ ମିଶାଇ ଦିଏ । ମୃତସଞ୍ଜିବନୀ ସୁରା ବା କାୟାକଳ୍ପରଫଳ ପାଏଁ ନିଝୁମ ନିଃସ୍ୱପ୍ନ ରାତିଟି କଟାଇ । ଶ୍ୱେତବିପ୍ଳବ ବିଦ୍ର ସ୍ୱରୂପ ଘରଯାକ କେଉଁଠି ଦେଖିବେ ଧଳା ଧଳା ଦୁଧଟିଣ ଦୁଧ ।

ଦିନେ ନାତିର ସାଧାରଣ ଜ୍ଞାନ ପରୀକ୍ଷା କରୁଁ କରୁଁ ପଚାରିଦେଲି "ଅମିତାର ! ଗାଈ ଦେଖିଛୁ ହଁ ଆଜି । ଆଜି ସକାଳେ ଝରକା ଦେଇ ତଳେ ସଡ଼କରେ ଯାଉଥିବାର ଦେଖିଲି । ବଡ଼ ଜୀବଟା, କଳାମିଚିମିଚି, ବଡ଼ ବଡ଼ ଶିଙ୍ଗ ତା ପିଠିରେ ମହାଦେବ । ହୁଁ କାରି ହୁଁ କାର ଯାଉଥିଲା । ପୁଣି ପଚାରିଲି "ଗାଈର କେଉଁଠି ଦୁଧ ଥାଏ ?" ଉତ୍ତର ଆସିଲା "ମୁହଁରେ, ଆମ ପଣ୍ଡିତ ରଚନା କ୍ଲାସରେ କହିଥିଲେ ଗାଈ ମୁହଁରେ ଦୁଧ ।" "ଆଚ୍ଛା, କହିଲୁ ଛେନା କାହିଁରୁ ହୁଏ ?" ଉତ୍ତର ଆସିଲା "ସୁଜି ମଇଦାରୁ !

ଇନ୍‌କିଲାବ୍ ଜିନ୍ଦାବାଦ ! (ଶ୍ୱେତ) ବିପ୍ଳବ ଦୀର୍ଘଜୀବୀ ହେଉ ।



# ନଙ୍ଗୁଳି

ଆଉ କେତେଦିନ ଯାଏଁ ପିଲାଟା ଲଙ୍ଗଳା ହୋଇ ବୁଲୁଥିବ ? ଘରେ କ'ଣ ଜାମାପଟା କିଛି ନାହିଁ ?''– ଲିଙ୍ଗରାଜ ବାବୁ ପଚାରିଲେ ।

ଅଦ୍ୟାଶକ୍ତି ଦେବୀ ପଟାପଟ ଉତ୍ତର ଦେଲେ, ବୁଲୁଥାଉ ଆଉ କେତେ ବର୍ଷ ଖୋଲା ହାୱାରେ, ବଢୁଥାଉ ଉନ୍ମୁକ୍ତ ପ୍ରକୃତି କୋଳରେ । ଅନ୍ତତଃ ବଡ଼ ଭାଇ ସେମାନଙ୍କ ପରି ନଳୀ ପେଣ୍ଟ ଚୁଡୁହ୍ରା ଯୋତା ପିନ୍ଧିବା ଯାକେ । ବଡ଼ ହେଲେ ଆଉ କ'ଣ ସେ ଲଙ୍ଗଳା ହୋଇ ପାରିବ ? ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ତମେ ସବୁବେଳେ 'ଲଙ୍ଗଳା' 'ଲଙ୍ଗଳା' କଥାଟାକୁ ଖୁବ୍ ଜୋର ଦେଉଛ । କାହିଁକି ?''

ତୁମେ କାରଣ ଜାଣିପାରୁନ । ପିଲାଟା ଅସଭ୍ୟଙ୍କ ପରି ସବୁବେଳେ ଲଙ୍ଗଳା ହୋଇ ବୁଲୁଛି । ଦୋ-ଅକ୍ଷରି ବି ଆରମ୍ଭ କରିଦେଲାଣି । ତୁମକୁ ସବୁ ଦିଶୁଛି, ଶୁଭୁଛି । କିନ୍ତୁ ତମେ ଆଖିକାନ ବନ୍ଦ କରି ଦଉଛ । ତିନିତିନିଟାର ସର୍ବନାଶ ହେଲା । ଏଇଟାକୁ ବି ସାରିବ ଦେଖୁଛି ।

କି ଆଶ୍ଚର୍ଯ୍ୟ କଥା । ପିଲା ଦିହରେ ମୋଟେ ଲୁଗା ଜାମା ରଖୁନି । ମୋ ଦୋଷ ? ତୁମେ ନିଜେ ଯେଉଁ ଚାକର ରଖିଥିଲ ସେ ତାକୁ ଦୋ-ଅକ୍ଷରି ଶିଖାଇଲା; ମୋର ଦୋଷ ? ତୁମେ ନିଜେ ତ ସକାଳ ସଞ୍ଜରେ ହରି, ରାମ, କୃଷ୍ଣ ଆଦି ଦୋ-ଅକ୍ଷରି ଜପୁଛ । ତୁମେ ତ ଅସଭ୍ୟ ନୁହଁ, ତମ ତୁଣ୍ଡ ଖରାପ ହଉନି । ବଡ଼ ପିଲାଙ୍କୁ ତ ତୁମେ ଶିକ୍ଷାଦୀକ୍ଷା ଦେଇଛ । ବୁଢ଼ା କାଳରେ ତୁମେ ପ୍ରକୃତି ଛଡ଼ା ହେଲଣି ଦେଖୁଛ ।''

''ତୁମକୁ ସେ ବୁଢ଼ା ହନୁମାନ ଖାଇଲାଣି । ଜାଣି ଥାଅ ତାଙ୍କ ଫ୍ରୟେଡ୍ ଏକ ବିରାଟ ଫ୍ରଡ୍, ଭଣ୍ଡାମି । ସେ ଲୋକଟା ସବୁବେଳେ ଅଶ୍ଳୀଳ ଭିତରେ ବୁଡ଼ି ରହିଥାଏ । ତା ମୁହଁରେ ବାଡ଼ବତା ନଥାଏ । ଉଦ୍ଭଟ ତାର ଚିନ୍ତାଧାରା । ଫ୍ରୟେଡ଼ ସାଙ୍ଗକୁ ଚାର୍ବାକ, ଓମର ତାର ଆଦର୍ଶବାଦ ଗଢୁଛନ୍ତି । ତୁମେ ପୁଣି ତାରି ଦର୍ଶନ ସାଙ୍ଗକୁ ପଇସା ଲୋଭରେ ପରିବାର ନିୟନ୍ତ୍ରଣରେ ପଶିଲାଣି । ତୁମର ଲଜ୍ଜା ସରମ ସବୁ ଗଲାଣି ।''

''ତମଠୁ ବଡ଼ ଦୁର୍ବୃତ୍ତ ଯୌବନରେ ଆଉ କିଏ ଥିଲା ? ମୁଁ ତୁମ ଇତିହାସ ଭୂଗୋଳ ସବୁ ଜାଣେ । ଚୌରଙ୍ଗୀ ବିଶ୍ୱବିଦ୍ୟାଳୟର ଛାତ୍ର ତମେ । କାଳିଦାସ, କୀଟସ, ବାଇରନ,ଜଏସ, ଲରେନ୍ସ ତୁମ ଜିହ୍ୱାଗ୍ରେ । କାମଶାସ୍ତ୍ର ତୁମର କଣ୍ଠସ୍ଥ । ରୁଚିଗର୍ହିତ ଛବିସବୁ କାନ୍ଥରେ ଝୁଲାଇ,

ତକିଆ ତଳେ ରଖି ଜୀବନ କଟାଇଛ । ଏବେ ପଣ୍ଡିଚେରୀ ଯାଇ ଓଁକାର ପତ୍ରିକା ଜରିଆରେ ଧର୍ମ ପ୍ରଚାର ଆରମ୍ଭ କରି ଦେଇଛ । କିନ୍ତୁ ମନେରଖ ପରିବାର ନିୟନ୍ତ୍ରଣ ବିଜ୍ଞାପନ ନ ପାଇଲେ ତମ କାଗଜ ବୁଡ଼ି ଯାଆନ୍ତା ।''

''ଥାଉ ଥାଉ ତୁମର ବକ୍ତୃତା । ବେଥୁନ ବା ବେବୁନ କଲେଜର ପାଠଗୁଡ଼ାକ ମୋତେ ପଢ଼ାଅନାହିଁ । ତମେ ତ ନିଜେ ଅଧାଲଙ୍ଗଳା ପୋଷାକ ପିନ୍ଧି ବୁଲୁଛ; ସ୍ୱାମୀ ହୋଇ ବି ମୋର ଲଜ୍ଜା ହୁଏ ତୁମ ପୋଷାକ ପରିପାଟୀରେ । ଆମର ସଂସ୍କୃତି, ସଭ୍ୟତା, ପରମ୍ପରା ଆଚାର ବ୍ୟବହାର ସବୁ ବୁଡ଼ିଛି ତୁମପରୀପାଟୀଙ୍କ ଯୋଗୁଁ । ମାଆ ନିଜେ ଲଙ୍ଗଳା ହେଲେ ଲୁଗା ପିନ୍ଧିବେ କାହିଁକି ? ସେମାନେ ଅବଶ୍ୟ ଅସଭ୍ୟ ହେବେ ।''.

''ଦେଖ, ସବୁ ଲଙ୍ଗଳା ଅସଭ୍ୟ ନୁହନ୍ତି । ସଭ୍ୟ ଦେଶରେ ଅନେକ ଲଙ୍ଗଳା ଉପନିବେଶ ଅଛି । ସବୁ ଲଙ୍ଗଳା ଅସଭ୍ୟ ହେଲେ ଲୋକେ କୋଣାର୍କ, ଖଜୁରାହୋ, ଅଜନ୍ତା, ଗ୍ରୀସ୍ ଓ ରୋମକୁ ଯାଆନ୍ତେ କାହିଁକି ?''

''ମୁଁ ଗ୍ରୀସ୍ ରୋମ କଥା ବୁଝେ ନାହିଁ । ନିଜ ଘର ସଜାଡ଼ିବା ଏଥର ।''

''ଆଉ ସଜାଡ଼ିବାକୁ ଅଛି ? ବଡ଼ ପୁଅ ତ କଳା ନାଆଁରେ ଲଙ୍ଗଳା ଛବି ଆଙ୍କୁଛି, ସେଥିପାଇଁ ସେ ନାମଜାଦା କଳାକାର । ମଝିଆଁ ପୁଅ ଗାଇନୋ, ଏନ ଟମି ଓ ଜୁରିସ୍ ପଢ଼ି ଡାକ୍ତର ହବାକୁ ଯାଉଛି । ଝିଅର 'କ୍ଷମନ୍ନକମ୍ପଧର' 'ଖେଳାଖବାରିଟ ଓଡ଼ଶୀ ନାଚ ଦେଖାଇବାକୁ ଦେଶ ଦେଶ ବୁଲିଲାଣି । ସେମାନଙ୍କୁ ନେଇ ତୁମେ ଗର୍ବ କରନା, ତାକୁ ଅଶ୍ଳୀଳ ଅପଦାର୍ଥ, ଅସଭ୍ୟ ବୋଲି ଭାବ ?''

''ତୁମ ସାଙ୍ଗରେ ଯୁକ୍ତିତର୍କ କରି ଲାଭ ନାହିଁ । ତୁମେ ଟିକିଏ ଅତି ବେଶୀ ଆଧୁନିକା, ପ୍ରଗତିଶୀଳା, ପାଶ୍ଚାତ୍ୟପ୍ରେମୀ ହୋଇଯାଇଛ । ତା'ଛଡ଼ା ପଇସା ଲୋଭରେ ନାନା ଲୋକଙ୍କ ସଂସ୍ପର୍ଶରେ ଆସି ଦ୍ୱାର ଦ୍ୱାର ବୁଲି ପରିବାର ନିୟନ୍ତ୍ରଣ ପ୍ରଥା ବୁଝାଇ କଳକବଜା ଯନ୍ତ୍ରପାତି ଔଷଧ ବଡ଼ିବଟିକା ବାଣ୍ଟି ନାରୀତ୍ୱ ହରାଇଲାଣି । ଯାହାହେଲା ତ ହେଲା । ଏଥର ଆସ ସାନ ପିଲାଟାକୁ ନୂଆ କରି ଗଢ଼ିବା । ତାକୁ ଲଙ୍ଗଳା ପାଠ ପଢ଼ାଅ ନାହିଁ ।

ଓଁ କାର ପତ୍ରିକାର ସମ୍ପାଦକ ଲିଙ୍ଗରାଜ ବାବୁ ଏବଂ ପରିବାର ନିୟନ୍ତ୍ରଣ ଉପଦେଶିକା ତଦୀୟ ପତ୍ନୀ ଆଦ୍ୟାଶକ୍ତି ଦେବୀ ଏବେ ଏବେ ଦାମ୍ପତ୍ୟ ପ୍ରେମ ଅପେକ୍ଷା ସଂଘର୍ଷ ଓ ବାଦବିସମ୍ବାଦକୁ ପସନ୍ଦ କରନ୍ତି । ବୌଦ୍ଧିକ ସ୍ତରରେ ସେମାନଙ୍କ କଥାବାର୍ତ୍ତା, କଳିତକରାଳ । ଉଭୟେ ଉଚ୍ଚଶିକ୍ଷିତ, ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ । ଅନ୍ୟଥା ଏକ ଦେହ ଓ ମନ ହେଲେ ହେଁ ଦୁହିଁଙ୍କର ଆଦର୍ଶଗତ ବ୍ୟବଧାନ ଅପୂରଣୀୟ । ଦେଖାସାକ୍ଷତ୍ ମାତ୍ରେ ସଂସ୍କୃତି ସଭ୍ୟତା ସମ୍ପର୍କରେ ଉଗ୍ର ଆଲୋଚନା ଆରମ୍ଭ ହୁଏ ।

ଲିଙ୍ଗରାଜ ବାବୁଙ୍କ ଆନ୍ତରିକ ଇଚ୍ଛା ଯେ ଶେଷ ସନ୍ତାନ ପଦ୍ମଯୋନିକୁ ଆର୍ଯ୍ୟ ସଂସ୍କୃତି, ପରମ୍ପରା ଓ କୌଳିକ ପନ୍ଥାରେ ଚଳାଇବେ । ସେଥିପାଇଁ ପାଶ୍ଚାତ୍ୟ ତଥା ପାରିପାର୍ଶ୍ୱିକୀର

ସମସ୍ତ କୁ-ପ୍ରଭାବରୁ ପିଲାକୁ ବଞ୍ଚାଇ ତାକୁ ସୁସ୍ଥ ଓ ସଂଯତ ମଣିଷ କରିବେ । ତାଙ୍କ ଧାରଣା ତାଙ୍କ ସର୍ବମୟ ପ୍ରଚେଷ୍ଟାର ଅନ୍ତରାୟ ସ୍ୱାମୀର ପତ୍ନୀ ଆଦ୍ୟଶକ୍ତି ଦେବୀ ଯେ କି ପ୍ରତିବେଶୀ ଡକ୍ଟର ହନୁମନ୍ତ ମିଶ୍ରଙ୍କ ପରାମର୍ଶରେ ପରିଚାଳିତା ଓ ଆଦର୍ଶରେ ଅନୁପ୍ରାଣିତା । ଡକ୍ଟର ମିଶ୍ର ପ୍ରୟେଡ଼ବାଦ, ବସ୍ତୁବାଦୀ ବା ସେମିତି କିଛି । ପଦ୍ମଯୋନି (ଲିଙ୍ଗରାଜ ବାବୁଙ୍କୁ ଚିଡ଼ଇବା ପାଇଁ ଆଦ୍ୟାଶକ୍ତି ଦେବୀ ତାକୁ ନଙ୍ଗୁଳି ବୋଲି ଡାକନ୍ତି) ଘର ଭିତରେ ଆବଦ୍ଧ ଥାଏ । ବାହାରକୁ ତାକୁ ଯିବାକୁ ଦିଆହୁଏ ନାହିଁ । ଚାକର ପିଲାଙ୍କ ଯୌନ ଶିକ୍ଷାର ଆଦିଗୁରୁ । ତେଣୁ  ଘରେ ଚାକର ନାହାନ୍ତି । ସ୍କୁଲରେ ପିଲାଏ ଅଶ୍ଳୀଳତା ଶିଖନ୍ତି । ଅତଏବ ପଦ୍ମଯୋନି ସ୍କୁଲକୁ ଯାଏ ନାହିଁ । ଘର ପାଖରୁ କୁକୁର, ଷଣ୍ଢ, ଛେଳି, ଗଧ, ପାରା, ଘରଚଟିଆ ଆଦି ପଶୁପକ୍ଷୀଙ୍କି ତଡ଼ି ଦିଆଯାଏ । ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଲୁଗା ପିନ୍ଧନ୍ତି ନାହିଁ, ତା'ଛଡା ସେଗୁଡ଼ିକର ଅଶ୍ଳୀଳ ବ୍ୟବହାର ଲାଇବ୍ରେରୀରୁ ବଛାବଛି କରି ଖରାପ ବହି ଅନ୍ତର କରି ଦିଆଯାଇଛି କାଳେପିଲା ଛବି ଦେଖି ନାନା କଥା ଜାଣିଯିବ ।

ବାପମାଆ ଥାଇ ମଧ ପଦ୍ମଯୋନି ଛେଉଣ୍ଡ । ଦୁଇଭାଇ ଓ ଭଉଣୀ ଘର ବାହାରେ ଦେଶ ବିଦେଶରେ ଥାଆନ୍ତି । ବାପମାଆ ଅଧିକାଂଶ ସମୟ ପତ୍ରିକା ସମ୍ପାଦନା ଓ ପରିବାର ନିୟନ୍ତ୍ରଣ ଯୋଚନା ପ୍ରଚାରରେ ନ ହେଲେ ଯୁକ୍ତିତର୍କରେ ବ୍ୟସ୍ତ । କେବଳ ପଡୋଶୀ ହନୁମନ୍ତ ମଉସା ଆସିଲେ ପିଲାଟି ସାମାନ୍ୟ ଆନନ୍ଦ ପାଏ । ମଉସା ତାକୁ ସିଂହମୂଷା, କୁଆଶିଆଳ ଗପ କହନ୍ତି – ରଜାରାଣୀ ଗପ କହିବାକୁ ତାଙ୍କୁ ମନା ।

ସେଦିନ କଳିଗୋଳ ରୁଷାରୁଷି ପରେ ଲିଙ୍ଗରାଜ ବାବୁ ଓ ଆଦ୍ୟାଶକ୍ତି ଦେବୀ ପଛକୁ ପଛ କରି ଦୂରେଇ ହୋଇ ବସି- ଥାଆନ୍ତି, ଘରେ । ପଦ୍ମଯୋନି ଦାଣ୍ଡଘରେ ବସି ସିଦ୍ଧିରସ୍ତୁ ଅକ୍ଷର ଚାରିଟା ମଡ଼ାଉ ଥାଏ ବାପାଙ୍କ ଦିଆ ଏକ ମସ୍ତ ବଡ ପଥର ଖଡ଼ିରେ । ଏତିକିବେଳେ ଦାଣ୍ଡରେ ଡିବି ଡିବି ଡମ୍ବରୁ ଶୁଭିଲା । ଧଡ଼ପଡ଼ ହୋଇ ନଙ୍ଗୁଳି ଖଡ଼ି ଫୋପାଡ଼ି ଦେଇ ଝରକାକୁ ଉଠିଗଲା । ଦେଖିଲା ପଗଡ଼ିବାଲା ଲୋକଟାଏ ଗୁଡାଏ ରଙ୍ଗ ବେରଙ୍ଗ ବେଲୁନ ଉଡାଇ ଉଡାଇ କହୁଛି "ଦଶ ଦଶ ପଇସା-ବେଲୁନ ।" ନାଲି ରଙ୍ଗର ଠିଆ ଠିଆ ଲମ୍ବ ସାପ ଭଳି ବେଲୁନଗୁଡାକୁ ହାତମୁଠା ଭିତରେ ରଖି କଅଁର କଅଁର କଡା ଶବ୍ଦ ବାହାର କରୁଛି ଗରାଖ ଡାକିବା ପାଇଁ । ମାଆ ଥନ ପରି ଫିକା ହଳଦିଆ ରଙ୍ଗର ବେଲୁନ ଦୁଇଟା ଦେଖିଦେଲା ମାତ୍ରେ ଲୋଭ ସମ୍ଭାଳି ନ ପାରି ଘର ଭିତରକୁ ଯାଇ ବଡ ପାଟିରେ ଆଗ୍ରହରେ କହିଲା, "ମାଆ ମାଆ ! ପଇସା ଦିଅ, ବେଲୁନ କିଣିବି ।" ଆଦ୍ୟାଶକ୍ତି ଦେବୀ ଯିମିତି ତକିଆ ତଳୁ  ଦଶପଇସିଟିଏ କାଢ଼ି ପୁଅ ହାତକୁ ଦେଉଛନ୍ତି ସିମିତି ଲିଙ୍ଗରାଜ ବାବୁ ଗର୍ଜିଉଠିଲେ "ପଦ୍ମା ! ମୁଁ କହୁଛି ବେଲୁନ କିଣା ହବନି । ସେଗୁଡାକ ଅଳ୍ପକେ ନରମିଯାଏ, ବେଶୀଦିନ ରହେନା, ବାଜେ ଜିନିଷ ।

ପିଲାଟି ମୁହଁ ଶୁଖାଇ ଫେରିଗଲା । ଦଶ ପଇସିଟି ଧରିଥାଏ ଆଉ ଚାହିଁଥାଏ ପଡ଼ିଶା ବାଡ଼ିର ପିଜୁଳି ଗଛକୁ ଦେଖିଲା ମାଙ୍କଡ଼ଟାଏ କଚକଚ କରି କଷି ପିଜୁଳିକୁ ଚୋବାଇ ଖାଇ

ଯାଉଛି, ତା ଆଡକୁ ଦାନ୍ତ ନିକୁଟିଛି ଏକା କୁଦାକେ ଗଛକୁ ଝରକା ଦେଇ ଡେଇଁ ଯିବ ଭାବିଲା । ହେଲେ ବାପା ଅଛନ୍ତି ମାଙ୍କଡ ପରି ଡେଇଁବାକୁ  ମନାକରିବେ । ପୁଣି ଡ଼ିବି ଡ଼ିବି ଡ଼ିବି ।

ସାପୁଆ କେଳାଟାଏ ଭାରେ ସାପପେଡ଼ି ନେଇ ଚାଲିଛି । ଗୁଡ଼ାଏ ପିଲା ପଛେ ପଛେ ଚାଲିଛନ୍ତି ।

"ବାପା ! ବାପା ! ସାପ ଖେଳ ଦେଖିବି । ଡାକିବି ତାକୁ ?"

ଲିଙ୍ଗରାଜ ବାବୁଙ୍କ ହଠାତ୍ ମନେପଡ଼ିଲା ସାମ୍ପ୍ରତିକ ସାହିତ୍ୟର ସାପୁଆ କେଳା ବୋଲି କବିତାଟି ଯହିଁରେ ଅତିମାତ୍ରାରେ ଯୌନ-ସଙ୍କେତ ଓ ରୂପକଳ୍ପ ଥିଲା । କହିଲା, "ନା,ନା, ସାପଖେଳା ହୋଇ ପାରିବ ନାହିଁ ଆମ ଘରେ । ବଡ ବିଷ ସାପ ଗୁଡାକର । କାଳନାଗଗୁଡାକ ବିଶେଷ କରି । ପିଲାଝିଲାଙ୍କୁ ଗୋଡାଇ କାମୁଡନ୍ତି ।" ଯା, ଯା, ଖଡ଼ି ଧରି ଅକ୍ଷର ମଡା ।

ନଙ୍କୁଳି ନିରାଶ ହୋଇ ପୁଣି ସ୍ୱ-ସ୍ଥାନକୁ ଗଲା । ଝରକା ଦେଇ ଦେଖିଲା ତାରି ଭଳି କେତେ ପିଲା ନାଚି ନାଚି କୋଳାହଳ କରି କେଳା ପଛରେ ଚାଲିଛନ୍ତି କେଉଁଠି କାହା ଘରେ ଖେଳ ହେଲେ ଦେଖିବେ ବୋଲି ।

ପ୍ରଧାନ ରାସ୍ତା ଉପରେ ଘରଟା । ସହରର ଯାନିଯାତ, ନାଚ ତାମସା, ପଟୁଆର ଶୋଭାଯାତ୍ରା ସବୁ ସେଇ ରାସ୍ତାଦେଇ ଚାଣିହୁଏ । ପୁଣି ଡ଼ିବି ଡ଼ିବି ଡ଼ିବି । ଏଥର ଶୁଭିଲା "ଯାଦୁ, ମେଜିକ୍ ଖେଳ" । ମାଆ ବୋଧହୁଏ ହଁ ଭରିଥାନ୍ତେ ନଙ୍କୁଳିର ଅନୁରୋଧରେ । ମାତ୍ର ଲିଙ୍ଗରାଜ ବାବୁ କହି ଉଠିଲେ "ଛିଃ ଛିଃ, ଭଦ୍ରଲୋକ ସେ ଖେଳ ଦେଖନ୍ତି ନାହିଁ । ଝିଅଟା ଲଙ୍ଗଳା ହୋଇ ଖେଳ ଦେଖାଏ ପେଟତଳେ ବାଉଁଶ ଦେଇ । ଛୁଆଙ୍କୁ ସେମାନେ ଥଳିରେ ପୂରାଇ ନେଇଯାଆନ୍ତି ।"

ଯାଦୁଖେଳ ପ୍ରତିନଙ୍କୁଳିର ସେତେ ଆଗ୍ରହ ନଥିଲା । ପିଲା ତ ଯାହାହେଲେ ପରିବର୍ତ୍ତନ ଚାହେଁ ତା ମନ । ବୁଢ଼ା ବୁଢ଼ୀ ଦି'ଟା ସାଙ୍ଗରେ କେତେ କାଳ ରହିବ ସେ ରଙ୍ଗବେରଙ୍ଗ ଜୀବନ୍ତ ଦୁନିଆଁଠାରୁ ଦୂରେଇ ହୋଇ ।

ପୁଣି ଡିବି ଡିବି ଡିବି; କୋଳାହଳ ସାଙ୍ଗକୁ କୁକୁର ଗୁଡାକର ଭୋ ଭୋ ।

ଅତିଷ୍ଠ ହୋଇ ନଙ୍କୁଳି ପୁଣି ଚାହିଁଲା ବାହାରକୁ ବାବା ! କେଡ଼େ ବଡ ଭାଲୁଟାଏ ! କେତେ ପିଲା । ପୁଣି ବାପାଙ୍କ ପାଖକୁ ଯାଇ କହିଁଲା 'ବାପା ! ଭାଲୁ ନାଚ ଦେଖିବି ।'

ଲିଙ୍ଗରାଜ ବାବୁଙ୍କ ମୁଣ୍ଡରେ ଶିର ଗୋଟାଏ ଦିଟା ଛିଡ଼ିଗଲା ବୋଧହୁଏ । ପିଲାଟି ବି ମାଆ ସାଙ୍ଗରେ ଯୋଡ଼ି ବାନ୍ଧି ଆଜି ତାଙ୍କ ମୁଣ୍ଡଟାକୁ ପୁରାପୁରି ବିଗିଡ଼େଇ ଦବ ପରା । ତାଙ୍କର ହଠାତ୍ ମନେ ପଡ଼ିଲା ବୀର ପଣ୍ଡାଙ୍କ 'ଭାଲୁନାଚ' ବୋଲି ଆଧୁନିକ କବିତାଟି, ଭୀଷଣ ଅଶ୍ଳୀଳ କି କନ୍ଦର୍ପ୍ୟ ସଙ୍କେତ ! ଏତେ ଜୋରରେ 'ନା' ବୋଲି ଚିତ୍କାର କଲେ ଯେ ନଙ୍କୁଳି ନାଁ ନଙ୍କୁଳି ତା ମାଆ ବି ଧଡ଼୍ କିନା ଚମକି ପଡ଼ିଲେ । ମାଆ ତଦଣ୍ଡେ ନିଜ ଛାତିରେ ଓ ନଙ୍କୁଳି

ଦିହରେ ମୋଟାଏ ମୋଟାଏ ଛେପ ଥୁକିଦେଲେ । ଭାଲୁଟା ଆଗରେ ପଡ଼ିଥିଲେ ବି ପିଲାଟା ଏତେ ଜୋର ଚମକି ନଥାନ୍ତା ।

ଦୈବକ୍ରୁ ମଉସା ଡକ୍ଟର ହନୁମନ୍ତ ମିଶ୍ର ସେତିକି ବେଳେ ପ୍ରବେଶ କଲେ ବୋଲି ନକ୍ସୁଳି କାନ୍ଦ ସମ୍ଭାଳି ନେଲା । ସମସ୍ତେ ଚୁପଚାପ୍ ଘର ଶୂନଶାନ ଦେଖି ମଉସା ଆରମ୍ଭ କଲେ, 'ଭାତ ଖାଇବା ବେଳଟାରେ ଦି ଜଣ ଏତେ ବ୍ୟତିବ୍ୟସ୍ତ ହେଲା ପରି ଜଣାଯାଉଛ । କଥା କ'ଣ ?'

ଲିଙ୍ଗରାଜ ବାବୁ ଦଣ୍ଡେ ଗୁମ ମାରି କହିଲେ, ''ଆମର ପଦ୍ମଯୋନି ପିଲାଟା କିମିତି ମଣିଷ ହେବ ସେଇ ଚିନ୍ତା ଆମକୁ ଖାଉଛି । ବଡ଼ କଷ୍ଟ । ସର୍ବତ୍ର ଅଶ୍ଲୀଳତା

'ଗୋଟାଏ ଦୁଃସମ୍ବାଦ ନେଇ ଆସିଛି, ଲିଙ୍ଗରାଜ ବାବୁ !'

'ଦୁଃସମ୍ବାଦ ! କିଏ ମଲେ ?'

'ଆପଣଙ୍କ ସଂସ୍କୃତି, ପରମ୍ପରା, ସଂଯମ, ସଭ୍ୟତା ସମସ୍ତେ, ଖୋସଲା କମିଶନ ସୁପାରିଶ୍ କରିଛନ୍ତି ଏତିକି ଚଳଚିତ୍ରରେ ନଗ୍ନତା ଓ ଚୁମ୍ବନ ଦେଖାଯାଇପାରିବ, ଅବଶ୍ୟ ଯଥାସ୍ଥାନରେ ।'

'ଅର୍ଥାତ ଅଳ୍ପ ଉପନ୍ୟାସ ରାଜ୍ୟରେ, ଦାଣ୍ଡରେ ଘାଟରେ ସର୍ବତ୍ର ସବୁ ସମୟରେ ସବୁ ଦେଖିହବ ଏଇୟା ତ । ଦାଣ୍ଡଘାଟର ଅଶ୍ଲୀଳତା ତ ମୋତେ ଏଇ ମୁହୂର୍ତ୍ତରେ ଅବ୍ୟବସ୍ଥିତ କରିଛି । ମୋର ବିଶ୍ୱାସ ଆତ୍ମହତ୍ୟାର ଦିନ ଆସିଗଲା ବିବେକୀ ପକ୍ଷରେ, ଜାତି ପକ୍ଷରେ ଦେଶ ପକ୍ଷରେ ।

'ପ୍ରକୃତିସ୍ଥ ହୋଇ କଥାଗୁଡାକ ଭାବନ୍ତୁ ଏମିତି ଛାନିଆଁ ହେଲେ ଚଳିବ ? ଏଥିରେ ନୂଆ କଥା କ'ଣ ଅଛି ? ଜୀବନ ଓ କଳାର ସମ୍ପର୍କ ସ୍ୱୀକାର କଲେ ଆପଣଙ୍କୁ ଅନେକ କଥା ଗ୍ରହଣ କରିବାକୁ ପଡ଼ିବ ଜ୍ଞାନର ପରିସର ସଂକୁଚିତ କଲେ ମଣିଷ ଖର୍ବ ହୋଇ ହୋଇଯିବ ଯେ ।'

'କି ଆଜ୍ଞା ! ସାହିତ୍ୟରେ, କଳାରେ, ସମାଜର ଘୋର ଅଶ୍ଲୀଳତା ତ ଅଛି ତାକୁ ଆଇନ ସମ୍ମତ କରି ଲାଭ କ'ଣ ? ନଗ୍ନତା ଏଥର ଆଇନର ସ୍ୱାକ୍ଷର ପାଇବ ତେବେ ? ବିବେକ ତ ଫେର ଅଛି ।

'କିନ୍ତୁ ସବୁ ନଗ୍ନତା ଅଶ୍ଲୀଳତା ନୁହେଁ ଏକଥା ଭୁଲି ଯାଉଛନ୍ତି କାହିଁକି ? ବିବେକ ଆମକୁ ଡରୁଆ କରି ଦିଏ ।'

'ଖରାପ କଥା ଜାଣିବା ପାଇଁ ଦୁନିଆଁ ବିଶେଷତଃ ଅପ୍ରାପ୍ତବୟସ୍କମାନେ ବଡ଼ ଆଗ୍ରହୀ । ଗୋଟାଏ ହେଲେ ପିଲାକୁ ରକ୍ଷା କରିବି ଭାବିଥିଲି ।

'ଜାଣନ୍ତୁ କ୍ଷତି କ'ଣ ? ପରିବେଶରେ ଛୋଟ ଛୋଟ ପିଲାକୁ ଯୌନତଥ୍ୟ ଶିକ୍ଷା ଦଆଯାଉଛି । ଡେନ୍‌ମାର୍କ, ଫ୍ରାନସ, ଇଂଲଣ୍ଡରେ ଯୌନ ସାହିତ୍ୟ ପ୍ରଚାର ଓ ପରିପ୍ରସାର ଆଇନତଃ ସମ୍ମତି ପାଇଛି । ତା ସତ୍ତ୍ୱେ ଉତ୍କଟ ଯୌନ ସାହିତ୍ୟ ଓ ସିନେମାକୁ ଆଦର ନାହିଁ ।

ସେଇଥି ପାଇଁ ସେ ଦେଶମାନଙ୍କର ଏତେ ବ୍ୟଭିଚାର । ଅସଭ୍ୟତା ।'

'ଆମର ଅର୍ଦ୍ଧମତ ସଭ୍ୟତା, ଅସ୍ୱ ଭାବିକ ରୀତିନୀତି ଅପେକ୍ଷା ସେମାନଙ୍କ ଅସଭ୍ୟତା ଦିବ୍ୟ ଜୀବନର ପରି ପୋଷାକ,ପରପଟ୍ଟୀ ନୁହେଁ । ତାଛଡା ଶ୍ଳୀଳ, ଅଶ୍ଳୀଳ ଧାରଣା ମନ ଉପରେ ନିର୍ଭର କରେ । ତାହା ଆପେକ୍ଷିକ । ଆପଣଙ୍କୁ ଯାହା ଅଶ୍ଳୀଳ ନଗ୍ନୁଳୀକୁ ତାହା ସ୍ୱଭାବିକଶ୍ଳୀଳ । ମନେ କରନ୍ତୁ, କଳାକାହ୍ନୁ କୁହୁକଜାଣେ ଯେଣିକି ଚାହିଁଲେ ଦିଶଇ ତେଣେ ।

ଆଦ୍ୟାଶକ୍ତି ଦେବୀ ଡକ୍ଟର ହନୁମନ୍ତଙ୍କୁ ସମର୍ଥନ କରି କହିଲେ 'ଡକ୍ଟର, ଆମର ଇଏ ତ କଥାରେ କଥାରେ 'ଲଙ୍ଗଳା'କୁ ଜଗୁଛନ୍ତି । ମୁଁ କ'ଣ କରିବି ?'ଦେଖନ୍ତୁ, ସେମିତି ଖୋଜି ବସିଲେ ପୃଥିବୀର ସର୍ବତ୍ର ଯୌନସଙ୍କେତ ମିଳିବ । ବିକାରଗ୍ରସ୍ତ ମନ ସବୁବେଳେ ଶ୍ଳୀଳରେ ଅଶ୍ଳୀଳତା ପାଇଯିବ । ଯାହା ସହଜ ସୁନ୍ଦର ସ୍ୱାଭାବିକ ତାହା ମଧ୍ୟ ଆମକୁ ଭୟର କାରଣ ଯୋଗାଏ । ଆମର ଦଣ୍ଡବିଧି ଆଇନ୍ ଏତେ କଠୋର ହେଲେ ମଧ୍ୟ ଅଶ୍ଳୀଳତା କ'ଣ କମିଛି । ଲେଡ଼ି ଚେଟାଲି ଅଶ୍ଳୀଳ ବୋଲି କହି ହଜାର ହଜାର ସଂଖ୍ୟାରେ କୁରୁଚିପୂର୍ଣ୍ଣ ବୀଭତ୍ସ ଯୌନ ପୁସ୍ତକ ଓ ପତ୍ର ପତ୍ରିକାରେ ପ୍ରଚାର କ'ଣ ରୋକି ପାରିଛୁ ?''

''ସତ କଥା । ପାଣି ପବନକୁ କିଏ କେତେଦିନ ବାଧା ଦବ ।'' – ଆଦ୍ୟାଶକ୍ତି ଦେବୀ ମନ୍ତବ୍ୟ କଲେ ।

''ନା, ନା,ଏଥର ପିଲାଝିଲାଙ୍କୁ ଧରି ସିନେମାରେ ଚୁମ୍ବନ ଓ କୁଣ୍ଢା କୁଣ୍ଢି ଦେଖିବ, ନାଲି ତ୍ରିଭୁଜ ବିଜ୍ଞାପନ କାନ୍ଥ ବାଡ଼ରେ ମାରିବ । ତୁମେ ଯେଉଁ ଦୂଷିତ ବାଷ୍ପ ଓ ବିଷାକ୍ତ ବାୟୁମଣ୍ଡଳ ସୃଷ୍ଟି କରୁଛ ତାରି ବିରୋଧରେ ମୋର ଅଭିଯାନ । ପ୍ରାଚ୍ୟ ପାଶ୍ଚତ୍ୟ ନୁହେଁ ।''

ଡକ୍ଟର କହିଲେ, ''ପୂର୍ବ ପଶ୍ଚିମର ପ୍ରଭେଦ କାଳ୍ପନିକ । ସେମାନେ ଓ ଆମେ ଏକ ଥିଲୁଁ, ଅଛୁଁ ମଧ୍ୟ । ଜ୍ଞାତସ୍ୱାଦୁ ବିବୃତ ଜଘନାଂ ...'' ବା କୀଟସ୍‌ଙ୍କ ଶେଷ ସନେଟ୍‌ର ଧାଡ଼ି ଗୁଡ଼ାକ କୌଣସି ଦେଶ କାଳରେ ଅଶ୍ଳୀଳ ନୁହେଁ । ସେ ଗୁଡାକ ପଢ଼ାଇଲା ବେଳେ ଉତ୍ତେଜନା, ଶିହରଣ ଅନୁଭବ କରି କେହି ଛାତ୍ରଛାତ୍ରୀ ପୂର୍ବ ପଶ୍ଚିମରେ ଅଧୈର୍ଯ୍ୟ ହୋଇ କୁହନ୍ତି ନାହିଁ ''ସାର୍, ଆଉ ପଢ଼ାନ୍ତୁ ନାହିଁ ମୋତେ ଖରାପ ଲାଗୁଛି । ଯାହା ରୁଚି ବିଗର୍ହିତ ତାହା ଆପେ ଆପେ ମରିଯିବ ।''

''ଡକ୍ଟର !''

''ହଁ ହଁ ଠିକ୍ କଥା । ସୁସ୍ଥ ସବଳ ମନ କଦାପି ଗୋଟାଏ ଜିନିଷ ଉପରେ ସବୁବେଳେ ଅତି ମାତ୍ରାରେ ବ୍ୟସ୍ତ ରହେନାହିଁ । ସେମିତି ମନଥିବା ଲୋକଙ୍କୁ ମୋନୋମେନିଆକ୍ କହନ୍ତି । ମାନସିକ ଧୈର୍ଯ୍ୟ ହରାଇ ସହଜରେ ସେମାନେ ପାଗଳ ହୁଅନ୍ତି । ''ତା ଛଡ଼ା ଯିଏ ଯାହା କହୁନା କାହିଁକି ଭାବି ବସିଲେ ଆମେ ସମସ୍ତେ ଲଙ୍ଗଳା, ଯିଏ ମୋତେ ପରସ୍ତ ଲୁଗା ପିନ୍ଧୁନା କାହିଁକି । ଅଶ୍ଳୀଳତାରେ ଆମର ଜନ୍ମ ।''

ଲିଙ୍ଗରାଜ ବାବୁ ମୁଣ୍ଡଟାକୁ ଚାପି ଧରି ଘରର ଏପଟ ସେପଟ ହେବାକୁ ଲାଗିଲେ । ଆଦ୍ୟାଶକ୍ତି ଦେବୀ ଏତିକିବେଳେ ଅର୍ଥପୂର୍ଣ୍ଣ ମୋନାଲିସା ହସ ଅଧରରେ ଫୁଟାଇ ଡକ୍ଟର ହନୁମନ୍ତଙ୍କୁ ଚାହିଁ ରୋଷେଇଘର ଆଡକୁ ଚାଲିଗଲେ ।

ନିଷ୍ପତ୍ତିମୂଳକ ଯୁକ୍ତି ଛଳରେ ଡକ୍ଟର କହିଲେ, ଦେଖନ୍ତୁ ଲିଙ୍ଗରାଜବାବୁ, ଆତ୍ମପ୍ରବଞ୍ଚନା ଆତ୍ମ ଗାରିମାରେ କିଛି ଲାଭ ନାହିଁ । ଆପଣଙ୍କ ସ୍ତ୍ରୀ ଠିକ୍ କହିଛନ୍ତି । ଆମେ ସମସ୍ତେ ଲଙ୍ଗଳା ଆବରଣ ତଳେ । ଆପଣ ଲିଙ୍ଗରାଜ, ଆପଣଙ୍କ ସ୍ତ୍ରୀ ଆଦ୍ୟାଶକ୍ତି, ମୁଁ ହନୁମାନ୍ । ଆମର ଠାକୁର ଲିଙ୍ଗ; ସେ ଆମର ଦେବାଦିଦେବ । ଉପାସ୍ୟ, ଆରାଧ୍ୟ । ଧର୍ମନାଁରେ ତାଙ୍କୁ ସହିଛୁଁ କଳା ସାହିତ୍ୟ ଓ ଜୀବନରେ ସେ ଅଶ୍ଳୀଳ ହେବେ କାହିଁକି ? ତାଙ୍କୁ ତ ଆମେ ଲଙ୍ଗଳା ରଖି ପୂଜାକରୁଁ । ଲଙ୍ଗଳାକୁ ଏତେ ଭୟ କାହିଁକି ? ସେ ତ ଶିବ, ମଙ୍ଗଳମୟ । ସୃଷ୍ଟିର ମୂଳ ପ୍ରକ୍ରିୟାକୁ ଆଖି ବୁଜିଲେ ଚଳିବ କିପରି ? ସମସ୍ତ କଳା ବିଜ୍ଞାନର ମୂଳ ସେଇ, ଫ୍ରୟେଡ୍‌ଙ୍କ ମଧ୍ୟ ସେଇ ଯୁକ୍ତି ।

"ବାଜେ ଏକତରଫା ଯୁକ୍ତି । ଫ୍ରୟେଡ୍‌ଙ୍କୁ ନେଇ ଆପଣ ଏଥର ଘରକୁ ଯାଆନ୍ତୁ । ମୋ ମୁଣ୍ଡ ଆପଣମାନେ ଖରାପ କରି ଦେବେ ।"

ଡିବି ଡିବି ଡିବି ।

ନଙ୍ଗୁଳି ଝରକା ବାଟେ ପୁଣି ବାହାର ଦୁନିଆଁକୁ ଦେଖି ଦେଇ ଦଉଡ଼ି ଦଉଡ଼ି ଘର ଭିତରକୁ ଆସି କହିଲା – ବାପା ! ମାଙ୍କଡ଼ ନଚାଇବା ଆମର ।" ମଉସାଙ୍କ ଉପସ୍ଥିତି ଓ ସାନ୍ନିଧ୍ୟରେ ଆଶାନ୍ୱିତ ଓ ଉତ୍ସାହିତ ହୋଇ ପୁଣି କହିଲା "ରାମଦାସ ଆଉ ଫୁସ୍ ଫୁସି ବୁଢ଼ୀ କେତେ ଖେଳ ଦେଖାଇବେ । ଅବିକଳ ମଣିଷ ପରି । ଆମର ବି ନଚାଇବା ବାପା !"

ଲିଙ୍ଗରାଜ ବାବୁ ଜଳି ଯାଉଥିଲେ କ୍ରୋଧରେ । ଡକ୍ଟର ମିଶ୍ର ନ ଥିଲେ ଏଥର ପିଲାଟିର ଗାଲରେ ଥକ୍‌କଡଟାଏ ବସାଇଥାନ୍ତେ । ସମ୍ଭାଳି ନେଲେ ନିଜକୁ । କିନ୍ତୁ ଆଖି କୁରାଳ ଚକ୍ର ପରି ଘୁରୁଥାଏ । କହିଲେ "ମାଙ୍କଡ଼ଗୁଡ଼ାକ ତୋରି ପରି ଲଙ୍ଗଳା ଓ, ସେଇଥିପାଇଁ ତାଙ୍କ ନାଚ ଦେଖିବା ପାଇଁ ତୋ ମନ ଧାଇଁଛି । ଆମେ କ'ଣ ଜଙ୍ଗଲୀ ହେଇଛୁଁ ଯେ ଦାଣ୍ଡରେ ମାଙ୍କଡ଼ ନାଚ, କରିବୁଁ ଦେଖିବୁଁ । ଯାଆ ମାଙ୍କଡ଼ିଆକୁ କହିବୁ ମାଙ୍କଡ଼କୁ ଲୁଗାପିନ୍ଧାଇ ଆଣିବ; ତେବେ ଯାଇ ନାଚହେବ ।"

"ଲିଙ୍ଗରାଜ ବାବୁ ! ମୋର ମନେ ହେଉଛି ବାହାର ଦୁନିଆଁର ଘାତ ସହିତ ଆପଣଙ୍କ ପ୍ରତିଘାତର ସମନ୍ୱୟ ଓ ସାମଞ୍ଜସ୍ୟ ରହୁନାହିଁ । ଗାଣିତିକ ନ ହୋଇ ଜ୍ୟାମିତିକ ହୋଇଯାଉଛି । କଳାପାହାଡ଼ ଏମିତି ମାନସିକ ଅବସ୍ଥା ନେଇ ମନ୍ଦିରର କଳା ଧ୍ୱଂସ କରିବାର ଚେଷ୍ଟା କରିଥିଲେ ।"

"ହନୁମାନଜୀ, ବନ୍ଧୁତ୍ୱର ସୁବିଧା ନେଇ ଆପଣ ମୋ ସ୍ତ୍ରୀ, ପୁଅକୁ ମୋ ବିରୋଧରେ ଲଗାଇ କଉତୁକ ଦେଖୁଛନ୍ତି । ଯାଆନ୍ତୁ ଏଥର ଦୟା କରି । ମୋ ମୁଣ୍ଡ ବୁଲେଇଲାଣି ।"

ଡକ୍ଟର ହନୁମନ୍ତ ଚାଲିଗଲେ । ଯିବାପୂର୍ବରୁ ପିଲାଟିକି ଆଶ୍ୱାସ୍ୱନା ଦେଇ କହିଗଲେ, ''ନଙ୍ଗୁଳି,ତୋ ବାପା ନ ନଚାଇଲେ ଆମ ଘରେ ନଚାଇବା । ତୁ ଦେଖିବୁ । ମାଙ୍କଡ଼ିଆ ବୁଢ଼ା ଓ ନିତିପ୍ରତି ଏ ବାଟ ଦେଇ ଆସୁଛି ।

ଉଦୁଉଦିଆ ଦ୍ୱିପହର, ହଠାତ୍ ଲିଙ୍ଗରାଜ ବାବୁଙ୍କ ଘୁମ୍ ଭିଜିଗଲା । ଯୁକ୍ତିତର୍କରେ ମୁଣ୍ଡ ଗରମ ହୋଇ ଯାଇଥିଲା, ନିଦ ଭଲା ହେଲା ନାହିଁ । ଉତପ୍ତ ମସ୍ତିଷରେ ନିଦ କୁଆଡ଼େ ହବ ? ଉଠି ଦେଖନ୍ତି ଦାଣ୍ଡ କବାଟ ମେଲା । ନଙ୍ଗୁଳି ନାହିଁ । ପିଣ୍ଡାରେ ବୁଲା କୁତାଟିଏ ସିମେଣ୍ଟ ଚଟାଣରେ ଲମ୍ୱତମ୍ୱ ଅଲାଜୁକ ପରିଶୋଇ ଯାଇଛି । ଲିଙ୍ଗରାଜବାବୁ ଜୋର ନାତଟାଏ ପକାଇ ଲଙ୍ଗୁଳିକୁ ଖୋଜି ବାହାରିଲେ ।

ପାନଦୋକାନୀକି ପଚାରିଲେ ''ପଦ୍ମ ଇଆଡ଼େ ଆସିଥିଲା ?'' ଦୋକାନୀ କହିଲା, କିଏ ? ନଙ୍ଗୁଳି ହଁ, ଅବି ଆସିଥିଲା । ମିଶ୍ରବାବୁଙ୍କ ଘର ଆଡ଼େ ଗଲା । ମାଙ୍କଡ଼ିଆ ବୁଢ଼ା ପଛେ ପଛେ ।

ଥମ୍ ଥମ୍ ହୋଇ ପାଦର ଗତି ଜୋର କରି ଲିଙ୍ଗରାଜବାବୁ ଚାଲିଲେ । ତେଣେ ମାଙ୍କଡ଼ିଆ ବୁଢ଼ାକୁ ଡାକି ନେଇ ନଙ୍ଗୁଳି ଡକ୍ଟର ମିଶ୍ରଙ୍କ ଘରେ ହାଜର କବାଟରେ ଖଡଖଡ୍ ଶବ୍ଦ ଶୁଣି ହନୁମନ୍ତ ବାବୁ ଉଠି ଆସି ଦେଖନ୍ତି ସଦଳେବଳେ ବାନରସେନା ସହିତ ନଙ୍ଗୁଳି ।

''ମଉସା ମାଙ୍କଡ଼ ନଚାଇବେ ପରା ମଉସାଙ୍କ ହଁକୁ ଅପେକ୍ଷା ନ କରିନଙ୍ଗୁଳି ହୁକୁମ ଦେଲା ''ଏ ବୁଢ଼ା ! ଏଥର ମାଙ୍କଡ଼ ନଚା ।'' ମଉସା ଚେୟାର ଟାଏ ଆଣି ପିଣ୍ଡାରେ ବସିଲେ । ବାହାର ଅଗଣାରେ ଖରାରେ ନାଚ ।

ରାମଦାସ ବୁଢ଼ା ଢେଙ୍କିକୁଟେ, ବାଡ଼ି ଧରି ଚାଲେ, ଭାର ବହେ, ଜୁହାର କରେ, ହାତକଡ଼ିରେ ଚୋର ପରି ଚାଲେ, ଫୁସଫୁସ୍ ବୁଢ଼ୀ କାନରେ ଚୁପଚୁପ କରି କହେ ବୁଢ଼ୀ କାନ୍ଦେ, ଦୁହିଙ୍କ ବାହାଘର ହୁଏ । ସବୁକଥା ମଣିଷପରି । ନଙ୍ଗୁଳି ନିରିଖି ସବୁ ଦେଖେ । ଆଖିରେ ପଲକ ପଡ଼େନାହିଁ । ବିଭୋର । ଯିମିତି ରାମଦାସ ଓ ଫୁସଫୁସି ବୁଢ଼ୀ ଟୁଇଷ୍ଟ ବା ଅଣ୍ଟାଭଙ୍ଗା ନାଚ ଆରମ୍ଭ କରିଦେଇଛନ୍ତି ନଙ୍ଗୁଳି ଉଠି ବସିଲା । ତାକୁ ଦେଖି ଆଉ ଯେତେ ନଙ୍ଗୁଳି ଉଠିଲେ । ମାଙ୍କଡ଼କୁ ଅନୁକରଣ କରି ମଣିଷପିଲା ନାଚିଲେ । ଚିହ୍ନି ହେଲା ନାହିଁ କିଏ ମାଙ୍କଡ଼ କିଏ ମଣିଷ, ସବୁ ସମାନ, ଏକ ଭଙ୍ଗୀ, ଏକ ନାଚ ଏକାକାର ଡକ୍ଟର ହନୁମନ୍ତ ଯିମିତି ମାଙ୍କଡ଼ିଆ ବୁଢ଼ା ।

ସର୍ବବ୍ୟାପୀ ଆନନ୍ଦ ଉଲ୍ଲାସରେ ଚରମ ମୂହୁର୍ତ୍ତରେ ଘୂର୍ଣ୍ଣବାୟୁ ପରି ଆସି ଲିଙ୍ଗରାଜ ବାବୁ ପହଞ୍ଚିଲେ । ଦୃଶ୍ୟର ଗୋଟାଏ ସମ୍ୟକ୍ ଧାରଣା ମୂହୁର୍ତ୍ତକେ କରି ନେଇ ଯେମିତି ନଙ୍ଗୁଳିର ମାଙ୍କଡ଼ ନାଚ ଏବଂ ଡକ୍ଟର ହନୁମନ୍ତ ପ୍ରସଂଶାମାନ ଚକ୍ଷୁ ଦେଖିଦେଇଛନ୍ତି ସିମିତି ସେ ଉଦ୍ଦାମ ଅଟ୍ଟହାସଟାଏ ଦେଲେ ପ୍ରଳୟକାଳର ତୁରୀ ଶବ୍ଦ ପରି । ଯେମିତି ତାଙ୍କୁ ଜଣାପଡ଼ିଲା ସାରା ଦୁନିଆଁ ଲଙ୍ଗଳା, ପିଲାମାନେ ନଙ୍ଗୁଳି, ଡକ୍ଟର ହନୁମନ୍ତ । ତାଙ୍କୁ ନିଜକୁ ବି ଲଙ୍ଗଳା ପରି

ଲାଗିଲା । ଯୁଆଡ଼େ ଚାହିଁଲେ ତ୍ରିଭୁଜ, ରେଖା, କାଠି, ବେଙ୍ଗ, ଫଳ ନାନା ରୂପ ନେଇ ଯୌନ ସଙ୍କେତ ! ଲୁଗା ପିନ୍ଧିଥିଲେ ମଧ୍ୟ ସେ ପୁଣି ନିଜକୁ ଲୁଗାରେ ଢଙ୍କାଇବାକୁ ଉଦ୍ୟମ କଲେ । ଡକ୍ଟର ହନୁମନ୍ତଙ୍କୁ କହିଲେ, "ଲୁଗା ପିନ୍ଧନ୍ତୁ, ଲଙ୍ଗଳା ହୋଇ ବସିଛନ୍ତି କାହିଁକି ? ଥାଉ, ଥାଉ, ଆମେ ତ ସମସ୍ତେ ଲଙ୍ଗଳା । ଆମର ଠାକୁର ବି ଲଙ୍ଗଳା । ଆମର ଦେବାଦି ଦେବ' ସେତ ଶିବ । ହାଃ-ହାଃ-ହାଃ । ଆପଣ ହସୁ ନାହାନ୍ତି କାହିଁକି ?"

ଲଙ୍ଗୁଳିକି ଧରି ଘର ମୁହାଁ ଚାଲିଲେ, ମାଙ୍କଡ଼ ନାଚ ସାମାନ୍ୟ ପ୍ରକୃତିସ୍ଥ ହେଲେ ପୁଣି ମନେ ପଡ଼ିଲା କିପରି ଲଙ୍ଗୁଳି କି ସଭ୍ୟ କରିବା ପ୍ରୟାସ ବ୍ୟର୍ଥ ହୋଇଗଲା ସକେଇ - ସକେଇ କାନ୍ଦିଲେ ମଧ୍ୟ ଟିକେ ।

ଘର ଦୁଆର ମୁହଁ ପହଞ୍ଚୁ ନ ପହଞ୍ଚୁଣୁ ଯିମିତି ସନ୍ତ୍ରସ୍ତା ଆଲୁଳାୟିତକେଶା ଆଦ୍ୟାଶକ୍ତି ଦେବୀଙ୍କି ଦେଖିଲେ - ସେ ତାଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲେ, "ବେଶ୍ ଭଲ କରିଛ" ଆମର ମା କାଳୀ ତ ଲଙ୍ଗଳା । ମୁଁ ତ ଦେଖି ଆସିଲି ଦେଖୁଛି ମଧ୍ୟ ଦୁନିଆଁ ସାରା ଲଙ୍ଗଳା । କି ସୁନ୍ଦର ! କି ମଜା !

ଆଦ୍ୟାଶକ୍ତି ଦେବୀଙ୍କ ମନରେ ଛନକା ପଶିଲା । ନିଜକୁ ଦୋଷୀ ଭାବିଲେ ନଙ୍ଗୁଳିକି ଲଙ୍ଗଳା ଦେଖି ସ୍ୱାମୀଙ୍କ ଏମିତି ମସ୍ତିଷ୍କ ବିକୃତି ଘଟିଛି । ଖଣ୍ଡିଏ ପେଣ୍ଟ ଆଣି ତାକୁ ଯିମିତି ପିନ୍ଧାଇଛନ୍ତି ସିମିତି ଲିଙ୍ଗରାଜ ବାବୁ କହିଲେ, 'ଆରେ ଆଉ କାହିଁକି ତାକୁ ସେମିତି ହଇରାଣ କରୁଛ ।' ତୁମେ ଆଗେ ଲୁଗା ପିନ୍ଧ ଆସ । ତୁମର ଅଙ୍ଗପ୍ରତ୍ୟଙ୍ଗ ମୁଁ ସବୁ ଦେଖିପାରୁଛି ।

ଆଦ୍ୟାଶକ୍ତି ଦେବୀ କିଙ୍କର୍ତ୍ତବ୍ୟମୂଢ଼ ହୋଇ ବାପ ପୁଅଙ୍କୁ ଧରାଧରି କରି ଘର ଭିତରକୁ ନେଲେ । ଟଣାଟଣିରେ ନଙ୍ଗୁଳି ହାତରୁ ଖଣ୍ଡେ ଦିଖଣ୍ଡ ଛବିକାଗଜ ଖସି ପଡ଼ିଲା । ଲିଙ୍ଗରାଜ ବାବୁ ଦେଖିଲେ ସେ ଗୁଡ଼ାକ ନାଲି ତ୍ରିଭୁଜ ବିଜ୍ଞାପନ । ନଙ୍ଗୁଳି କେଉଁ କାହରୁ ଉଠାଇ ଆଣିଛି । ତରବର ହୋଇ ଆଦ୍ୟଶକ୍ତି ଦେବୀ ସେ ଗୁଡ଼ାକ ମୋଡ଼ାମୋଡ଼ି କରି ଝରକା ଦେଇ ଫୋପାଡ଼ି ଦେଲେ ଏବଂ ତରବର ହୋଇ ଢାଳେ ପାଣି ଆଣିବାକୁ ଘର ଭିତରକୁ ଗଲେ ।

ନଙ୍ଗୁଳି ଭାରୀ ଖୁସୀ । ମାଙ୍କଡ଼ ନାଚରେ ସେ ଯାଦୁ ମେଜିକ୍ ଭାଲୁନାଚ ସବୁ ପାଇଁ ମନର ଓରମାନ ମେଣ୍ଟାଇଛି । ପାନଦୋକାନୀ ପାଖରୁ ଦଶ ପଇସା ଦେଇ ଯେଉଁ ଦୁଇଟା ରବର ବେଲୁନ କିଣିଥିଲା ତାହା ମୁଠାରୁ ବାହାର କରି ଯିମିତି ଫୁଙ୍କିବାକୁ ଆରମ୍ଭ କରିଛି ଲିଙ୍ଗରାଜ ବାବୁ ଦେଖିଲେ ତାହା ପରିବାର ନିୟନ୍ତ୍ରଣ ରବର ଚିଜ । ଜିଦି ଧରି ବସିବାରୁ ଦୋକାନୀ ଦଶପଇସି ନେଇ ନଙ୍ଗୁଳିକି ଦେଇଛି ।

'ବେଲୁନ୍ ! ବେଲୁନ୍ ! ବେଲୁନ୍ ନବ ଆସ ଏଣେ ଦେଇଥିଲେ ତେଣେ ପାଇବ । ଯାହା ଲୋକଙ୍କୁ ଦେଇଥିଲା ତାହା ଘରକୁ ଆସିଲା । ନଙ୍ଗୁଳି, ତୁ ଡିବି ଡିବି ଡିବି ଡମ୍ବରୁ ବାଜା । ମୁଁ ନାଚେ । ତାଣ୍ଡବ ନାଚିବି ।

ଆଦ୍ୟାଶକ୍ତି ଦେବୀ କ୍ଷଣକେ ଘଟଣା ବୁଝିଗଲେ । ବେଲୁନ୍‌ଛଡ଼ାଇ ନେଇ ଫୋପାଡ଼ି ଦେଲେ । ଯିମିତି ପାଣି ଢାଳକ ଲିଙ୍ଗରାଜ ବାବୁଙ୍କ ମୁଣ୍ଡରେ ଢ଼ାଳି ଦେଇଛନ୍ତି ସିମିତି ସ୍ୱାମୀ

ନାଚି ନାକି ଚିତ୍କାର କଲେ, ମୁଁ ତାଣ୍ଡବ ନାଚିବି ସୋଽହମ୍ । ଦୁନିଆ ଯାକ ଲିଙ୍ଗମୟ । ମୁଁ ଲିଙ୍ଗରାଜ ଆଉ ଲିଙ୍ଗରାଜ କାହିଁକି ମନ୍ଦିରରେ ରହିବେ ? ତାଙ୍କୁ ମୁଁ ଶେଷ କରିବି । କୁରାଢିଟାଏ ଧରି ପକାଇ ଲଙ୍ଗଳା ବାତଳା ହୋଇ ଦଉଡ଼ିଲେ ମନ୍ଦିର ଆଡ଼କୁ ।'

'ନଙ୍କୁଳି ! ତୁ ଧଇଁଯା ମଉସାକୁ ଡାକିଦେବୁ । ମୁଁ ଯାଉଛି ତୋ ବାପା ପଛେ ପଛେ ।'

ଡକ୍ଟର ମିଶ୍ର ଆସି ଦେଖନ୍ତି ଘର ଶୂନଶାନ । ରାସ୍ତାରେ ଗୁଡ଼ାଏ ଲୋକ ଦଳକୁଦଳ ଧାଇଁଛନ୍ତି । କହୁଛନ୍ତି ବାୟା ଲିଙ୍ଗା ମନ୍ଦିରରେ ମହାଦେବଙ୍କ ମୁଣ୍ଡ ଚୂନା କରି ଦେଇଛି । ଆମେ ତା ମୁଣ୍ଡ ଫଟାଇ ଦେବୁଁ । ଶୁଣୁଛୁଁ ଦୁର୍ଗା ମୂର୍ତ୍ତିର ମୁଣ୍ଡ ବି କାଟି ପକାଇଛି । ତା ବାୟା ପଣିଆ ଛଡ଼ାଇଦେବୁ । ତା ଘରେ ବାୟା । ବେଶୀ ପାଠ ପଢ଼ିଲା ତ ତା ତିରିଲା ବି କୁଆଡ଼େ ବାୟାଣି ହୋଇଯାଇଛି । ଭଗବାନ ନାହିଁ କ'ଣ ଦୁନିଆରେ !'

ମାସକ ପରେ । ଲିଙ୍ଗରାଜ ବାବୁଙ୍କ ଦୁଇ ପୁଅ ଓ ଝିଅ କାଙ୍କେରୁ ଫେରିଛନ୍ତି । ମଉସା ପଚାରିଲେ, 'କେମିତି ଦେଖିଲ ?'

ଡାକ୍ତରି ପଢୁଥିବା ପୁଅଟି କହିଲା, ''ବାପାଙ୍କ ଅପେକ୍ଷା ମାଆଙ୍କ ଅବସ୍ଥା ବେଶୀ ଖରାପ ହୋଇଥିଲା । ପ୍ରଥମେ ଡାକ୍ତରମାନେ ଆଶା ଛାଡ଼ି ଦେଇଥିଲେ । ପରେ ଘଟଣାସବୁ ବୁଝି ଭଲ ଆଡ଼କୁ ଆଣିଲେ ଦି ଜଣକୁ ଅଲଗା ରଖି ହେଲା ନାହିଁ । ଏକାଠି ରଖିଲେଁ ଦିହିଙ୍କି ଲଙ୍ଗଳା କରିବାରେ ଲାଗିଲେ । ବର୍ତ୍ତମାନ ଭଲ । ଆଠ ଦଶଦିନ ପରେ ସେମାନେ ଫେରିବେ ।

'କଣ କହୁଥିଲେ ବାପା ?'

'ଆପଣଙ୍କ ପାଇଁ ଏଇ ଧାଡ଼ିଟି ଲେଖି ଦେଇଛନ୍ତି ବାପା ।'

ଡକ୍ଟର ହନୁମନ୍ତ ଟୁକୁରା କାଗଜଖଣ୍ଡିକ ଆଣି ପଢ଼ିଲେ, ଲେଖାଥିଲା 'ଯାହା ଲଙ୍ଗଳା ତାକୁ ଭଲଭାବରେ ଢଙ୍କାଇ ପାରିଲେ ତାକୁ ଧର୍ମ, ସାହିତ୍ୟ, କଳା ବୋଲାଯାଏ ।'

ଦାଣ୍ଡରେ ଖେଳାଖେଳି ସାରି ଧାଇଁ ଧାଇଁ ଆସି ଭାଇ ଓ ଭଉଣୀଙ୍କୁ ଦେଖି ନଙ୍କୁଳି କହିଲା 'ବଡ଼ ନନା, ସାନ, ନନା, ନାନୀ, ବାପା ଗଲାଦିନ କ'ଣ କହୁଥିଲେ ଶୁଣିଲୁଣି ? ମୁଁ ଲୁଗା ପିନ୍ଧିଲେ କହୁଥିଲେ ଲଙ୍ଗଳା, ଲୁଗା ନ ପିନ୍ଧିଲେ କହୁଥିଲେ ତୁ ଅସଭ୍ୟ, ଜଙ୍ଗଲୀ । ମୁଁ ଏଥର ସବୁବେଳେ ପେଣ୍ଟ ପିନ୍ଧେ, ଆଉ ଲଙ୍ଗଳା ମୋତେ ହୁଏ ନାହିଁ ।'



# କଟକ ଯାତ୍ରା

ଗୁପ୍ତ କାପ୍ ଫୁଟ୍ ବଲ୍‌ରେ ଆମ ହାଇସ୍କୁଲ୍ ଯୋଗ ଦେଇଥାଏ । ଏ ଖେଳଟି ଓଡ଼ିଶା ହାଇସ୍କୁଲ୍‌ମାନଙ୍କ ଭିତରେ ନିବଦ୍ଧଥାଏ । ଆମେ ଯେ ଫୁଟବଲ ଖେଳ ବା ଅନ୍ୟ କୌଣସି ଖେଳରେ ରଥୀ ତା ନୁହେଁ । ଆମେ ଦେଖଣା ହାରି । ‘‘ଦିଅଁ ଦେଖା ମୁଡ଼ିବିକା’’ କଥା ଭଏ । କଟକ ସହର ଦେଖିବା ଆମ ମୁଖ୍ୟ ଉଦ୍ଦେଶ୍ୟ । ଆମେ ଧରିନେଇ ଥିଲୁ ଯେ କଟକରେ ପଢ଼ିବା ଆମ ଦେଇ ହେବ ନାହିଁ । ପାଞ୍ଚଟି ଟଙ୍କା ଥିଲେ ରେଳଭଡ଼ା ଓ ଖିଆପିଆ ସବୁ ମେଣ୍ଟିଯିବ । ନିଜେ ହେଡ଼ମାଷ୍ଟର ‘ମଧୁବିଶ୍ୱାଳ’ ଟିମ୍‌କୁ ସାଙ୍ଗରେ ନେଇଯିବେ । ‘କଟକ ସହର ବଡ଼ ମହରବ’,‘କଟକ ନଗର ଧବଳ ଟଗର’, ସାନଟି ବେଳୁ ବହିପତ୍ରରେ କଟକ କଥା ଦେଖିଶୁଣି ଆମେ କଟକକୁ ଧରି ନେଇଥାଉ କଟକ ଦେଖିବା ଜୀବନରେ ଏକ ପରମ ଗୌରବ । ପାଞ୍ଚଟଙ୍କା ହେଡ଼ମାଷ୍ଟରଙ୍କ ପାଖରେ ଦାଖଲ କଲୁ ଆମେ ଚାରିଜଣ ଅଣଖେଳାଳୀ । ବାରିପଦାରୁ ରୁପ୍‌ସା ଟ୍ରେନ୍‌ରେ ଏଗାର ଅଣା । ରୁପ୍‌ସାରୁ କଟକ ଟଙ୍କେ ଚାରଣା । ଗାଏ ମୋଟ ଟଙ୍କେ ପନ୍ଦର ଅଣା ଭଡ଼ା । ଜୀବନର ଦୀର୍ଘତମ ରେଳଯାତ୍ରାରେ ବାହାରି ପଡ଼ିଲୁ । ଚାନ୍ଦାବାଦ୍ ହାତଖର୍ଚ୍ଚ ଦୁଇତିନିଟଙ୍କା ପାଖରେ ଥାଏ ।

ମନୁଖୁସିରେ ଗୀତ ଗାଇ ତାଳିଚାଲି ଦାନ୍ତକାଠି ଲୁଗା ପୁଟୁଳିଟିଏ ଧରି ଦିନପ୍ରାୟ ଦୁଇଟାବେଳେ ବାରିପଦା ଷ୍ଟେସନ୍‌ରେ ଘଣ୍ଟାଏ ଆଗରୁ ଟ୍ରେନ୍‌ରେ ବସିଗଲୁ । ପେନ୍‌ସିଲ ଓ ଛୋଟ ଖାତାଟିଏ ପାଖରେ ଥାଏ । ଷ୍ଟେସନ୍‌ଟିଏ ପହଞ୍ଚିଲେ ତାର ନାମ ଲେଖାଯାଏ; କାହିଁକି ପ୍ରସିଦ୍ଧ ତାହା ଟିପି ରଖୁଁ । ପ୍ରଥମ ଷ୍ଟେସନ୍ ‘‘ଯାମଶୋଳ’’ ବଣ ଜଙ୍ଗଲ ଭିତରେ । ଏଇଠି କୁଆଡ଼େ ଶିକାରରେ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ଗୁଳି ବାଜିଥିଲା । ପରବର୍ତ୍ତୀ ଷ୍ଟେସନ୍ କୃଷ୍ଣଚନ୍ଦ୍ରପୁର । ଟ୍ରେନ୍‌ଟି କୁଆଡ଼େ କେମିତି ଘୁରି ଘୁରି ଗଲା ଯହିଁରେ ସୂର୍ଯ୍ୟଟା ପୂର୍ବପଟେ ନଦିଶି ପଶ୍ଚିମ ପଟେ ଦେଖାଗଲା । ଅସ୍ତହେବା ସୂର୍ଯ୍ୟ ଉଦୟ ଅବସ୍ଥାରେ ପହଞ୍ଚିଲା । ଏଇଠି ଷ୍ଟେସନ୍ ପାଖରେଅନେକ ଜିନିଷ ଦେଖିଲୁ ବିକ୍ରି ହେଉଛି । ଜଙ୍ଗଲବାସୀମାନେ ପ୍ଲାଟ୍‌ଫର୍ମରୁ ଖଣ୍ଡେ ଦୂରରେ ଛତୁ, ପାଚିଲା ଡୁମୁର କୋଳି ପନିପରିବା ବିକୁଥାନ୍ତି । ଲୋକମାନେ ଧାଇଁ ଯାଇ ଭାଗ ଭାଗ ହୋଇ ବସିଥିବା ଜିନିଷ କିଣି ନିଅନ୍ତି । ପୁଣି ଟ୍ରେନ୍ ଭିତରେବସି ଯାଆନ୍ତି । ପରବର୍ତ୍ତୀ ଷ୍ଟେସନ୍ ବେତନଟୀ; ଲାଇନ୍‌ରେ ଖୁବ୍ ବଡ଼ ଷ୍ଟେସନ୍ । ସେଠାରେ ଟ୍ରେନ୍ ପାଣି ପିଏ, ବହୁତ ସମୟ ଛିଡ଼ା ହୁଏ । ଖୁବ୍ ସାହସ କରି ଆମେ ତଳକୁ ଓହ୍ଲାଇ ଇଞ୍ଜିନ୍ ପାଣି

ନେବା ଦୃଶ୍ୟ ଦେଖିଲୁ । ଗୋଟାଏ ଦୁଇଟା ଚାଉଳ କଳର ଲମ୍ବା ଚିମ୍‌ନି ଷ୍ଟେସନ୍ ପାଖରେ ଦିଶୁଥାଏ । ଏହାପରେ ପରେ ପ୍ରତିଟି ଷ୍ଟେସନ୍‌ରେ ଆମେ ଟିପା ଖାତା ବାହାର କରି ଏହାକୁ ତାକୁ ପଚାରି ଟିପାଖାତା ପୂରଣ କରୁ । ସନ୍ଧ୍ୟା ଛ'ଟା ପ୍ରାୟ ରୁପ୍‌ସାରେ ପହଞ୍ଚିଲୁ ରୁପ୍‌ସାକୁ ଜଂକ୍‌ସନ୍ ଷ୍ଟେସନ୍ କୁହାଯାଏ । ଏଠାରେ ଛୋଟ ଗାଡ଼ିରୁ ଓହ୍ଲାଇ ବଡ଼ ଗାଡ଼ି ଧରିବାକୁ ପଡ଼େ । ପ୍ରାୟ ସାଢ଼େ ସାତଟାରେ ବଡ଼ ଟ୍ରେନ୍ ଆସିବ ସେଇଠି ଆମେ ଚାରିଟି ଲେଖାଏଁ ପୁରି ଓ ତରକାରୀ ପାଣ୍ଡିରୁ ଆମକୁ ମିଳିଲା । ପିଇବା ପାଣି ଆଦୌ ଭଲ ନୁହେଁ, ଖାରୁଆ । ଖଣ୍ଡିଏ ଲେଖାଏଁ ଇଲିସି ଭଜା ମଧ ଜଳଖିଆ ସାଙ୍ଗରେ ମିଳିଥିଲା । ପରେ ପଇସା ହିସାବ ବେଳକୁ ଦେଖିଲୁ ଜଣକେ ଟଙ୍କେ ଚାରଣା ଲେଖାଏଁ ପଡ଼ିଛି । ଆମେ ପ୍ରାୟ ହତବୁଦ୍ଧି ହୋଇଗଲୁ । ଫେରିବା ପାଇଁ ପଇସା କେଉଁଠୁ କିମିତି ମିଳିବ ସେଇ କଥା ଆମକୁ ଗ୍ରାସ କଲା । ପ୍ଲାଟ୍‌ଫର୍ମରେ ଆମେ ଓ କେତେ ଜଣ ଅପାଙ୍‌କ୍ତେୟ ଘୁରାଫେରା କରୁଛୁଁ । ଦିଗ୍‌ବଳୟ ଭୀଷଣ ଆଲୋକିତ ହେଲା, ବେଲ୍ ବାଜିବା ସାଙ୍ଗେ ସାଙ୍ଗେ ମୁଁ ଚିତ୍କାର କରି ଉଠିଲି, ''ହେଇ ଦେଖ ସୂର୍ଯ୍ୟ ଉଦୟ ହେଉଛି ।'' ପ୍ରକୃତରେ ସେଇଟା ଇଞ୍ଜିନ୍ ସାମନାର ଆଲୋକଟା । ଅନ୍ଧାରରାତିକୁ ଏକାବେଳେ ଆଲୋକିତ କରି ମାଡ଼ି ଆସୁଛି ଆମ ଆଡ଼କୁ । ଆମେ ଛିଡା ହୋଇଛୁ ଟ୍ରେନ୍‌କୁ ଅପେକ୍ଷା କରି । ଦୁଇଟା ପିଲା ଆମ ଗଳାକୁ ନକଲ କରି ପରସ୍ପର ଭିତରେ ବ୍ୟଙ୍ଗ କରି କଥାବାର୍ତ୍ତା କରୁଛନ୍ତି, ''ଦେଖ୍ ଦେଖ୍ ସୂର୍ଯ୍ୟ ଉଦୟ ହେଉଛି ।'' ପରେ ଜାଣିଲୁ ସେହି ଦୁଇଟା ଏକାଡ଼େମୀ ସ୍କୁଲ୍‌ର ସହରିଆ ପିଲା ବ୍ୟଙ୍ଗ ବିଦ୍ରୂପକରୁଥିଲେ ଆମ ପରି ଜଙ୍ଗଲି ପିଲାକୁ । ତାପରେ ପଚରା ଉଚୁରା କରି କେଉଁଟା କେଉଁ ଷ୍ଟେସନ୍ ଜାଣିବା ଆଗ୍ରହ ରହିଲା ନାହିଁ । ନୀଳଗିରି ରୋଡ୍ ଷ୍ଟେସନ୍‌ରୁ ଆମେ ଦେଖିଲୁ ପଶ୍ଚିମ ପଟେ ଗୋଟେ ଉଜ୍ଜ୍ୱଳ ଆଲୋକ ନୀଳଗିରି ପାହାଡ଼ ପ୍ରଦେଶରେ ନୀଳଗିରି ରାଜଘାଟୀ ଉପରେ ଆଲୋକ । କଳା ପୃଷ୍ଠପଟରେ ଧଳା ଉଜ୍ଜ୍ୱଳ ଆଲୋକଟା ଭାରି ସୁନ୍ଦର ଦିଶୁଥାଏ । ତା'ପରେ ଆଉ କୋଉଠି କିଛି ଆମକୁ ଦିଶିଲା ନାହିଁ । ଲଦାଲଦି ହୋଇ ପରସ୍ପର କାନ୍ଧରେ ଆଉଜି ଆମେ ଢୁଳେଇବାକୁ ଲାଗିଲୁ ଏବଂ ଶୋଇଗଲୁ । କେତେ ସମୟ କିଏ ଜାଣେ ଯାତ୍ରୀମାନେ କହୁଥାନ୍ତି ଏଇଟା ବୈତରଣୀ, ଏଇଟା ବ୍ରାହ୍ମଣୀ, ସବା ଶେଷରେ ଘର ଘର ଶବ୍ଦ ମହାନଦୀ ପୋଲର ଏବଂ ଆମେ ସମସ୍ତେ ଯିଏ ଯାହାର ବୁକୁଳାଧରି ଓହ୍ଲେଇବା ପାଇଁ ପ୍ରସ୍ତୁତ ହେଲୁ । ଷ୍ଟେସନ୍ ପହଞ୍ଚିଲା ରାତିପ୍ରାୟ ତିନିଟା, ରାତି ସାରାରେ ବୋଧହୁଏ ଯୋଡ଼ାଏ କି ଦୁଇଯୋଡ଼ା ଯାତ୍ରୀବାହୀ ଟ୍ରେନ୍ ଯାଆଆସ କରେ । ଲାଲି ଗୁଡ଼ି ବିଛା କଟକ ପ୍ଲେଟ୍ ଫର୍ମରେ ଓହ୍ଲାଇ ଖୁଣ୍ଟି ଲଣ୍ଠନ ଆଲୁଅରେ ପ୍ଲାଟଫର୍ମ ପାର ହୋଇଚାଲିଲୁ, ସତର ଅଠର ଜଣିଆ ଦଳଟି ଅନ୍ଧାର ଭିତରେ ଦେଇ ମୟୂରଭଞ୍ଜ ଲଜ୍‌ଆଡ଼କୁ ଆଜି ଯାହା ପି:ଜି:ହଷ୍ଟେଲ୍ ନାମରେ ଖ୍ୟାତ । ମୟୂରଭଞ୍ଜର ରଜାପୁଅ, ତାଙ୍କ ଗାଡ଼ିଆନ୍ ଟିଉଟର ମାନେ ହୁଏତ ଏଇଠି ରହିବାପାଇଁ ଏ ଘରଟି ମୟୂରଭଞ୍ଜ ମହାରାଜା ତିଆରି କରିଥିଲେ । ସେଇଠି ଶୋଇ ରାତି କଟେଇଲୁ । ଏତେ ମଶା ଯେ ସକାଳୁ ଆମେ ପରସ୍ପରକୁ ଚାହିଁ ଚିହ୍ନି ପାରିଲୁ ନାହିଁ । ଦେହ ମୁହଁର ଚେହେରା ମଶା କାମୁଡ଼ାରେ ବଦଳ ହୋଇଯାଇଛି ।

ସକାଳରୁ ଆମର ପ୍ରଧାନ ଦଳ ସହିତ ନାହି କଟିଗଲା । ମୁଁ ଓ ମୋ ସାଙ୍ଗ (ପରବର୍ତ୍ତୀ କାଳର କକା ଶ୍ୱଶୁର) ରେଭେନ୍‌ସା କଲେଜ୍ ଇଷ୍ଟ୍ ହଷ୍ଟେଲ ଉପରେ ଉପରେ ନିର୍ଭର କଲୁ । ସେଠାରେ ଥାଆନ୍ତି ଆମ ଗାଁର ହରିହର ନନ୍ଦ ଯାହାଙ୍କର ସାନଭାଇ ମୋ ସାଙ୍ଗ ନାରାୟଣ ନନ୍ଦ ଆମେ ସେଇଠି ଗାଧୁଆ ପାଧୁଆ ଖିଆପିଆ କଲୁ । ଅପୂର୍ବ ଆମର ଆନନ୍ଦ ଓ ଅଭିଜ୍ଞତା ସେଇଠି କେତେ ଦିନ ରହଣି କାଳ ଏବେ ବି ମନେ ପଡୁଛି । ମେସ୍‌ର ଗାଙ୍ଗଲାରେ ଟକ୍‌ଟକ୍ ଭାସୁଥାଏ ପାନ୍ତୁଆ, ରସଗୋଲା । ଚାରି ପଇସାରେ ଚାରିପଟ ଲୁଚି ସହିତ ଗୋଟିଏ ଲେଡ଼ିକେନିଂ ଦାମ୍ ଚାରି ପଇସା । ସାଧାରଣ ଦିନର ଭାତତରକାରୀ ଆମକୁ ରାଜକୀୟ ବୋଧ ହେଲା । ଶନିବାରିଆ ରାତି ଫିଷ୍ଟ ଆମ ରାଜବାଟୀରେ ବି ମିଳୁ ନ ଥିଲା ଏବଂ ଇଷ୍ଟହଷ୍ଟେଲ୍‌ର ମାସ ଶେଷରେ ରାତ୍ରି ଭୋଜନକୁ ବେଙ୍କୁଏଟ୍ କୁହାଯାଇପାରେ । ସକାଳ ହେଲାବେଳେ ଆମେ ଦେଖିଲୁ ଯେମିତି ଆମେ ଲଙ୍କାରେ ପହଞ୍ଚିଛୁ । କାରଣ ଚାଉଳିଆଗଞ୍ଜ ପୋଷ୍ଟ ଅଫିସ୍ ଓ ଡ଼ାକ ବଙ୍ଗଳା ପାଖରେ ଅଗଣିତ ପୋଡ଼ାମୁହାଁ ହନୁ ଶହ ଶହ ସଂଖ୍ୟାରେ କଳା ମୁହଁରେ ଧଳାଦାନ୍ତ ଦେଖାଇ ଆମ ଆଡ଼କୁ ଖତେଇ ହେଉଛନ୍ତି । ବେଳ ତିନିଟାରେ ଆମେ କିଲ୍ଲା ପଡ଼ିଆକୁ ବାହାରିଲୁ, ଆମ ସ୍କୁଲ୍‌ର ଫୁଟ୍‌ବଲ୍ ଟିମ୍ ସାଙ୍ଗରେ । ଖେଳୁଆଡ଼ମାନେ ମଣିଷ ଟଣା ରିକ୍ସାରେ ବାହାରିଲେ, ଆମେ ସିଧା ରାସ୍ତା ଧରିଲୁ କିଲ୍ଲା ପଡ଼ିଆକୁ । ଗୋଡ଼ିବିଛା ରାସ୍ତା, ଗୋଡ଼ରେ ଯୋତା ବା ଚପଲ୍ କିଛି ନାହିଁ, ଖାଲି ପାଦ, ଜଣାପଡୁଥାଏ ଯେମିତି ଆମେ କଟକକୁ ଆସିନୁ ଆସିଛୁ ଭୂସ୍ୱର୍ଗକୁ । ମନେ ପଡୁଥାଏ ମାଇନର କ୍ଲାସ୍‌ରେ ପଢ଼ିଥିବା ସୀତାବନବାସ କବିତାର ଯୋଡ଼ିଏ ଧାଡ଼ି । ‘‘ନିରେଖିବା ଆଗରୁ ତନୟ ମୁଖ, ଲଭିବୁ ତନୟର ପାଳନ ସୁଖ ।’’ ଭବିଷ୍ୟତରେ କଟକ ଆସିବା ସମ୍ଭବ ହେଉ ବା ନହେଉ ରେଭେନ୍‌ସା କଲେଜ୍‌ରେ ପାଠ ପଢ଼ିବା ଗୌରବ ମିଳୁ ବା ନ ମିଳୁ କିଛି ନ ହେଲେ କଟକ ତ ଦେଖିହେବ । ଦଳଦଳ ହୋଇ ଖେଳ ଦେଖଣା ହାରିମାନେ ଚାଲିଛନ୍ତି କିଲ୍ଲା ପଡ଼ିଆକୁ । କେତେ ଆଗ୍ରହ କେତେ ଉତ୍ସାହ । ସ୍କୁଲ୍ ପିଲାଙ୍କ ଖେଳ ଜଣା ପଡୁଥାଏ ଯିମିତି ଏ ଗୋଟାଏ ଅଲିମ୍ପିକ୍ । ରେଭେନ୍‌ସା କଲେଜର ଜନୈକ ଅଧ୍ୟାପକ ଆମର ରେଫ୍‌ରୀ । କଟକର ଜିଲ୍ଲା ସ୍କୁଲ୍ ସହିତ ଆମର ସେମିଫାଇନାଲ୍ ଖେଳ । ଆମସ୍କୁଲ୍‌ରୁ ଯେଉଁମାନେ ଭାଗ ନେଇଥିଲେ ସେମାନଙ୍କର ସମସ୍ତଙ୍କର ନାମ ମନେପଡୁନି । ମନେ ପଡୁଛି ବଙ୍କିମ୍‌କୁ, ତା ବାମ ହାତଟା କେମ୍ପା, ପତଳା ପିଲାଟା, ଗାରପକା ଜର୍ସି ସେ ପିନ୍ଧିଥାଏ । ସେ କର୍ଣ୍ଣାର୍କିକ୍ ସ୍ପେସିଆଲିଷ୍ଟ । ଏମିତି ବଙ୍କେଇ ସଟ୍ ମାରେ ଯେ ଗୋଲି ବଲ୍‌ର ଗତିପଥ ବାରିପାରେ ନାହିଁ । ଏକାବେଳକେ ଗୋଲ୍ ହୋଇଯାଏ । କୃତ୍ତିବାସ ଗେଡ଼ା ପିଲାଟା, ହାଫ୍ ବେକ୍ ଖେଳେ, ତାକୁ କଟେଇ କେହି ବଲ୍ ଗୋଲ୍ ଆଡ଼କୁ ନେଇପାରିବନି । ବଲ୍ଲବାବୁଙ୍କ ଭାଇ କୃଷ୍ଣବାବୁ ବେକ୍‌ରେ ଖେଳେ । ଆମର ହେଡ୍‌ମାଷ୍ଟର ଘୋଡ଼ା ଗାଡ଼ିରେ ଖେଳୁଆଡ଼ ପିଲାଙ୍କ ସହିତ ପହଞ୍ଚିଗଲେ । ଯେଉଁ ପଡ଼ିଆରେ ଆମେ ଖେଳୁଥିଲୁ ତାହା ହୁଏତ ଆଜି ବାରି ହେବ ନାହିଁ । ବାରବାଟୀ ଷ୍ଟାଡ଼ିୟମ୍‌ର କେଉଁ ଏକ ସ୍ଥାନରେ ଆଜି

ତାହା ଲୁଚି ଯାଇଛି । ଖେଳ ଖୁବ୍ ଜୋର୍‌ସୋର୍ ଲଢ଼େଇ ସହିତ ଆରମ୍ଭ ହେଲା । ରେଫ୍ରି ଟିକେ ଆଡ଼ ପାଗଲା । ସବୁବେଳେ ହୁଇସିଲ୍ ମାରେ । ଗୋଟାଏ ଜାଗାରେ ହେଣ୍ଡ ବଲ୍ ହେଲେ ଆଉ ଗୋଟାଏ ଜାଗା ଦେଖାଏ । ଖେଳଶେଷ ବେଳକୁ ଦୁଇଦଳ ସମାନ୍ ସମାନ୍ ଗୋଟିଏ ଗୋଲ୍‌ରେ ବିନାହାର ଜିତ୍‌ରେ ଖେଳ ଶେଷ କଲେ । ପୁଣି ପରଦିନ ଖେଳ । ଖେଳ ସରିଲେ ମଧ ଆମେ ଖେଳରେ ଏତେ ମଜ୍ଜି ଯାଇଥାଉ ଯେ ବଲ୍‌ଟା ଭୂଇଁରେ ଆକାଶରେ ସବୁଆଡ଼େ ଦିଶୁଥାଏ । ପରଦିନ ସେହି ପଡ଼ିଆରେ ଡ୍ରନ୍‌ମେଚ୍ ପୁଣି ଆରମ୍ଭ । ଲୋକଙ୍କର ଉତ୍ସାହ କମିନାହିଁ ବରଞ୍ଚ ବଢ଼ିଚାଲିଛି । କଟକର ଦର୍ଶକ ବାରିପଦାକୁ ବି ସାପର୍ଟ କରନ୍ତି । ଦ୍ୱିତୀୟ ଦିନ ଖେଳ ଶେଷରେ ଦୁଇ ଦୁଇ ଗୋଲ୍‌ରେ ପୁଣି ଅମୀମାଂସିତ । ଖେଳ ଦେଖିବାର ଆଗ୍ରହ ଓ ଉତ୍ତେଜନା କ୍ରମେ ବଢ଼ି ବଢ଼ି ଚାଲିଥାଏ । ହେଲେଦିନ ଗୋଟିଏ ବଢ଼ିବା ଅର୍ଥ ଆମର ଲାଭ କ୍ଷତି ସମାନ୍ ସମାନ୍ ଚାଲିଥାଏ । ଲାଭ କହିଲେ ବେଶି ଦିନ କଟକରେ ରହି ଆହୁରି ନୂଆ ନୂଆ ଦେଖିହେବ ଏ ଭିତରେ ଆମେ ସକାଳ ନିତ୍ୟକର୍ମ ସାରି ବାହାରି ପଡୁଁ କଟକର ଦର୍ଶନୀୟ ସ୍ଥାନସବୁ ଦେଖିବା ପାଇଁ ।

ଦେଖି ସାରିଲୁଣି ବାରବାଟୀ କିଲ୍ଲା ଭଗ୍ନାବଶେଷ, ଯୋବ୍ରା ଆନିକଟ୍, ମହାନଦୀଟା କେତେ ବଡ଼ ନଈ, ଏ ପାଖରେ ଛିଡ଼ା ହେଲେ ଆର ପାଖ ଦିଶେ ନାହିଁ । ସେଇଠୁ ରେଲ୍‌ବାଇ ପୋଲଟା କେତେ ସୁନ୍ଦର ଦିଶେ । ଦିଶେ ସତ ଟ୍ରେନ୍ ଯାଉଥିଲେ । ଆମେ ରେଲ୍‌ବାଇ ପୋଲ୍ ଯାଇ ଦେଖିଛୁ ୧.୭ ମାଇଲ୍ । ଆମର ଧାରଣା ହେଲା ତାହା ପୃଥିବୀର ସବୁଠାରୁ ଲମ୍ବାପୋଲ । କଟକ ରେଳ ଷ୍ଟେସନ୍‌ରେ ଯୋଡ଼ିଏ କି ତିନୋଟି ଘର ସେଇ ଗୋଟିଏ ବିଲ୍‌ଡ଼ିଙ୍ଗ୍‌ରେ ରେଳ ଷ୍ଟେସନ୍‌ର ସବୁକାମ ହୁଏ । ଆନିକଟ୍ ପାଖକୁ ଲାଗି ଗୋଟାଏ ବିରାଟ ଖମ୍ବ ଆକାଶକୁ ସ୍ପର୍ଶ କରିଛି ଯେମିତି । ତାକୁ ଲୋକ ଯୋବ୍ରା ଠେଙ୍ଗା କହନ୍ତି । ତାକୁ ବତୀଖୁଣ୍ଟ କୁହାଯାଇପାରେ । ଗୋଟିଏ ପ୍ରବାଦ ଅଛି, "କଟକ ବାରବାଟୀ ଧୋଇଲେ ଗଲେ, ଯୋବ୍ରା ଠେଙ୍ଗାର କିଯାଏ ।" ତାର ଅର୍ଥ ପୃଥିବୀ ଜଳାର୍ଣ୍ଣବ ହେଲେ ମଧ ଯୋବ୍ରା ଠେଙ୍ଗା ବୁଡ଼ିବ ନାହିଁ । ପରଦିନ ମ୍ୟାଚ୍‌ଟା ହେଲା ସାନ୍ ସାଇନ୍ ପଡ଼ିଆରେ । କାଳେ ସେହି ପଡ଼ିଆରେ ଖେଳର ନିଷ୍ପତ୍ତି ହେବ । ସେଦିନ ଆଗୁଆ ବାହାରିଯାଇଥିଲୁ ମେଡ଼ିକେଲ୍ ସ୍କୁଲ୍ ଓ ତାର ଫୁଲବଲ୍ ପଡ଼ିଆ ଦେଖିଲୁ । ଆହୁରି ଦେଖିଲୁ ଇଞ୍ଜିନିୟରିଂ ସ୍କୁଲ ଏବଂ ତାହାର ପଡ଼ିଆ । ଚାରିଦିନ ପର୍ଯ୍ୟନ୍ତ ଖାଲି ପଡ଼ିଆ ପରେ ପଡ଼ିଆ ଦେଖିଲୁ ଗୋଲ୍ ପରେ ଗୋଲ୍ ଦେଖିଲୁ; କିନ୍ତୁ ଖେଳର ନିଷ୍ପତ୍ତି ନାହିଁ । ଅଧିକା ସମୟ ମଧ ଖେଳ ହୁଏ ଗୋଲ୍ ହୁଏନି । ଟାୟ ବ୍ରେକାର (Tic breaker) ବା ସାଡ଼େନ୍ ଡ଼େଥ୍ (Sudden death) ହୁଏ ନାହିଁ । ଦିନେ ଦିନେ ଅନ୍ଧାରରେ ଖେଳିବାକୁ ପଡ଼େ । କଟକ ସହରରେ ଆଲୁଅ ନାହିଁ । ରାଣୀହାଟ ପହଞ୍ଚିଲେ ଇଲେକ୍‌ଟ୍ରି ସାପ୍‌ଲାୟ ଅଫିସ୍‌ଟା ପଡ଼େ । ତା'ପରେ ରେଭେନ୍‌ସା କଲେଜର ଆଲୁଅ । ଆମକୁ ଜଣାଗଲା ସେହି ଗୋଟିଏ ସ୍ଥାନ । ଯେଉଁଠି ଆଲୁଅ ଅଛି ଏବଂ ମୟୂରଭଞ୍ଜ ମହାରାଜା ସେ ଆଲୁଅ ଦେଇଛନ୍ତି । ଆମେ ହିସାବ

କିତାବ୍ କରି ଦେଖିଲୁଁ ଆମ ପାଖରେ ଦୁଇଟଙ୍କା ଲେଖାଏଁ ଅଛି । ତହିଁ ପରଦିନ ଶେଷ ଖେଳ ହେବ ବୋଲି ଆମେ ଭାବିଲୁ । ଆମ ହାତରେ ଦିନଟିଏ ଅଛି ଦେଖିବା ପାଇଁ । ଭୁବନେଶ୍ୱରକୁ ରେଳଭଡ଼ା ୧୮ ପଇସା । ଫେରିବା ଭଡ଼ା ଆମକୁ ଦେବାକୁ ପଡ଼ିବ ନାହିଁ କାରଣ Return Ticket କରା ହୋଇଛି । ସାଙ୍ଗମାନଙ୍କ ଖେଳ ଶେଷ ହେବନା ସେମାନେ ଫେରିବେ । ଆମର ଟିକଟତ ହେଡ୍‌ମାଷ୍ଟର ପାଖରେ, ଖେଳ ଦେଖି ଦେଖି ବିରକ୍ତ ହେଲେନି । ମୟୂରଭଞ୍ଜ ଲଜକୁ ଫେରିଲା ବେଳେ ନିଷ୍ପତ୍ତି କଲୁ ଭୁବନେଶ୍ୱର ଦେଖିଦେବା । ଫାଟକକୁ ପହଞ୍ଚିବୁ ଶବ୍ଦ ମିଳିଲା । ଚାଲିଥାଏ ଠକ୍ ଡକ୍ ମାଡିଯାଏ ଠକ୍ ଠକ୍ ବିଚିତ୍ର ଧ୍ୱନି କୁଆଡୁ ଆସୁଛି ଦେଖିବା ପାଇଁ ଚାଲିଲୁ ଫାଟକର ସ୍ତିମିତ କିରାସିନି ଆଲୁଅରେ ଏକ ବିଚିତ୍ର ଜୀବ ସର୍ବାଙ୍ଗ ଗେରୁଆ ବା ଲାଲି ବସ୍ତ୍ରରେ ଆବୃତ, ମୁଣ୍ଡରେ ଏକ ବଡ଼ ଲାଲି ପଗଡ଼ି ମୋଟାମୋଟି ଅତିକାୟ ଲୋକଟା, ଏଭଳି ନିର୍ଜନ ସ୍ଥାନରେ ଆମକୁ ଡ଼ର ମାଡ଼ିଲା । ସେ କଠଉ ପିନ୍ଧିଛି । ସାଙ୍ଗେ ସାଙ୍ଗେ ଛିଡ଼ା ହୋଇପଡ଼ିଲା ଆମରି ଆଗରେ ଡ଼ାହାଣ ହାତରେ ବିଶି ଆଙ୍ଗୁଳିଟା ଧରିନେଇ ତା ଆଙ୍ଗୁଳିରେ ଘଷି ଦେଲା ଏବଂ ଜିଭରେ ଚାଟିବାକୁ କହିଲା ‘‘କେମିତି ଲାଗିଲା ?’’ ପଚାରିଲା । ମୁଁ କହିଲି, ‘‘ମିଠା ।’’ ଆଙ୍ଗୁଳିକୁ ପୋଛି ଦେଇ ପୁଣି ଆଉଥରେ ଘଷିଲା ତାହାରି ଆଙ୍ଗୁଳିରେ । ତାହାରି କଥା ଅନୁସାରେ ମୁଁ ପୁଣି ଚାଟିଲି । ଆଶ୍ଚର୍ଯ୍ୟ କଥା ପିତା ଲାଗିଲା । ଆମେ ବେଶୀ ସମୟ ତା ପାଖରେ ରହିଲୁ ନାହିଁ । ଡ଼ର ମାଡ଼ିଲା ବେଶୀ କି ଭୌତିକ କାଣ୍ଡ କରିବ, ଖଣ୍ଡେ ଦୂର ଧାଇଯାଇ ଆମେ ଲଜ୍ ପହଞ୍ଚିଗଲୁ । କଥା ପ୍ରସଙ୍ଗରେ ତାକୁ ଆମେ ଲାଲିଆ ବାବାଜୀ କହୁଁ । ସେ ବିରାଟ ପଡ଼ିଆ ଦେଇ ମରହଟ୍ଟା କୋଠି ଆଡ଼କୁ ଚାଲିଲା ପ୍ରତିଧ୍ୱନୀ ସହିତ ଶବ୍ଦ ଶୁଭୁଥାଏ ଚାଲିଥାଏ ଠକ୍ ଠକ୍ ।

ରାତି ଭୋର ୪ଟା ବେଳେ ଭୁବନେଶ୍ୱର ଆଡ଼କୁ ଗାଡ଼ି ଅଛି । ତରବର ହୋଇ ଉଠି ବସିଲୁ । ଟ୍ରେନ୍ ପ୍ଲାଟ୍‌ଫର୍ମକୁ ଆସିଗଲା । ଆମେ ବାହାରି ପଡ଼ିଲୁ ଲିଙ୍ଗରାଜ ଦର୍ଶନକୁ । ବନ୍ଧୁ ନାରାୟଣ ବାହାରିବାକୁ ବହୁତ ଡ଼େରି କଲେ । ତାଙ୍କର କଷାଫଳ ଗୁଣ୍ଡ ବୋତଲଟା ମିଳୁନାହିଁ । ସେଇଟି ନ ହେଲେ ତାଙ୍କ ପେଟ ଖରାପ ହେବ । ସବା ଶେଷରେ ସେ ବୋତଲଟା ଜଣକ ପିଠିତଳୁ ପାଇଲେ । ତାକୁ ଠେଲି ପେଲି ଦେଇ ଚିତ୍କାର କଲେ, ‘‘ତୁମେ ଏଇଠି ତାକୁ ଚାକି ଶୋଇଛ ।’’ ଅଣନିଶ୍ୱାସି ହୋଇ ଧାଇଁଲୁ ଏବଂ ବୋଧହୁଏ ବିନା ଟିକଟରେ ଟ୍ରେନ୍‌ରେ ଚଢ଼ିଗଲୁ । ଭୁବନେଶ୍ୱରରେ ଟ୍ରେନ୍‌ରୁ ଓହ୍ଲାଇ ପ୍ରାୟ ସୂର୍ଯ୍ୟୋଦୟ ବେଳକୁ କୋଚିଲା ବଣ ଭିତରେ ଦେଇ ମଣିଷ ଚଲା ରାସ୍ତାରେ ଗୋଟାଏ ଧର୍ମଶାଳାରେ ପହଞ୍ଚିଲୁ ।

ବିନ୍ଦୁସାଗର ଆର ପାଖରେ ଆକାଶ ଚିରି ମନ୍ଦିରଟା ଛିଡ଼ା ହୋଇଥାଏ । ଅପୂର୍ବ ଦୃଶ୍ୟ । ଗାଧୋଇ ପାଧୋଇ ମନ୍ଦିର ପରିକ୍ରମା କଲୁ । କାରୁକାର୍ଯ୍ୟ କହିଲେ ଆମେ ଦେଖିଲୁ ମନ୍ଦିରର ତଳ ପ୍ରଦେଶରେ ଥିବା ପ୍ରେମିକ ପ୍ରେମିକାଙ୍କର ଦେବାଦେବୀ ମାନଙ୍କର ପ୍ରାୟ ସବୁ ଉଲଗ୍ନ ମୂର୍ତ୍ତି ଏବଂ ଲୀଳା ଖେଳ । ଭାରି ଭଲ ଲାଗିଲା ଅତିକାୟ ଗଣେଶମୂର୍ତ୍ତି ମସୃଣ ପେଟଟିକୁ

ଆଉଁସା ଆଉଁସି କଲୁଁ । ପାର୍ବତୀ ମନ୍ଦିରର ଛୋଟ ଛୋଟ ମୂର୍ତ୍ତି ଗୁଡ଼ିକର କାରୁକାର୍ଯ୍ୟ ଦେଖି ମୁଗ୍ଧ ଚକିତ ହେଲୁ । ଆମେ ଆଶ୍ଚର୍ଯ୍ୟ ହେଲୁ କାହିଁକି ଖୁବ୍ କମ୍ ଲୋକ ରାଜାରାଣୀ ମନ୍ଦିର ଆଡ଼କୁ ଯାଆନ୍ତି, ଯଦିଓ କାରୁକାର୍ଯ୍ୟ ନୈପୁଣ୍ୟରେ ତାର କଳନା ନାହିଁ । କେଦାର ଗୌରୀ ମନ୍ଦିର ବି ଦେଖିଲୁ ଏବଂ ପଣ୍ଡାମାନେ ଯାହା ଆମକୁ ଦେଖାଇଲେ ବା ବୁଝାଇଲେ ତା ଆମେ ବିଶ୍ୱାସ କଲୁ । ଫେରିଲା ବେଳକୁ ଦିନ ଦୁଇଟା । ଭୋଗ କୁଣ୍ଡ ପଣ୍ଡା ପାଣି ଦେଲା ।

ଆମେ ବସି ପ୍ରସାଦ ସେବନ କରିବାକୁ ଯାଉଛୁଁ, ବଡ଼ ପାତି ମାଙ୍କଡ଼ଟାଏ ଭଦ୍ରଲୋକ ଭଳିଆ ଆମକୁ କିଛି ନ କହି ଫାଳେ କୁଣ୍ଡ ଧରି ମନ୍ଦିର ଉପରକୁ ଚଢ଼ିଗଲା । ଆମକୁ ଖୁବ୍ ଭୋକ ଲାଗୁଥାଏ । କିଛି କହିପାରିଲୁ ନାହିଁ । ମନ୍ଦିରରେ ଆଶ୍ରା ନେଇଥିବା ଜୀବମାନଙ୍କୁ ସ୍ରଷ୍ଟା ବା ସରକାର ମଧ୍ୟ କିଛି କରିପାରିବ ନାହିଁ । ଷ୍ଟେସନ୍ ରାସ୍ତା ଧରିଲୁ କଟକ ଫେରିବୁ । ପଣ୍ଡାକୁ ପଇସା ଟଙ୍କାଏ ଚାରିଅଣା ଦେଇଛୁ, କ୍ରୋଧାନ୍ୱିତ ହୋଇ ମୁଣ୍ଡର ଚୂଳ ପେଣ୍ଡାକୁ ଖସାଇ ଚାଣକ୍ୟଙ୍କ ପରି ଛେ ଛେ ଶବ୍ଦ କରି ଧରିଥିବା ନୁଟାଟାକୁ ତୁଠ ପଥର ଉପରକୁ ଠଣ୍ ଠଣ୍ କରି ଫୋପାଡ଼ି ଦେଲା । ସେଇ ଅବସରରେ ଆମେ ବିନ୍ଦୁସାର କୂଳେ କୂଳେ ଧାଇଁଲୁ ଏବଂ ଯେମିତି ବଙ୍କାଣି ରାସ୍ତା ପଡ଼ିଛି ଏବଂ ପଣ୍ଡାଟି ଅଦୃଶ୍ୟ ହୋଇଛି, ଆମେ ଡ଼ବଲ୍ କୁଇକ୍ ମାର୍ଚ୍ଚ କରି ଅଣ ନିଶ୍ୱାସୀ ହୋଇ କୋଚିଳାବଣ ଦେଇ ଷ୍ଟେସନ୍‌ରେ ପହଞ୍ଚିଗଲୁ (ଏବଂ ଭାଗ୍ୟ ଭଲ ଆମେ ଟ୍ରେନ୍ ଧରି ପାରିଲୁ ।) ଅରକ୍ଷିତକୁ ଦୈବ ସାହା । ଟଙ୍କା ଏ ଚାରଣା ବଞ୍ଚିଗଲା ।

କଟକରେ ପ୍ରଥମ କରି କୁମ୍ଭୀର ଦେଖିଲୁ । ମହାନଦୀ ଆନିକଟ୍ ଉପରେ ଛିଡ଼ା ହୋଇ ଘୋ ଘୋ ଶବ୍ଦ କରି ସ୍ଲୁଇଶ୍ ଗୁଡ଼ାକରେ ପାଣି ଯାଉଥାଏ,ମୁଁ ସେ ଶୋଭା ମୁଗ୍ଧ ହୋଇ ଦେଖୁଥାଏ । ମୋର ଠିଆ ହେବାର ସ୍ଥାନରୁ ଆଠଦଶ ହାତ ଦୂରରେ ଗୋଳିଆ ପାଣି ଉପରୁ ହଠାତ୍ ସଜନା ଗଣ୍ଡି ପରି ଦେଖାଯାଉଥିବା କ'ଣଟାଏ ଭାସି ଉଠିଲା । ଧୀରେ ଉପରକୁ ଉଠି ପୁଣି ଭିତରକୁ ପଶିଗଲା । ପୁଣି ଆଉ ଟିକିଏ ପାଖକୁ ଆସି ଛୋଟିଆ କାଠ ଗଣ୍ଡିଟା ଭାସିଲା । ଭଲ କରି ନିରିଖି ଦେଖିଲି ସେ କାଠ ଗଣ୍ଡିଟା ମୋରି ଆଡ଼କୁ ଆସୁଛି ଏବଂ ତାର ଯୋଡ଼ାଏ ଆଖି ମୋ ଆଡ଼କୁ ଚାହିଁଛି । ମୋ ପାଖ ପିଲାଟା ଯେମିତି "କୁମ୍ଭୀର!" ବୋଲି ଚିତ୍କାର କରିଛି,ମୁଁ ଡ଼ିଆଁମାରି ବନ୍ଧ ଉପରକୁ ଉଠି ଆସିଲି । ଏତେ ପାଖରେ ବଣୁଆ କୁମ୍ଭୀର ମୋ ଜୀବନରେ କେବେ ଦେଖିନି । ବଞ୍ଚିଗଲି ବୋଲି ମୁଁ ଭାବିଲି । କଟକରୁ ଫେରି ଆସିଲି । ଖେଳ ଜିତିବା ହାରିବା ସାଙ୍ଗରେ କିଛି ଲାଭ କ୍ଷତି ନଥିଲା । ବହୁଦିନର ଗୋଟାଏ ବିରାଟ ଇଚ୍ଛା ପୂରଣ ହେଲା । ସମୟ ଓ ଅର୍ଥ ଅଭାବରେ ଏଡ଼େ ବଡ଼ ସହରର ସେମିତି କିଛି ଦେଖିପାରିଲୁ ନାହିଁ । ଯଦି ଭଗବାନ ଆଉ ଭାଗ୍ୟ ସାହା ହୁଅନ୍ତି । ତେବେ ଅଦେଖା ଅଜଣା ଯାହା ସବୁ ରହିଗଲା, ତାହା କଲେଜରେ ପଢ଼ିଲେ ହୁଏତ ଦେଖି, ଶୁଣିହେବ ସେ ଆହୁରି ଦୁଇତିନି ବର୍ଷର କଥା ।





ଡକ୍ଟର ମନ୍ମଥ କୁମାର ପ୍ରଧାନ ବରିଷ୍ଠ ଅଧ୍ୟାପକ ଓଡ଼ିଆ ବିଭାଗ ଏମ୍.ଏ., ପି.ଏଚ୍.ଡି, ଡି.ଲିଟ୍, (ଉତ୍କଳ) ୧୯୫୭ ମସିହାରେ ଜନ୍ମ, ସମ୍ପ୍ରତି ବାଲେଶ୍ୱରସ୍ଥ ଗୋପାଳ ଗାଁରେ ଅବସ୍ଥାପିତ । ଗବେଷକ, ପ୍ରାବନ୍ଧିକ ତଥା ସମାଲୋଚକ ଭାବରେ ସେ ପରିଚିତ । ନୀଳମଣି ମହାବିଦ୍ୟାଳୟ (ରୁପସା) ରେ ସେ ଅଧ୍ୟାପନାରତ । ୧୯୮୮ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଉପାଧି ଓ ୨୦୦୦ ମସିହାରେ ଡି. ଲିଟ୍. ଉପାଧି ଲାଭ କରିଛନ୍ତି ।

**ତାଙ୍କର ପୁସ୍ତକ ଗୁଡିକ ହେଲା**

| | |
|---|---|
| ସାହିତ୍ୟର ଧ୍ୟାନ ଧାରଣା | (୧୯୮୦ ମସିହା) |
| ସମାଲୋଚନାର ଗତିଃ ପ୍ରକୃତି | (୧୯୯୨ ମସିହା) |
| ସାହିତ୍ୟର ପ୍ରତିଧ୍ୱନି | (୧୯୯୪ ମସିହା) |
| ସାହିତ୍ୟ ଚର୍ଚ୍ଚା | (୧୯୯୬ ମସିହା) |
| ପଲ୍ଲୀକବି କୃଷ୍ଣପ୍ରସାଦ | (୧୯୯୯ ମସିହା) |
| ବୀଣାପାଣି ମହାନ୍ତିଙ୍କ ସୃଷ୍ଟି ମାନସ | (୨୦୦୦ ମସିହା) |
| ସ୍ମୃତି (ରମ୍ୟରଚନା) | (୨୦୦୫ ମସିହା) |
| ଲୋକ ନାଟ୍ୟ ପରମ୍ପରା | (୨୦୦୫ ମସିହା) |

**ସଂପାଦନା**

| | |
|---|---|
| ସମୟ ସ୍ରୋତରେ ବାଲେଶ୍ୱର | (୨୦୦୩ ମସିହା) |
| ସାରସ୍ୱତ ପ୍ରତିଭା | (୨୦୦୩ ମସିହା) |
| ଫକୀର ମୋହନଙ୍କ ସୃଷ୍ଟି ମାନସ | (୨୦୦୫ ମସିହା) |
| ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ | (୨୦୦୬ ମସିହା) |